# ଝଡ଼ର ଫୁଲ



ବସନ୍ତ କୁମାରୀ ଦେବୀ

# ଝଡ଼ର ଫୁଲ

ଶ୍ରୀମତୀ ବସନ୍ତକୁମାରୀ ଦେବୀ

ଗ୍ରନ୍ଥ ମନ୍ଦିର

[ This book has been printed in paper made available by Govt. of India at concessional rate. ]


ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

ବିନୋଦବିହାରୀ, କଟକ-୨

ଶାଖା : ମେନ୍‌ରୋଡ୍, ବ୍ରହ୍ମପୁର

ମୁଦ୍ରକ :

କିଶୋରଚନ୍ଦ୍ର ମିଶ୍ର

ଗୋଦାବରୀଶ ପ୍ରେସ୍

କଟକ-୧

ପ୍ରଥମ ସଂସ୍କରଣ :

ଜୁନ୍, ୧୯୮୨

ମୂଲ୍ୟ :

ସାଧା ବା




# ଉତ୍ସର୍ଗ

ସ୍ୱାମିନ୍ !

ତମର ଚରଣପ୍ରାନ୍ତରେ ଭକ୍ତିର ନୈବେଦ୍ୟ ସ୍ୱରୂପ ମୋର 'ଝଡ଼ର ଫୁଲ୍'ଟିକୁ ଅର୍ପଣକଲି ।

ବିଧାତାର ସେ ଏକ ଅପୂର୍ବ ସୃଜନ । ଝିଅଟି ଆଡ଼କୁ ଚାହିଁଲା କ୍ଷଣି ଚକ୍ଷୁ ଯେପରି ଧନ୍ୟ-ହୋଇଯାଉଥିଲା । ଶାରଦୀୟ ପୂର୍ଣ୍ଣଚନ୍ଦ୍ର, ନୀଳ ସରୋବରର ପ୍ରସ୍ଫୁଟିତ ପଦ୍ମର ସେ ଅପୂର୍ବ ସୌନ୍ଦର୍ଯ୍ୟ ଝିଅଟିର ସୁନ୍ଦର ଗଠନ ନିକଟରେ ପରାଜୟ ସ୍ୱୀକାର କରିବ ନିଶ୍ଚୟ । ସଦ୍ୟ ପ୍ରସ୍ଫୁଟିତ ଶତ ଗୋଲାପର ସୌନ୍ଦର୍ଯ୍ୟ ସମ୍ଭାର ନେଇ ବିଧି ଯେପରି ରଚନା କରିଥିଲା ତାର ଏ ବିଚିତ୍ର ସୃଷ୍ଟି ! ଅତି ସୁନ୍ଦର ଝିଅଟିଏ । ସେହି ଅନବଦ୍ୟ ପବିତ୍ର ସୌନ୍ଦର୍ଯ୍ୟର ଅଧିକାରିଣୀ କନ୍ୟାଟିକୁ ଅନେକ ଭାବି ଚିନ୍ତି ରାଜକିଶୋର ବାବୁ ନାଁ ଦେଇଥିଲେ ଶୁଚିସ୍ମିତା । ବଡ଼ ଆଦରରେ, ବଡ଼ ଯତ୍ନରେ ଲାଳିତପାଳିତ ହୋଇଥିଲା ସ୍ମିତା, କାରଣ ଦଶ ବର୍ଷ ପର୍ଯ୍ୟନ୍ତ ସ୍ମିତା ପିତାମାତାଙ୍କର ଏକମାତ୍ର ସନ୍ତାନ ଥିଲା । ସ୍ମିତାକୁ ଦଶ ଏଗାର ବର୍ଷ ହେଲାପରେ ସବ୍ୟସାଚୀ ଜନ୍ମହେଲା ।

ରାଜୁବାବୁ ଜଣେ ବେଶ୍ ଆମୋଦପ୍ରିୟ, ସ୍ଫୁର୍ତ୍ତିମାନ୍, ବୁଦ୍ଧିମାନ୍ ବ୍ୟକ୍ତି । ଜୀବନରୁ ଖାଲି ଆନନ୍ଦ ଆହରଣ କରିବା ଯେପରି ତାଙ୍କର ଏକମାତ୍ର ଲକ୍ଷ୍ୟ । ଭାରି ମେଳାପି, ସବୁବେଳେ ହସହସ ମୁହଁ, ଗୋଟାଏ ବେପରୁଆ ଭାବ ।

ବେଶ୍ ହସଖୁସି ଭିତରେ ବହିଗଲାଥିଲା ତାଙ୍କ ଜୀବନର ଧାରା । କୌଣସି ଦୁଃଖ କେବେ ଉପସ୍ଥିତ ହୋଇନାହିଁ । ପିଲାଦିନେ, ନିହାତି ଶିଶୁଅବସ୍ଥାରେ ନିଜ ପିତାଙ୍କୁ ସେ ହରାଇଥିଲେ । ସେ କଥା ମନେନାହିଁ । ବିଧବା ମା, ମାମୁଁ ଓ ମାଇଁଙ୍କ ତତ୍ତ୍ୱାବଧାନରେ ସେ ମଣିଷ ହୋଇଛନ୍ତି । ଛାତ୍ରାବସ୍ଥାରେ ପ୍ରତ୍ୟେକ ପରୀକ୍ଷା କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଛନ୍ତି—ଅଧିଷ୍ଠିତ ହୋଇଛନ୍ତି ମୁନ୍‌ସଫ୍ ଚାକିରିରେ । ଧନବାନ୍ ଶ୍ୱଶୁର, ସୁନ୍ଦରୀ ଗୁଣବତୀ ସ୍ତ୍ରୀ ପାଇଛନ୍ତି ମଧ୍ୟ ।

ବର୍ତ୍ତମାନ କେତେ ଦିନ ହେଲା ରାଜୁବାବୁ ଟିକିଏ ଚିନ୍ତାଗ୍ରସ୍ତ । ଚିନ୍ତା କରିବାକୁ ପଡ଼ୁଛି ସ୍ମିତା ବିଷୟରେ । କିଛି ଦିନ ତଳେ ମାଟ୍ରିକ୍‌ରେ ଦ୍ୱିତୀୟ ଶ୍ରେଣୀ ପାଇ ଉତ୍ତୀର୍ଣ୍ଣ ହୋଇଛି ସେ । ବୟସ ମୋଟେ ପନ୍ଦରବର୍ଷ । ଏତେ ଶୀଘ୍ର ସ୍ମିତାର ବିବାହ ଦେବାପାଇଁ ଇଚ୍ଛା ନଥିଲେ ମଧ୍ୟ ନିଜ ମାଆଙ୍କ ଏକାନ୍ତ ଅନୁରୋଧକୁ ଆଡ଼େଇଦେଇପାରୁ ନାହାନ୍ତି ସେ । ମା ତାଙ୍କର ବୁଢ଼ୀ ହେଲେଣି । କେତେବେଳେ କେଉଁ କଥା !

ରାୟଗଡ଼କୁ ଅଳ୍ପ ଦିନ ହେଲା ବଦଳି ହୋଇ ଆସିଛନ୍ତି ସେ । ମୁନ୍‌ସଫ୍ କ୍ୱାର୍ଟର୍‌ଟିର ପଡ଼ିଶାରେ ଅବସରପ୍ରାପ୍ତ ହେଡ୍‌ମାଷ୍ଟର ରମେଶ ମହାପାତ୍ରଙ୍କ ଘର । ରମେଶ ବାବୁ ଜଣେ ସାଧୁ ଓ ସଚ୍ଚୋଟ ବ୍ୟକ୍ତି । ତାଙ୍କର ତୃତୀୟ ପୁତ୍ର ମହେଶ ଉପରେ ରାଜୁବାବୁଙ୍କ ଦୃଷ୍ଟି ପଡ଼ିଲା । ଦର୍ଶନ ବିଦ୍ୟାରେ ଏମ୍. ଏ. ପରୀକ୍ଷା ଦେଇ ମହେଶ ଫେରିଛି । ମହେଶକୁ

ଦେଖିଲାକ୍ଷଣି ରାଜୁବାବୁଙ୍କର ମନେହେଲା ଯେପରି ସ୍ମିତା ପାଇଁ ବିଧାତା ଗଢ଼ିଦେଇଛନ୍ତି ମହେଶକୁ । କନ୍ଦର୍ପଭଳି ରୂପବାନ୍, ନମ୍ର, ବିନୟୀ ଯୁବକ ମହେଶ କେତୋଟି ଦିନରେ ରାଜୁବାବୁଙ୍କ ମନ କିଣିନେଲା ।

ଯେଉଁ ଦିନ ଖବରକାଗଜଟି ଧରି ରମେଶବାବୁ ନିଜେ ଆସି ଜଣାଇଲେ ଯେ ମହେଶ ବନାରସ ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ରରେ ପ୍ରଥମ ସ୍ଥାନ ଅଧିକାର କରି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଛି, ରାଜକିଶୋରବାବୁ ନିଜ ମନର ଆବେଗକୁ ରୁଦ୍ଧ କରିନପାରି ରମେଶବାବୁଙ୍କ ଆଗରେ ନିଜର ମନେଃବାସନା ବ୍ୟକ୍ତ କରିଦେଲେ । ରାଜକିଶୋରବାବୁଙ୍କ ପ୍ରସ୍ତାବ ଶୁଣି ରମେଶବାବୁ କୋଟିନିଧି ପାଇଲା ପରି ମନେକଲେ ନିଜକୁ ।

ଏହାପରେ ବିବାହ କାର୍ଯ୍ୟ ସମାପନ ହେବାକୁ ବେଶି ବିଳମ୍ବ ହୋଇନଥିଲା । ଖୁବ୍ ସମାରୋହରେ ମହେଶ ସହିତ କୁମାରୀ ଶୁଚିସ୍ମିତାର ବିବାହ ସମ୍ପନ୍ନ ହେଲା । ଛଅ ମାସ ପରେ ରାଜୁବାବୁ ବଦଳି ହୋଇ ଆସିଲେ ବଲାଙ୍ଗିର । ଯେଉଁ ସ୍ମିତାକୁ ଦଣ୍ଡେ ନ ଦେଖିଲେ ରାଜୁବାବୁଙ୍କ ପିତୃହୃଦୟ ଅଧୀର ହୋଇପଡ଼ୁଥିଲା, ବାଧ୍ୟହୋଇ ତାକୁ ଛାଡ଼ି ଆସିବାକୁ ପଡ଼ିଲା ଏଥର । ପୁରୁଷ ଚକ୍ଷୁରୁ ତାଙ୍କର ଧାରାଶ୍ରାବଣ ପରି ଅଶ୍ରୁ ଝରିଥିଲା । ପରିବାରର ଅନ୍ୟମାନଙ୍କ କଥା ନ କହିଲେ ଭଲ ।

ଦିନ କାହାକୁ ଅପେକ୍ଷା କରେନାହିଁ । ଏହା ଭିତରେ ଓଡ଼ିଶାର ନୂତନ ପ୍ରତିଷ୍ଠିତ ଗୋଟିଏ କଲେଜରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଛି ମହେଶ । ନବବଧୂକୁ ସଙ୍ଗରେ ନେଇ ସେ ତାର କର୍ମସ୍ଥଳକୁ ଚାଲିଯାଇଛି । ମଝିମଝିରେ ସ୍ମିତା ଚିଠି ଦିଏ । ରାଜୁବାବୁଙ୍କ ଘରେ ସମସ୍ତେ ତାର ଚିଠି ଆସିବାକୁ ଚାହିଁ ରହିଥାନ୍ତି ।

ରାଜୁବାବୁ ନିଜର ଦାର୍ଶନିକ ଦୃଷ୍ଟିରେ ଏହି ଚିଠିଗୁଡ଼ିକ ଦେଇ ଦେଖିପାରନ୍ତି ଗୋଟିଏ କିଶୋରୀର ଜୀବନ କିପରି ପ୍ରତିଦିନ ନୂତନତ୍ୱ ଲାଭ କରି ଧୀରେ ଧୀରେ ପ୍ରସ୍ଫୁଟିତ ହେଉଛି । ସ୍ମିତା ତାଙ୍କର ସୁଖୀ ହୋଇଛି, ଝିଅକୁ ସେ ସୁଖୀ କରିପାରିଛନ୍ତି—ଆନନ୍ଦରେ, ଗର୍ବରେ ତାଙ୍କ ପିତୃହୃଦୟ ସ୍ଫୀତ ହୋଇଉଠେ ।

ଶରତ୍‌ଋତୁର ନିର୍ମଳ ସକାଳ । ଉଦୟୋନ୍ମୁଖ ସୂର୍ଯ୍ୟର ରକ୍ତାଭ କିରଣ ସମ୍ମୁଖର ଫୁଲବଗିଚାଟି ଉପର ଢାଳି ହୋଇଯାଉଛି । ଗୋଲାପ କୁଞ୍ଜମାନଙ୍କରେ ଅଜସ୍ର ଫୁଟନ୍ତା ଗୋଲାପ ସେହି ସୁନେଲି ଆଲୁଅରେ ପଖାଳି ହୋଇ ଦିଶୁଛନ୍ତି ଅପୂର୍ବ । ସୂର୍ଯ୍ୟରଶ୍ମିସ୍ନାତ ବିଭିନ୍ନ ରଙ୍ଗର ଜିନିଆ ଫୁଲଗୁଡ଼ାକ ପବନର ସ୍ପର୍ଶରେ ଦୋହଲୁଛନ୍ତି । ମାଟିଉପରେ ଶିଶିରଭିଜା କଅଁଳିଆ ଘାସଗୁଡ଼ିକ କି ସୁନ୍ଦର ଦିଶୁଛି ! ମାଟିରେ, ଆକାଶରେ, ପବନରେ ଚାରିଆଡ଼େ ଯେପରି ପୂଜା ଆଗମନୀର ପ୍ରଚ୍ଛନ୍ନ ସଙ୍ଗୀତ-ଲହରୀ ଲୁଚି ଖେଳି ଘୂରିବୁଲୁଛି ।

ଆଗକୁ ଶାରଦୀୟ ଦୁର୍ଗାପୂଜା । ଆଜିଠାରୁ ପ୍ରକୃତି ଯେପରି ନିଜକୁ ସଜାଇବାକୁ ଲାଗିଲାଣି ସେହି ଆଗାମୀ ଶରତ ଉତ୍ସବ ପାଇଁ ।

ବାରଣ୍ଡାରେ ଆରାମଚୌକିଟା ଉପରେ ଅଧାଶୁଆ ଭାବରେ ବସି ଚାହା ପିଉ ପିଉ ରାଜୀବବାବୁ ଚାରିଆଡ଼ର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ହଠାତ୍, ଗ୍ରେଟ ରକ୍ତଗୋଲାପ ଗଛଟା ଆଡ଼କୁ ଚାହିଁ ଲକ୍ଷ୍ମୀ ସ୍ମିତା ମନେପଡ଼ିଲା ତାଙ୍କର । ସେ ଗଛଟିରେ ପ୍ରଥମ କରି ଫୁଲଟିଏ ଫୁଟିଛି । ଚୈତ୍ରମାସ ତଳେ ସ୍ମିତା ଯେତେବେଳେ ଆସିଥିଲା, କାହାଘରୁ ମାଗିଆଣି ଲଗାଇଥିଲା ଗଛଟି । ଫୁଲକୁ ସ୍ମିତାର ଖୁବ୍ ଶ୍ରଦ୍ଧା । ଆଜି ଯଦି ସ୍ମିତା ଏଠି ଥାଆନ୍ତା, ତା ଗଛରେ ପ୍ରଥମ ଫୁଲଟି ଫୁଟିବା ଦେଖି ଆନନ୍ଦରେ ଉଦ୍‌ବେଳିତ ହୋଇଉଠନ୍ତାଣି ।

ହଠାତ୍ ନିଜକୁ ବଡ଼ ନିଃସଙ୍ଗ ମନେକଲେ ରାଜୀବବାବୁ । ଘଣ୍ଟା ସକାଳୁ ଛଅଟା ବେଳରେ ଉଠେ—କିନ୍ତୁ ସ୍ମିତା ପିଲାଦିନୁ ଠିକ୍ ସମୟ ଅନୁସାରେ ବାପ ଉଠିବା ସଙ୍ଗେ ସଙ୍ଗେ ଉଠିପଡ଼ୁଥିଲା । ଏହିପରି କେତେ ସକାଳ ଯେ ଶିଶୁ ସ୍ମିତାର ଅଜସ୍ର ପ୍ରଶ୍ନର ଉତ୍ତର ଦେଇ ଦେଇ କଟିଛି ! ଟିକିଏ ବଡ଼ ହୋଇଗଲାପରେ ପ୍ରତିଦିନ ଭୋରରେ ଷ୍ଟୋଭ୍ ଲଗାଇ ସ୍ମିତା ବାପାଙ୍କ ପାଇଁ ଚାହା କରିଦେଇଛି । ପୁରୀରେ ଥିଲାବେଳେ ସୂର୍ଯ୍ୟୋଦୟ ଦେଖିବା ପାଇଁ ପ୍ରତିଦିନ ତାଙ୍କ ସହିତ ଯାଇଛି ସମୁଦ୍ର କୂଳକୁ । ନିଜେ ସେ ବଡ଼ ସନ୍ତାନସ୍ନେହୀ । ସ୍ମିତାକୁ ନିଜ ପାଖରେ ବସାଇ ଖୁଆଇ ନଦେଲେ ମନ ତାଙ୍କର ତୃପ୍ତ ହେଉନଥିଲା ।

ଶିଶୁ ଅବସ୍ଥାରୁ କିଶୋର ଅବସ୍ଥା ପର୍ଯ୍ୟନ୍ତ ସ୍ମିତାର ସବୁ ବୟସର ଛବି ଯେପରି ରାଜୀବବାବୁଙ୍କ ଆଖିଆଗରେ ଗୋଟିକ ପରେ ଗୋଟିଏ ନାଚିଉଠିଲା । କାଲି ପରି ଲାଗୁଛି—ଦୋଳିରେ ଶୋଇ ସ୍ମିତା ଖିଲ୍ ଖିଲ୍ ହୋଇ ହସୁଥିଲା । ଠିକ୍ ଗୋଟିଏ କଣ୍ଢେଇ ଭଳି ହୋଇଥାଏ ଝିଅଟି । ତାପରେ ଯେଉଁଦିନ ଖଡ଼ି-ଛୁଆଁ ହେଲା ସେଦିନ କଥା ବି ମନେପଡ଼ିଲା । ଘରେ ସମସ୍ତେ ପ୍ରତିବାଦ କରିଥିଲେ—ଝିଅମାନଙ୍କର ଖଡ଼ିଛୁଆଁ ହୁଏନି, ପୁଅଙ୍କର ହୁଏବୋଲି । କିନ୍ତୁ ଜିଦ୍‌ଧରି ରାଜୀବବାବୁ ବେଶ୍ ଆଡ଼ମ୍ବରରେ ସ୍ମିତାର ଖଡ଼ିଛୁଆଁ କରାଇଥିଲେ । ତାର କଅଁଳିଆ ହାତଟି ନିଜ ହାତମୁଠାରେ ଧରି ସିଲଟ ଉପରେ ଖଡ଼ି-ସାହାଯ୍ୟରେ ଲେଖାଇଥିଲେ ଆଦ୍ୟଅକ୍ଷର ଓଁ । କି ଆନନ୍ଦ ସେଦିନ ସ୍ମିତାର !

ସ୍ମିତା ତାଙ୍କ ଜୀବନର ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗଭଳି ହୋଇପଡ଼ିଥିଲା । ଆଜି ସେ କେତେ ଦୂରରେ ! ଏକ ଅହେତୁକ ନିଃସଙ୍ଗତା ଅନୁଭବ କଲେ ରାଜୀବବାବୁ । ଆଗକୁ ପୂଜାଛୁଟି । ବହୁତ ଆଗରୁ ମହେଶ ଓ ସ୍ମିତାକୁ ପୂଜାଛୁଟିଟା ଏଇଠି କଟାଇବା ପାଇଁ ଆସିବାକୁ ଚିଠି ଲେଖିଦେଇଛନ୍ତି । ରମେଶବାବୁଙ୍କୁ ବି ଚିଠି ଲେଖିଛନ୍ତି । ଆଜି ପୁଣି ସେମାନଙ୍କ ପାଖକୁ ଖଣ୍ଡେ ଖଣ୍ଡେ ଚିଠି ଦେବାକୁ ଚିନ୍ତିବ ।

ଧୀର ପବନରେ ସେହି ପ୍ରଥମ ରକ୍ତଗୋଲାପଟି ହଲୁଛି । ଗୁଛଆଡ଼େ ତାର ସବୁଜରଙ୍ଗର କଅଁଳିଆ ପତ୍ରଗୁଡ଼ିକ । ସ୍ମିତା ଦେଖିଲେ ବଡ଼ ଖୁସିହୋଇଯିବ । ଏଥର ସ୍ମିତା ଗଲାବେଳକୁ କୃଷିଫାର୍ମରୁ ମଗାଇଆଣିବେ ସେ ଗୋଟିଏ ବଡ ରକ୍ତଗୋଲାପର ଗଛ, ଖୁବ୍ ବଡ଼ ହଳଦିଆ ଓ ଧଳାରଙ୍ଗ ସେବତୀଗଛ ଦୁଇଟା ବ କେଉଁଠୁ ଯୋଗାଡ଼ କରିବାକୁ ପଡ଼ିବ ସ୍ମିତାକୁ ଉପହାର ଦେବାପାଇଁ । ଏସବୁ ଫୁଲଗୁଡ଼ାକ ସ୍ମିତାର ଅତି ପ୍ରିୟ ।

ରାଜୁବାବୁଙ୍କ ଚନ୍ଦ୍ରାସ୍ତକୁ ଛିନ୍ନ କରି ସୁଜାତା ଆସି ଠିଆହେଲେ । ମା'ଙ୍କ ହାତ ଧରି ସବ୍ୟସାଚୀ ବ ଆସିଛି । ପୁଅକୁ ଆଦର କରି କୋଳକୁ ଟାଣିନେଲେ ରାଜୁବାବୁ । କହିଲେ, "ଦେଖିଲୁ ସଚୀ, ନାନୀର ଫୁଲଗଛଟିରେ ଆଜି କେମିତି ଫୁଲଟିଏ ଫୁଟିଛି ? ନାନୀ ଯେତେବେଳେ ଜାଣିବ କେତେ ଖୁସି ହେବ କହିଲୁ !"

ନାନୀର ନାଁ ଶୁଣି ସଚୀର କଅଁଳିଆ ମୁହଁଟି ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା, "ନାନୀ କେବେ ଆସିବ ବାପା ?"—ଅ ହରେ ମୁହଁ ଟେକି ପଚାରିଲା ସେ ।

"ଆଉ ଛଅ ସାତ ଦିନ ରହିଲା ବୋଧହୁଏ—ମୁଁ ଠିକ୍ ଜାଣେନା ମହେଶର କଲେଜ କେବେ ଛୁଟି ହେଉଚ..."

ସୁଜାତା କହିଲେ, "ହେଇଟି, ଆସିବା ଆଗରୁ କେଉଁ ଦିନ ସେମାନେ ଆସିବେ ସେ କଥା ଚିଠି ଲେଖି ଜଣାଇବାକୁ ମହେଶ ପାଖକୁ ଚିଠି ଲେଖିଛଟି ? ଟିଟିଲାଗଡ଼ରେ ବସ୍ ସିଟ୍ ପାଇବାକୁ ଅସୁବିଧା ହେବ । ଆଗରୁ ଜାଣିଲେ ଆମେ କାହାର ହେଲେ ଗାଡ଼ିଟେ ଯୋଗାଡ଼ କରି ପଠାଇଦିଅନ୍ତେ !"

ହସିଦେଇ ରାଜୁବାବୁ କହିଲେ, "ସେକଥା କଣ ଆଉ ମୁଁ ନ ଲେଖି ରହିଛୁ ? ଯେ କୌଣସିମତେ ଆଗରୁ ମୋ ପାଖକୁ ଖବର ଦେବାକୁ ଲେଖିଦେଇଛି—ତା ନହେଲେ ଟିଟିଲାଗଡ଼ଠୁ ବଲାଙ୍ଗିର ଚାଳିଶି ମାଇଲ୍ ବସ୍‌ରେ ଆସିଲେ ସେମାନେ ହଇରାଣ ହୋଇଯିବେନି ? ଗତଥର ଭଳି ଇଞ୍ଜିନିୟର ବାବୁଙ୍କ ଗାଡ଼ିଟା ମଗାଇ ପଠାଇଦେବା । ସଚୀ, ଷ୍ଟେସନକୁ ଯିବୁକରେ ନାନୀକି ଆଣିବାକୁ ?"

ଏତିକିବେଳେ ପୂଜାକାମ ବଢ଼ାଇଦେଇ ରାଜୁବାବୁଙ୍କ ମାଆ ମଧ୍ୟ ଆସି ପହଞ୍ଚିଲେ । ସ୍ମିତା ଆସିବା ଆଲୋଚନାରେ ସେ ମଧ୍ୟ ଯୋଗ ଦେଲେ । ସ୍ମିତା ଆସିଲେ ଏଥର ସମସ୍ତେ ଯାଇ ହୀରାକୁଦ ଜଳଭଣ୍ଡାର ଦେଖିଆସିବେ । ପ୍ରସିଦ୍ଧ ହରିଶଙ୍କର ଓ ନୃସିଂହନାଥଙ୍କ ମନ୍ଦିର ବ ଦେଖାହେବ । କୁମାରପୂର୍ଣ୍ଣିମୀ ପାଇଁ ସ୍ମିତାର କିମିତି ଶାଢ଼ୀ କିଣାଯିବ ପ୍ରଭୃତି ଅନେକ ପ୍ରକାର କଳ୍ପନା ଜଳ୍ପନା ଚାଲିଲା । ସମସ୍ତ କଳ୍ପନାର କେନ୍ଦ୍ର ହେଲା ସ୍ମିତା । ଆନନ୍ଦରେ ସମସ୍ତଙ୍କ ମୁହଁ ଝଲମଲ କରୁଥାଏ ।

ଆକାଶରେ ସୂର୍ଯ୍ୟ କ୍ରମଶଃ ଉପରକୁ ଉଠୁଥାନ୍ତି । ଡ଼ାକବାଲାକୁ ଫାଟକ ଖୋଲି ଆସିବା ଦେଖି ରାଜୁବାବୁ ଚଉକି ଛାଡ଼ି ଉଠି ଠିଆହେଲେ—ସ୍ମିତାଠୁ ଖବର ଆସିଥିବ ନିଶ୍ଚୟ ।

"ଆଜ୍ଞା—ଟେଲିଗ୍ରାମ୍ !"

"ବାଃ—ଏକାବେଳେ ଟେଲିଗ୍ରାମ ! ସତୀ...ନାଣି ନିଶ୍ଚୟ କାଲି ଆସୁଛି ।" ଆନନ୍ଦ ଉଚ୍ଛ୍ୱସିତ କଣ୍ଠରେ କହିଲେ ରାଜୁବାବୁ

ଆଗ୍ରହରେ ସତୀ ଦୌଡ଼ିଗଲା ବାପାଙ୍କ ପାଖକୁ । ସୁଜାତା ହସି ହସି କହିଲେ, "ମହେଶ୍ୱର ସେଉଁ କାମ, ଆଗରୁ ଚଠି ଝଣ୍ଡେ ଦବନି...ପଛକୁ ଏକାବେଳେ ଟେଲିଗ୍ରାମ୍ ! ଦେଖିଲ, କାଲି ପୁଣି କୋଉ ଗାଡ଼ିରେ ଆସୁଛନ୍ତି ସେମାନେ...ଇଞ୍ଜିନିୟର ବାବୁଙ୍କ ଗାଡ଼ିଟା..."

ସୁଜାତାଙ୍କ ଭୁଣ୍ଡ କଥା ଭୁଣ୍ଡରେ ରହିଲା । ହଠାତ୍ ରାଜୁବାବୁଙ୍କ ମୁହଁରୁ ଏକ ମର୍ମଭେଦୀ ଚିତ୍କାର ଶୁଣି ଉପସ୍ଥିତ ସମସ୍ତେ ଚମକିପଡ଼ିଲେ । କି ବିଚିତ୍ର, କି ବିକୃତ, କି ମର୍ମନ୍ତୁଦ ସେ ସ୍ୱର ! ପରକ୍ଷଣରେ ରାଜୁବାବୁଙ୍କ ଅଚେତ ଦେହଟା ଭୂଇଁ ଉପରେ ଲୋଟିପଡ଼ିଲା । ହାତର କାଗଜଟି ଖସିପଡ଼ିଲା ତଳେ ।

ଫେରିଯାଉଥିବା ଡାକପିଅନ ଦଉଡ଼ି ଆସିଲା । ଆଶୁ ଅମଙ୍ଗଳର ସେ ଭୀଷଣ ସୂଚନାରେ ସୁଜାତାଙ୍କ ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଥରୁଥିଲା ଥରହର ହୋଇ । ଚିତ୍କାର କରି ସତୀ କୁଣ୍ଢାଇପକାଇଛି ତାଙ୍କୁ । ବୁଢ଼ୀମା ନିଜ ମୁଣ୍ଡକୁ ଚପିଧରି ତଳେ ବସିପଡ଼ିଛନ୍ତି । ଚାକର ପୂଝାରୀ ଦୁହେଁ ଧାଇଁଆସିଥାନ୍ତି ଘରଭିତରୁ । ଧରାଧରି କରି ରାଜୁବାବୁଙ୍କୁ ଘର ଭିତରକୁ ନେଇ ଶେଯ ଉପରେ ଶୁଆଇ ଦିଆଗଲା । ସମସ୍ତେ ଶୁଶ୍ରୂଷା କରିବାକୁ ଲାଗିଲେ ।

ଚେତନା ଫେରିଆସିବା ପରେ ରାଜୁବାବୁ ଭାବିଲେ ତାଙ୍କର ଚେତନା କାହିଁକି ପୁଣି ଫେରିଆସିଲା ? ଆଖି ଆଗରେ ବାରମ୍ବାର ଫୁଟି ଉଠିଲା ଗୋଲାପୀ କାଗଜ ଉପରର କଳା ଦାଗ-ଦିଆ ଅକ୍ଷରଗୁଡ଼ାକ । ସେ କଣ ଦୁଃସ୍ୱପ୍ନ ଦେଖୁଛନ୍ତି ? ନହେଲେ ଭୁଲ୍ ପଢ଼ିଛନ୍ତି ! ନ ହେଲେ...ନ ହେଲେ କଣ ? କିନ୍ତୁ ଆଉଥରେ ଟେଲିଗ୍ରାମ୍‌ଟି ପଢ଼ିବାକୁ ତାଙ୍କର ସାହସ ନାହିଁ । ...ଦୁଃସ୍ୱପ୍ନ ହେଇଥାଉ ଭଗବାନ୍...ସେ ସ୍ୱପ୍ନ ହିଁ ଦେଖିଥାନ୍ତୁ । ଭଗବାନ୍, ଭଗବାନ୍ ! ରାଜୁବାବୁଙ୍କ ଅନ୍ତରାତ୍ମା ଚିତ୍କାର କରୁଥିଲା ।

ଭୀତବିହ୍ୱଳ ଦୃଷ୍ଟିରେ ଚାହିଁରହିଛନ୍ତି ସୁଜାତା । ସେ ଦୃଷ୍ଟିରେ ପ୍ରଶ୍ନ ଅଛି କିନ୍ତୁ ଉତ୍ତର ଶୁଣିବାର ସାହସ ନାହିଁ । ଅସମ୍ଭବ ରକମ ବିବର୍ଣ୍ଣ ଦିଶୁଛି ମୁହଁଟା । ମା'ଙ୍କ ମୁହଁରେ ବି ସେହି ଏକପ୍ରକାର ଭାବ । ପରକ୍ଷଣରେ ପୁଣି ରାଜୁବାବୁଙ୍କ ଆଖି ଆଗରେ ଭାସି ଉଠିଲା ସେ ଅକ୍ଷରଗୁଡ଼ାକ......ଅସମ୍ଭବ...ଅସମ୍ଭବ....ତା ହୋଇପାରେନା...କଦାପି ହୋଇ-ପାରେନା ! ଏ ଆଘାତ ସେ ସହିପାରିବେନି...ଜମା ସହିପାରିବେନି...ଓଃ ! ଛାତି ଭିତରଟା କଣ ହେଇଯାଉଛି ! ପିଅନଟି ଧୀରେ ଧୀରେ ପଚାରିଲା—ଦେହ ଟିକେ ଭଲ ଲାଗିଲା ଆଜ୍ଞା ?

ଉଦ୍‌ଭ୍ରାନ୍ତ ପରି ରାଜୁବାବୁ କହିଲେ, "ହଁ ହଁ, ଭଲଲାଗୁଚି···ତମେ ଯାଅ, ଟିକେ ଡାକ୍ତରବାବୁଙ୍କୁ ଡାକିଆଣ ।" କାନ୍ଥଆଡ଼କୁ ମୁହଁ ଫେରାଇଦେଲେ ରାଜୁବାବୁ । ସୁଜାତାଙ୍କ ସେ ମୃତ୍ୟୁବାଣୀ ସହିପାରୁନାହାନ୍ତି ସେ । ନା ନା, ଭଗବାନ୍ ! ଏତେ ନିଷ୍ଠୁର କଦାପି ହୋଇପାରିବେନି !

ମୁଣ୍ଡପାଖରେ ବସି ପଙ୍ଖାଟା ହଲଉ ହଲଉ ମା' ଡରି ଡରି ପଚାରିଲେ, "ରାଜୁ ···ସି ଡା···" ଭୟରେ ତାଙ୍କ ପାଟି ଝନ୍‌ମାରିଗଲା । ଆଉ କିଛି ପଚାରିପାରିଲେନି ସେ । ଅଶ୍ରୁବିକୃତ କଣ୍ଠରେ ହଠାତ୍ ରାଜୁବାବୁ କହି ଉଠିଲେ—ସେ ବଞ୍ଚିଛି ମା, ମରିନି, ହେଲେ ତାର ସବୁ ସରିଯାଇଛି, ମହେଶ···"କ୍ରନ୍ଦନର ବେଗରେ ତାଙ୍କ କଣ୍ଠ ରୁଦ୍ଧ ହୋଇଗଲା ।

ଉପସ୍ଥିତ ସମସ୍ତେ ସ୍ତମ୍ଭିତ ହୋଇଗଲେ । ସ୍ମିତାର ମୃତ୍ୟୁ ସମ୍ବାଦ ବି ବୋଧହୁଏ ଏତେ ନିଷ୍ଠୁର ସମ୍ବାଦ ବୋଲି ମନେ ହୋଇନଥାନ୍ତା । ଝଟବାଡ଼କୁ ମୁଠେଇ ଧରି ନିଜକୁ ରକ୍ଷାକଲେ ସୁଜାତା । ବୁଢ଼ୀମାଙ୍କ ମର୍ମଭେଦୀ କ୍ରନ୍ଦନ ଧ୍ୱନିରେ ଆତଙ୍କିତ ବାଳକ ସବ୍ୟସାଚୀ ଭୀତବିହ୍ୱଳ ମୁହଁରେ ଲୁଣ୍ଠାଇଧରିଛି ତାଙ୍କୁ । ଭୀଷଣ ଗୋଟାଏ କିଛି କରିଦେବାକୁ ଯାଉଥିଲେ ସୁଜାତା, ହଠାତ୍ ସଚୀର କାନ୍ଦ ଯେପରି ବାସ୍ତବ ଜଗତକୁ ତାଙ୍କୁ ଟାଣିଆଣିଲା । ସଚୀକୁ କୋଳ ଭିତରକୁ ଟାଣିଆଣି କାନ୍ଦଉଠିଲେ ସେ ।

ଆନନ୍ଦରେ ନିମଗ୍ନ ଶ୍ରେଷ୍ଠ ଘରଟି ଗୋଟିଏ ମୁହୂର୍ତ୍ତରେ ଶୋକସାଗରରେ ଉଚ୍ଛୁଳି ଉଠିଲା ।

ମାତ୍ର ତିନୋଟି ଦିନର ଜ୍ୱରରେ ମହେଶ ଏ ଦୁନିଆର ସମସ୍ତ ମାୟା ମୋହ ତୁଟାଇଦେଇ, ନବବିବାହିତା ପତ୍ନୀକୁ ଦୁର୍ଭାଗ୍ୟର ଚରମ ଅବସ୍ଥାରେ ଛାଡ଼ିଦେଇ ଚିରଦିନପାଇଁ ଚାଲିଗଲା । ସଦ୍ୟ ବିକଶିତ କୋରକଟିକୁ କିଏ ଯେପରି ନିକ୍ଷେପ କରିଦେଲା ଜ୍ୱଳନ୍ତ ଅଗ୍ନିକୁଣ୍ଡ ଭିତରେ ।

ଦହନର ତୀବ୍ର ଜ୍ୱାଳାରେ ଦଗ୍ଧ ହୋଇଯାଉଥିବ ସ୍ମିତା, ଦଗ୍ଧ ହୋଇଯାଉଥିବ ତାର କୋମଳ ଅନ୍ତର । ଏ ଆକସ୍ମିକ ବଜ୍ରାଘାତରେ ତାର ସମସ୍ତ ଭାବନା ଚିନ୍ତା ଲୁପ୍ତ ହୋଇଯାଇଥିବ । ଝଡ଼ବୃଷ୍ଟିର ଭୀଷଣତା ଭିତରେ ନିରାଶ୍ରୟ ପକ୍ଷୀ ଶାବକଟିଏ ଭଳି ସେ ଅସହାୟ ହୋଇପଡ଼ିଥିବ । ରାଜୁବାବୁଙ୍କୁ ଦମ୍ଭଧରି ତା ପାଖକୁ ଯିବାକୁ ପଡ଼ିବ, ତାକୁ ଆଣିବାକୁ ପଡ଼ିବ । ନୀଡ଼ରୁ ନିପତିତ ଭଗ୍ନପକ୍ଷ ପକ୍ଷୀଶାବକଟିକୁ ଉଠାଇ ଆଣି ଆଶ୍ରୟ ଦେବାକୁ ପଡ଼ିବ ନିଜର ବକ୍ଷପୁଟ ତଳେ । ଡାକ୍ତର ମାଧବବାବୁ କେତେକ ସାଂସାରିକ ଉପଦେଶ ଦେଇ ରାଜୁବାବୁଙ୍କୁ ବୁଝାଉଥିଲେ ।

ଶୂନ୍ୟଦୃଷ୍ଟିରେ ଚାହିଁରହିଥିଲେ ରାଜୁବାବୁ । କେତେ ଘଣ୍ଟା ପୂର୍ବର ସୁନ୍ଦର ପୃଥିବୀଟା ନିଜର ସମସ୍ତ ସୌନ୍ଦର୍ଯ୍ୟ ହଜାଇଦେଇ ଯେପରି ଛଟପଟ ହେଉଛି ଗୋଟିଏ ଶରବିଦ୍ଧ ପକ୍ଷୀପରି । ଓଃ ! ଏ ପୃଥିବୀରେ ବଞ୍ଚିରହିବାଟା କି ଦୁଃଖକର !

ଦିନ କାହାକୁ ଅପେକ୍ଷା କରେନି । ମହେଶ ଚାଲିଯିବାର ଚଉଦ ଦିନ ହୋଇଗଲା । ସ୍ମିତାର ଆଖିରୁ ଲୁହ ସରିଯାଇଛି । ଚିନ୍ତା କରିବାର ସମସ୍ତ ସ୍ନାୟୁ ପଙ୍ଗୁ ହୋଇଯାଇଛି । କଣ୍ଠ ନିସ୍ତବ୍ଧ । ପରଲୋକଗତ ଆତ୍ମାର ଶୁଦ୍ଧି ନିମନ୍ତେ ସମସ୍ତ ପ୍ରକାର କ୍ରିୟାକର୍ମ ଶେଷ ହେଲାପରେ ଭଗ୍ନହୃଦୟ ବୃଦ୍ଧ ରମେଶବାବୁଙ୍କଠାରୁ ବିଦାୟ ନେଇ ହତଭାଗିନୀ କନ୍ୟାକୁ ସାଙ୍ଗରେ ନେଇ ଫେରିଲେ ରାଜ୍‌ବାବୁ । ସ୍ମିତାର ସେ ମୁହଁକୁ ଚାହିଁ ପାରୁନଥାନ୍ତି ସେ । ତାର ନିରାଭରଣ ବେଶକୁ ଦେଖିଲା କ୍ଷଣି ଛାତି ତାଙ୍କର ଫାଟିଯାଉଥାଏ ଯେପରି ।

ରେଲଗାଡ଼ିର ନିର୍ଜନ ପ୍ରଥମଶ୍ରେଣୀ ଡବା । ବେଞ୍ଚ୍‌ର ଗୋଟାଏ କଣକୁ ସ୍ମିତା ବସିରହିଛି ପ୍ରସ୍ତରଖୋଦିତ ନିଷ୍ପ୍ରାଣ ପ୍ରତିମାଟିଏ ପରି । ଦୃଷ୍ଟି ତାର ସୀମାହୀନ ଆକାଶ ସହିତ ମିଶିଯାଇଛି । କଣ ସେ ଭାବୁଛି ? ଦୀର୍ଘଦିନର ବ୍ୟବଧାନ ପରେ ଆଜି ସେ ମନେପକାଉଥିଲା ନିଜ ଅତୀତର ସ୍ୱର୍ଣ୍ଣମୟ ଇତିହାସକୁ । ଗତବର୍ଷ ଛୁଟି କଟାଇବା ପରେ ଏଇ ଗାଡ଼ିରେ ଫେରିଥିଲେ ସେ ଦୁହେଁ । କିଏ ଜାଣିଥିଲା ନିୟତି ଏହିପରି ନିର୍ମମ ହୋଇପଡ଼ିବ ? ଏକୁଟିଆ ଏଭଳି ଅବସ୍ଥାରେ ଫେରିବାକୁ ପଡ଼ିବ ତାଙ୍କୁ ? ଜୀବନୀଶକ୍ତିରେ ପରିପୂର୍ଣ୍ଣ ଦୁଇଟି ହୃଦୟ—ସୁଦୀର୍ଘ ଭବିଷ୍ୟତ୍ ପାଇଁ ରଚିଥିଲେ କେତେ ସୁନେଲି ସ୍ୱପ୍ନ, କେତେ ରଙ୍ଗୀନ୍ ପରିକଳ୍ପନା । ଜୀବନ ତ ସେହିକ୍ଷଣି ଆରମ୍ଭ ହୋଇଥିଲା । ସ୍ୱାମୀଙ୍କ ବିନା ଦଣ୍ଡେ ବଞ୍ଚିରହିପାରିବାର କଳ୍ପନା ସେ ସ୍ୱପ୍ନରେ ସୁଦ୍ଧା କରିପାରିନି କେବେ । ତାଙ୍କର ସେ ମଧୁର କଣ୍ଠର ସ୍ନେହବୋଳା କଥା ସେ ଶୁଣିପାରିବନି, ସେ ସୁନ୍ଦର ମୂର୍ତ୍ତି ଦେଖିପାରିବନି, ସେ କୋମଳ ସ୍ପର୍ଶ ଆଉ ଅନୁଭବ କରିପାରିବନି । ଏ ଜନ୍ମ ପାଇଁ ସେ ସବୁର ପରିସମାପ୍ତି ଘଟିଛି । ଏକାକୀ ସେ ବଞ୍ଚିରହିବ କିପରି ?

ନିଜର ସଂପୂର୍ଣ୍ଣ ଅଜ୍ଞାତରେ ତା ଆଖିରୁ ଲୁହ ଝରୁଥିଲା ।

ଫାଟକ ଆଗରେ ମଟର ରହିଲା । ସ୍ମିତାର ଆଗମନରେ ଏ ଘର ଉଚ୍ଛୁଳିଉଠୁଥାନ୍ତା ଆନନ୍ଦରେ । କଳକଣ୍ଠରେ ଅଭିନନ୍ଦନ କରି ଦୌଡ଼ିଆସିଥାନ୍ତେ ସମସ୍ତେ । ଆଜି କିନ୍ତୁ ସବୁ ନିସ୍ତବ୍ଧ ।

ସ୍ମିତାର ମନ ଅତୀତକୁ ଫେରିଯାଇ ସେହି ଚିତ୍ରଗୁଡ଼ିକ ଦେଖୁଥିଲା × × × ମହେଶ ଆଉ ସେ । ଦୁହେଁ ଗାଡ଼ିରୁ ଓହ୍ଲାଇଲାକ୍ଷଣି ବାରଣ୍ଡା ଉପରୁ ଓହ୍ଲାଇ ଆସିଲେ ବାପା ଓ ସଚୀ । ହସି ହସି ନମସ୍କାର କଲା ମହେଶ । ଲଜ୍ଜିତ, ସଙ୍କୁଚିତ ସଚୀକୁ ଟେକି ଉଠାଇନେଲା ଆଦରରେ । କଣ ଗୋଟାଏ କହିବାକୁ ସେ ଫେରି ଚାହିଁଲା ସ୍ମିତା ଆଡ଼କୁ । ଆନନ୍ଦରେ ଝଲମଲ କରୁଥିଲା ତାର ମୁହଁଟା ।

ସ୍ୱପ୍ନାଭିଭୂତା ସ୍ମିତା ଯନ୍ତ୍ରଚାଳିତ ପରି ଗାଡ଼ିରୁ ଓହ୍ଲାଇ କେତେବେଳେ ଯେ ଯାଇ ପାହାଚ ପାଖରେ ପହଞ୍ଚିଲାଣି ସେକଥା ତାର ଖିଆଲ ହେଉନି ।

"ନା....ନୀ!"

ହଠାତ୍ ଶିଶୁକଣ୍ଠର ଆହ୍ୱାନ ଶୁଣି ସେ ଫେରିଆସିଲା ରୂଢ଼ ବାସ୍ତବକୁ। ଚାକରଟା ଘର ଭିତରେ ଯାଇ ଖବର ଦେଲା କ୍ଷଣି ଦୌଡ଼ିଆସୁଥିଲା ସଚୀ ଆନନ୍ଦରେ ଉଦ୍‌ବେଳିତ ହୋଇ; କିନ୍ତୁ ଦାଣ୍ଡଦୁଆରର ପର୍ଦ୍ଦା ଟେକିଲାକ୍ଷଣି ସେ ସ୍ତମ୍ଭିତ ହୋଇଗଲା। ଏ ତାର ନାନୀ! ଗତ କେତେଦିନର ପରିସ୍ଥିତିରେ ତାର ଶିଶୁ ଚିତ୍ତ ଭୀଷଣ କିଛି ଅନୁମାନ କରିଥିଲା ସତ, କିନ୍ତୁ ସ୍ମିତାକୁ ସେହି ବେଶରେ ଦେଖି ସେ ସ୍ତମ୍ଭିତ ହୋଇଗଲା। ସ୍ମିତାକୁ ଚିହ୍ନି ହେଉନାହିଁ। ନାନୀର ସୁନ୍ଦର ଗହଣାସବୁ କାହିଁକି କାଢ଼ିଦିଆଯାଇଛି? ତାର ନାଲି ନେଳି ସୁନ୍ଦର ଲୁଗାସବୁ କୁଆଡ଼େ ଗଲା? ସେ କାହିଁକି ବୁଢ଼ୀମା'ଙ୍କ ଭଳି ଇମିତି ଅସନା ଧଳାଲୁଗା ଖଣ୍ଡେ ପିନ୍ଧିଛି?

ଶିଶୁ ସବ୍ୟସାଚୀର ମୁହଁରେ ଆତଙ୍କ ଓ ବିସ୍ମୟ ମିଶି ଏକ ବିଚିତ୍ର ଭାବ ସୃଷ୍ଟି କରିଥିଲା। ସ୍ମିତା ଠିଆହୋଇପଡ଼ି ଚାହିଁରହିଲା। ହାତ ଦୁଇଟା ଉଠାଇ ସଚୀକୁ କୋଳକୁ ଟାଣି ଆଣିବା ଶକ୍ତି ତାର ନାହିଁ।

ଘର ଭିତରୁ ସୁଜାତାଙ୍କ ବୁକୁଫଟା କାନ୍ଦର ଶବ୍ଦ ଭାସିଆସିଲା। କାନିରେ ଲୁହ ପୋଛୁ ପୋଛୁ ଆଗେଇ ଆସିଲେ ବୁଢ଼ୀମା, ତାଙ୍କ ପଛରେ ମା। ସର୍ବନାଶର ସେ ଭୟଙ୍କରୀ ଛବି ଆଉଥରେ ଯେପରି ନୂଆକରି ଅନୁଭବ କଲା ସ୍ମିତା। ମୁଣ୍ଡ ଝିମ୍ ଝିମ୍ ହୋଇଯାଉଛି, ଆଖିର ଲୁହରେ ବାଟ ଦିଶୁନି, ଅଶ୍ରୁବିକୃତ କଣ୍ଠରେ ସ୍ମିତା ଡାକିଲା....ମା!

ସେ ଡାକରେ ଯେପରି ଯୁଗଯୁଗର ବେଦନା ସଞ୍ଚିତ ହୋଇ ରହିଥିଲା। ଆଖିଲୁହରେ ଅନ୍ଧପ୍ରାୟ ସୁଜାତା ହାତ ଦୁଇଟା ବଢ଼ାଇଦେଇ କହି ଉଠିଲେ, 'ମା....ମୋର!'

ସେହି ଦିନୁ ବ୍ରଜକିଶୋର ବାବୁଙ୍କୁ ହସିବା ଆଉ କେହି ଦେଖିନି। ଜୀବନ ଯୁଦ୍ଧ କ୍ଷେତ୍ରରେ ଯେଉଁ ବ୍ୟକ୍ତି ସର୍ବଦା ଜୟମାଲ୍ୟରେ ଭୂଷିତ ହୋଇଆସୁଥିଲେ, ଏ ଦାରୁଣ ପରାଜୟ ତାଙ୍କୁ ଏକାବେଳକେ ପଙ୍ଗୁ କରିପକାଇଛି। ତାଙ୍କର ଆଉ ସେ ସ୍ଫୂର୍ତ୍ତିଭରା କଥାବାର୍ତ୍ତା ନାହିଁ, ହାସ-ପରିହାସ ବା ଆମୋଦପ୍ରମୋଦ କିଛି ନାହିଁ। ଗୋଟିଏ ଯନ୍ତ୍ରପରି ସେ ନିଜର କର୍ତ୍ତବ୍ୟ କରିଚାଲିଛନ୍ତି। ତାଙ୍କର ପାଣ୍ଡୁର, ବେଦନାତୁର ମୁହଁ ଦେଖିଲାକ୍ଷଣି ନିଜକୁ ଅପରାଧିନୀ ଭଳି ମନେହେଉଛି ସ୍ମିତାର। ତାକୁ ଦେଖିଲାକ୍ଷଣି ଯେ ସେହି ଗମ୍ଭୀର ମୁହଁଟିରେ ଦୁଃଖର ଛାୟା ଘନୀଭୂତ ହୋଇ ଫୁଟିଉଠେ, ତାହା ସେ ଲକ୍ଷ୍ୟକରିଛି। ସେଇଥିପାଇଁ ସାଧାରଣତଃ ବାପାଙ୍କ ଆଗକୁ ଆଉ ବେଶି ଆସେନି ସେ; ଲୁଚି ଲୁଚି ବୁଲେ।

ଦାରୁଣ ମାନସିକ ଯନ୍ତ୍ରଣା ଭିତରେ ଦିନ କଟୁଥାଏ ସୁଜାତାଙ୍କର । ନିଷ୍ଠାପରାୟଣ ବ୍ରାହ୍ମଣଘରର ବିଧବା କନ୍ୟା—କଠୋର ନିୟମ ଭିତରେ ତାଙ୍କୁ ନିଜେ ସେ ଚଳାନ୍ତି । ଜନନୀର ଅନ୍ତର ବ୍ୟାକୁଳ ହୋଇପଡୁଥାଏ ସେହି କଠିନ ନିୟମାବଳୀକୁ ଶିଥିଳ କରିପକାଇବାକୁ; କିନ୍ତୁ ତିଳେମାତ୍ର ଏପଟ ସେପଟ କରିବାର ଉପାୟ ନାହିଁ । ଶାଶୁ ତାଙ୍କର ଅତି ନିଷ୍ଠାପରାୟଣା ଓ ପୁରାତନପନ୍ଥୀ ।

ହିନ୍ଦୁସଂସ୍କୃତିର ସୁଦୀର୍ଘ ଇତିହାସର କେଉଁ ପୃଷ୍ଠାରେ ଯେ ଏ ବିଧି ପ୍ରଥମେ ସ୍ଥାନ-ପାଇଥିଲା, ତାହା ଅବଶ୍ୟ ପଣ୍ଡିତମାନଙ୍କର ବିଚାର୍ଯ୍ୟ । କିନ୍ତୁ ମନୁଷ୍ୟର ଏ ଅଦ୍ଭୁତ ଚିନ୍ତା-ଧାରା, ବିଚିତ୍ର ବିଶ୍ୱର କଥା ଭାବିଲେ ଅବାକ୍ ହେବାକୁ ପଡ଼େ । ଗୋଟିଏ ଜୀବନର ବିଚ୍ଛେଦରେ ଅନ୍ୟଗୋଟିଏ ଜୀବନକୁ ନିୟମର କଠିନ ଚକ ତଳେ ପେଷି ତିଳେ ତିଳେ ହତ୍ୟା କରିବାର ଯଥାର୍ଥତା କଣ ? ମଣିଷ କେବେ ବିଶ୍ଳେଷଣ କରି ଦେଖିନି । ଯେଉଁ ଧାରଣା ବଦ୍ଧମୂଳ ହୋଇ ରହିଆସିଛି, ତାକୁ ସେ ସମାଜର ନିୟମରୂପେ ଅନ୍ଧଭାବେ ପାଳନ କରିଆସିଛି, ବିଶେଷରେ ନାରୀସମାଜ ତାକୁ ଶୈଧନ କରି ରଖିଛି । ଆଜି ମଧ୍ୟ, ଆଜିର ପୁରୁଷମାନଙ୍କଠାରୁ ଆଜିର ନାରୀମାନଙ୍କଠାରେ ବେଶି ଧର୍ମାନ୍ଧତା, ବେଶି କୁସଂସ୍କାର ଦେଖା-ଯାଏ । । ତେଣୁ ନାରୀ ଉପରେ ନାରୀ ହିଁ ଅଧିକ ଅନ୍ୟାୟ କରେ ।

ଦାର୍ଶନିକ ରାଜୁବାବୁ ବସି ବସି ଭାବନ୍ତି । ସିନ୍ଧୁତାକୁ ନିଜ ପରି ନିଷ୍ଠାପରାୟଣା କରି ଗଢ଼ିବାକୁ ମା ତାଙ୍କର ଯେ କେତେ କଷ୍ଟ ସ୍ୱୀକାର କରୁଛନ୍ତି, ସେ ବିଷୟରେ ପଦେ ଅଧେ କେତେବେଳେ କମିତ କାନରେ ପଡ଼େ ।

ପୂଜା ଆସିଛି, ଗୋଟିଏ ଦୁଃସ୍ୱପ୍ନ ପରି ପୂଜା ଆସୁଛି ଏଥର । କଚେରୀ ବନ୍ଦ କାଲିଠାରୁ । କିନ୍ତୁ ଏ ଛୁଟି ଯେପରି ରାଜୁବାବୁଙ୍କ ମାନସିକ ଯନ୍ତ୍ରଣାକୁ ଦ୍ୱିଗୁଣିତ କରି-ପକାଇଛି । କାମର ଗୃହ ଭିତରେ ଦୁଃଖ ଭୁଲି ରହିବାଟା ସହଜ; କିନ୍ତୁ କାମ ନ କରି ଏହିପରି ବସିରହି ଦୁର୍ଭାଗ୍ୟର ପ୍ରୀଷଣତାକୁ ଉପଲବ୍‌ଧି କରିବା ବଡ଼ କଷ୍ଟକର ହୋଇ-ପଡ଼ୁଛି ।

ଆଶ୍ୱିନର ଆଉ ଗୋଟିଏ ସକାଳ । ଭିତର ପଟ ବାରଣ୍ଡା ଉପରେ ଆରାମଚୌକିଟା ଉପରେ ନିର୍ଜୀବ ପରି ଶୋଇରହିଥିଲେ ରାଜୁବାବୁ । ଘର ଭିତରେ ମହାଷ୍ଟମୀର ପୂଜାପାଇଁ ଆୟୋଜନ କରୁଥିଲେ ସୁଜାତା ଆଖି ଲୁହରେ ଭାସୁ ଭାସୁ । ଏ ପୂଜା ସଧବାମାନଙ୍କର ।

ସିନ୍ଧୁତା ଆଜି ପୂଜା ବାଡ଼ିଆଆନ୍ତା ତାଙ୍କ ସହିତ ମିଶି... ନୀରବରେ କାନ୍ଦୁଥିଲେ ସେ ।

ବାଁପଟର ବଡ଼ କୋଠରୀଟିରେ ବସି ଦେବୀଙ୍କ ପାଇଁ ଫୁଲମାଳ ଗୁନ୍ଥୁଥିଲା ସିନ୍ଧୁତା । ଖୋଲା ଝରକାଟା ବାଟେ ତାକୁ ସ୍ପଷ୍ଟ ଦେଖିପାରୁଛନ୍ତି ରାଜୁବାବୁ । ମୁହଁଟିକୁ ତଳକୁ ପୋତି ଫୁଲ ଗୁନ୍ଥି ଚାଲିଛି ସେ ଏକାଗ୍ରଚିତ୍ତରେ । ତାର ସେ ଧଳା ଶାଢ଼ୀ, ଧଳା ବ୍ଲାଉଜ୍ ଓ

ଧଳା ସିନ୍ଥା ଦେଖିଲାକ୍ଷଣି ପିତୃହୃଦୟ ତାଙ୍କର ହାହାକାର କରିଉଠିଲା । ହଠାତ୍ ସବ୍ୟସାଚୀ ଦୌଡ଼ି ଦୌଡ଼ି ପଶିଆସିଲା ଘର ଭିତରକୁ । ସକାଳୁ ସେ ଚାଲିଯାଇଥିଲା ଇଞ୍ଜିନିୟର ବାବୁଙ୍କ ଘର ପିଲାଙ୍କ ସହିତ ଖେଳିବାକୁ ।

"ମ, ମା, ବୃନ୍ଦାବନ କେଡ଼େ ବଡ଼ ମାଛଟେ ଆଣିଛି—ଏ...ଡ଼େ ବଡ଼ ମାଛଟେ ।" ବିସ୍ମୟ ଓ ଆନନ୍ଦରେ ତାର ଶିଶୁମୁହଁଟି ଉଜ୍ଜ୍ୱଳ ହୋଇଯାଇଥିଲା । ପରକ୍ଷଣରେ ଡେଇଁପଡ଼ି ପିଠିପଟୁ କୁଣ୍ଢାଇଧରିଲା ସିନ୍ଧୁତାକୁ । ନାନୀର ବେକକୁ କୁଣ୍ଢାଇଧରି ନିର୍ବୋଧ ଶିଶୁ ଆନନ୍ଦରେ ଚିତ୍କାର କରି କହିଲା, "ଆଜି ମାଛ ମୁଣ୍ଡଟା ଦିଆଯିବ ନିଶ୍ଚେ ନାନୀକୁ, ନାନୀ ମାଛ ମୁଣ୍ଡ ବଡ଼ ଭଲପାଏ..."

'ସ...ଚୀ' ! ଚିତ୍କାର କରିଉଠିଲେ ରାଜୁବାବୁ । ବୁଢ଼ୀମା ଓ ସୁଜାତା ହତବୁଦ୍ଧି ଭଳି ଚାହିଁରହିଲେ । ବାପାଙ୍କ ବେଦନାହତ ପାଂଶୁଳ ମୁହଁଟିକୁ ଚାହିଁ ସିନ୍ଧୁତାର ଇଚ୍ଛାହେଲା ନିଜକୁ ମାଟିରେ ମିଶାଇଦେବାକୁ ।

ଘରକୁ କୌଣସି ପ୍ରକାର ଆମିଷ ନ ଆସିବାର ନିଷେଧାଜ୍ଞା ଜାରିକରିଥିଲେ ରାଜୁବାବୁ । ସପ୍ରଶ୍ନ ଦୃଷ୍ଟିରେ ସୁଜାତାଙ୍କୁ ଚାହିଁ କଠିନ ସ୍ୱରରେ ପଚାରିଲେ, "ବୃନ୍ଦାବନକୁ କିଏ କହିଥିଲା ମାଛ ଆଣିବା ପାଇଁ ?"

ମା' ତାଙ୍କର ଉତ୍ତର ଦେଲେ, "ମୁଁ କହିଥିଲି । ଘରେ ଠାକୁରାଣୀ ବସିଛନ୍ତି, ଆମିଷ ଭୋଗ ହେବାର ବିଧି ଅଛି ଯେ, ମ ନିବାନ୍ନ କେମିତି କହ ?"

ରାଜୁବାବୁ କୌଣସି ଉତ୍ତର ଦେଲେ ନାହିଁ ସତ; କିନ୍ତୁ ତାଙ୍କ ଚାହାଣୀରେ ଏକ-ପ୍ରକାର ବିରକ୍ତି ଓ ଘୃଣାମିଶ୍ରିତ ଅଭିବ୍ୟକ୍ତି ଫୁଟିଉଠିଲା । ତାହା ଲକ୍ଷ୍ୟକରି ମା ପୁଣି କହିଲେ, "ବୋହୂଟାର ଆଜି ଅଷ୍ଟମୀ ଉପବାସ, ଠାକୁରାଣୀଙ୍କ ପ୍ରସାଦ ନ ପାଇବ କିମିତି ? ତା କାତ ସିନ୍ଦୂର ବଜ୍ର ହୋଇ ରହିଥାଉ, ମୁଁ ସଅଳ ଆଖି ବୁଜିଦିଏ....ରାଜୁରେ ! ତୋର କଲ୍ୟାଣ ପାଇଁ ମୁଁ ଛାତିକୁ ପଥର କରିଦେଇଛି..."—ହଠାତ୍ କୋହ ସମ୍ଭାଳି ନପାରି କାନ୍ଦିଉଠିଲେ ସେ ।

ଜନନୀଙ୍କର ସେ ଦାରୁଣ ଆଶଙ୍କାର ରୂପ ସ୍ପଷ୍ଟଭାବରେ ଦେଖିପାରିଲେ ରାଜୁବାବୁ । ବୁଝି-ପାରିଲେ ସବୁ । ତେବେବି କେ ଅସହ୍ୟ ମନେହେଲା, ଆଉ ବସି ନପାରି ହଠାତ୍ ଉଠିପଡ଼ି ବାହାରିଗଲେ ସେ ।

ରାଜୁବାବୁ ଖାଇବାକୁ ବସିଲେ ଯେତେବେଳେ, ସୁଜାତାଙ୍କ ମନା ନ ମାନି ମା ନିଜେ ପରଷିବାକୁ ଗଲେ । ମାଛ ତରକାରି, ମାଛ ଭଜା, ବେସର, ମହୁର ଆଦିଆଗୁଡ଼ିକୁ ସଜେଇଦେଇ ରଖିବାକୁ ଗଲାବେଳେ ବାଧାଦେଇ ଶାନ୍ତକଣ୍ଠରେ ରାଜୁବାବୁ କହିଲେ, "ମା' ଦେଖ, ତୁମ ବୋହୂ ସିନା ଆମିଷ ନ ଖାଇଲେ ମୋର ମରିବାର ସମ୍ଭାବନା ଅଛି: କିନ୍ତୁ ମୁଁ ନ ଖାଇଲେ ବୋହୂ ଯଦିବା ମରିଯାଏ, ତାହେଲେ ସେଥିରେ କିଛି ଅମଙ୍ଗଳ

ହୋଇଯିବନ । ମତେ ତମେ ଏଗୁଡ଼ାକ ଖାଇବାକୁ ବାଧ୍ୟ କରନ ।” ବଚନ ଭାବରେ ହସି ଉଠିଲେ ସେ । ମୁହଁଟି ତାଙ୍କର ବିକୃତ ହୋଇଗଲା । କନ୍ଦନର ରୂପାନ୍ତର ପରି ଅଦ୍ଭୁତ ଥିଲା ସେ ହସ । ପୁନର ସେ ହସ ଓ ସେ ମୁହଁକୁ ଦେଖି ଜନନୀ ସ୍ତମ୍ଭିତ ହୋଇଗଲେ ।

ମା’ଙ୍କର ସେ ବେଦନାହତ ମୁହଁଟି ପ୍ରତି ଥରେ ଦୃଷ୍ଟି ନିକ୍ଷେପକରି ରାଜୁବାବୁ ମୁହଁ ତଳକୁ କରିଦେଲେ—ଖାଇବାର ସମସ୍ତ ପ୍ରବୃତ୍ତି ଲୁପ୍ତ ହୋଇଯାଇଛି । ଭାତଗୁଡ଼ାକୁ ଘାଣ୍ଟୁ ଘାଣ୍ଟୁ ଯେପରି ଅତୀତକୁ ଚାଲିଗଲେ ସେ....

ଗ୍ରେଟ ସିନ୍ଧୁତାକୁ କଣ୍ଟା ବାଛି ଖୁଆଇଦେଉଛନ୍ତି ସେ । ମାଛ, ମାଂସ ଭାରି ପ୍ରିୟ ଥିଲା ସିନ୍ଧୁତାର । ସବୁଠାରୁ ବଡ଼ ଖଣ୍ଡଟି ସବୁବେଳେ ଦାବିକରିବ । ...ଗତବର୍ଷ....ଏଇ ମହାଷ୍ଟମୀ ଦିନ ତ, ଆଗରୁ କହିଦେଇ ସେ ଅଣାଇଥିଲେ ବଡ଼ ମାଛ । ମହେଶ ଓ ସେ ମିଶି ଖାଇ-ବସିଥିଲେ । ଯେତେ ଡାକିଲେ ବି ସିନ୍ଧୁତା ଆସି ବସି ନଥିଲା ପାଖରେ । ଜୋର୍ କରି ତାର ହାତ ଧରିଆଣି ବସାଇଥିଲେ ସେ ନିଜ ପାଖରେ । ଲାଜରେ ଲାଲ୍ ଦିଶୁଥିଲା ସିନ୍ଧୁତାର ଗୋରା ମୁହଁଟି । ତାର କପାଳ ଉପରର ରକ୍ତୋଜ୍ଜ୍ୱଳ ସିନ୍ଦୂର ବିନ୍ଦୁଟି ହଠାତ୍ ଗୋଟିଏ ନକ୍ଷତ୍ର ପରି ଜଳିଉଠିଲା ଯେପରି ସ୍ୱଚ୍ଛପଥରେ । ଦେହର ନୂଆ ସ୍ୱର୍ଣ୍ଣାଳଙ୍କାରଗୁଡ଼ିକ ଚକ୍ ଚକ୍ କରୁଥିଲା । ବାହାଘରର କେତେଟା ମାସ ପରେ ସେଥର ପୂଜାଛୁଟି ହୋଇଥିଲା । ମୁଣ୍ଡରେ ଅଳ୍ପ ଓଢ଼ଣା ଦେଇ ମଥା ପୋତି ବସିଥିଲା ସେ—ମହେଶ ସାମନାରେ ବାପାଙ୍କ ସହିତ ମିଶି ଖାଇବାକୁ ଭୀଷଣ ଲଜ୍ଜା ଅନୁଭବ କରୁଥିଲା ।

“ଦେଖିଲ ମହେଶ, ସିନ୍ଧୁତା ଭାବୁଛି ଏ କେତେ ଦିନରେ ସେ ଏକାବେଳକେ ବଡ଼ଟିଏ ହୋଇଗଲାଣି । ଆଗେ ମୋ ସଙ୍ଗେ ମିଶି ଖାଉନଥିଲେ ତାର ତଳୁନଥିଲା । ଆଉ ଏଇଲେ କେମିତି ଲାଜ କରୁଛି......”

ମହେଶ—ସେ ବି ନୀରବରେ ମୁଣ୍ଡ ପୋତି ଖାଉଥିଲା । ତାକୁ ଦେଖିଲେ ଜଣା-ପଡ଼ୁଥିଲା, ସେ ବି ଯଥେଷ୍ଟ ଲଜ୍ଜା ଅନୁଭବ କରୁଛି । ତାର ସେ ଅବସ୍ଥା ଦେଖି ରାଜୁବାବୁ ନିଜକୁ ସମ୍ଭାଳି ପାରୁନଥିଲେ, ହସିଉଠିଥିଲେ ବହୁତ ଜୋର୍‌ରେ, ଆଉ କହୁଥିଲେ, “ବାଃ ରେ ! ଦେଖୁଛ ତମେ ତ କଣ ସିନ୍ଧୁତାଠାରୁ ଆହୁରି ବେଶି ଲାଜକୁଳା...”

ଭୀଷଣ ଭାବରେ ଅପ୍ରସ୍ତୁତ ହୋଇଥିଲା ମହେଶ । ଲାଜରେ ଲାଲ ହୋଇଯାଇଥିଲା । ଏ ସମୟରେ ମା’ ଓ ସୁଜାତା ତାଙ୍କର ଏ ପ୍ରଗଲ୍‌ଭତା ପାଇଁ ଶାସନକରି କଣ ଗୋଟାଏ କହୁଥିଲେ । ପରମତୃପ୍ତିରେ ରାଜୁବାବୁ ଥରକୁଥର ଚାହିଁ ଦେଖୁଥିଲେ ମହେଶକୁ ଓ ସିନ୍ଧୁତାକୁ—ପରମ ସୁନ୍ଦର ଯୁଗଳ ପ୍ରତିମୂର୍ତ୍ତି ପରି ଥିଲେ ସେ ଦୁହେଁ । ଶିଳ୍ପୀର ରମଣୀୟ କଳ୍ପନାପ୍ରସୂତ ଦୁଇଟି ଚନ୍ଦ୍ରପ୍ରତିମା ପରି ଦିଶୁଥିଲେ ।

...ମହେଶର ସୁଦୃଶ୍ୟ ମୁହଁଟି ଭାସିଉଠିଲା ଚକ୍ଷୁ ସମ୍ମୁଖରେ । ବଡ଼ ବଡ଼ ଦୁଇ ଟୋପା ଲୁହ ଆଖିରୁ ଝରି ଭାତଥାଳି ଉପରେ ପଡ଼ିଲା ।

ରାଜୁବାବୁଙ୍କ ଧ୍ୟାନ ଭାଙ୍ଗିଲା—ମା' ଚାଲିଯାଇଛନ୍ତି । ଲୁଅଁକାନରେ ଆଖିଦୁଇଟିକୁ ପୋଛି ଥରେ ନଜର ଅଭୁକ୍ତ ଅନ୍ନବ୍ୟଞ୍ଜନ ଆଡ଼କୁ ଚାହିଁ ରାଜୁବାବୁ ଉଠିପଡ଼ିଲେ । ହାତମୁହଁ ଧୋଇସାରି ନିଜ କୋଠରୀଟିକୁ ଯାଇ ଶୋଇପଡ଼ିବାକୁ ଚେଷ୍ଟାକଲେ ସେ । କିନ୍ତୁ ଆଖି ବୁଜିଲାକ୍ଷଣି ନିଦ ହେବା ଦୂରେ ଥାଉ, ଅତୀତର ସହସ୍ର ପ୍ରକାର ଛବି ପୁଣି ଫୁଟିଉଠିଲା ଆଖିଆଗରେ ।

"ମା' ମ, ଏଥର ପୂଜାପାଇଁ ନୂଆଲୁଗା ହବନି ଆମର ?" ସଚୀର ବାଳକସୁଲଭ କଣ୍ଠସ୍ୱର ଭାସିଆସିଲା ।

"ଆଃ, ଧୀରେ କହ, ବାପାଙ୍କ ନିଦ ଭାଙ୍ଗିଯିବ...ସେ ଘରେ ଶୋଇଛନ୍ତି ପରା..." ସୁଜାତା ମୃଦୁକଣ୍ଠରେ କହିଲେ ।

"ମିନୁ ଚନୁର କଣାହେଲଣି, ଆଜି ଦେଖିଆସିଲି···"ଅପେକ୍ଷାକୃତ ଧୀରକଣ୍ଠରେ ଡର ଡର କହିଲା ସଚୀ, "ନାନୀପାଇଁ କଣ ଲୁଗା କଣାଯିବନି ? ସେ···ଧଳା···ଶାଢ଼ୀ ନାନୀକୁ ଜମା ଭଲ ମାନୁନି···"

"ସଚୀ...ତୁ ଖେଳିବୁ ଗଲୁ..."

"ନାନୀ ପାଇଁ କଣ୍ଟେ ରଙ୍ଗୀନ ଶାଢି..."

"ଓଃ ! ଗଲୁ ତୁ, ବାପା ନିଦରୁ ଉଠିପଡ଼ିବେ..."

"ମା', ମିନୁର ବଡ଼ନାନୀଙ୍କ ପାଇଁ ତାଙ୍କ ବାପା ଆଜି ଗୋଟେ ବଢ଼ିଆ ଶାଢ଼ି ଆଣିଛନ୍ତି । ତମେ ବାପାଙ୍କୁ କହ, ଠିକ୍ ସେମିତି ଶାଢ଼ିଟେ ନାନୀ ପାଇଁ ଆଣିବେ...."

"ତୁ ତୁନିହେବୁ କି ନାହିଁ କହିଲୁ ସଚୀ"—ଆର୍ତ୍ତକଣ୍ଠରେ କହିଲେ ସୁଜାତା । "ଯା କହୁଛୁ, ଆମର ଏଥର କିଛି ଲୁଗାପଟା କଣାଯିବନି"—ଶେଷଆଡ଼କୁ ଯେପରି କାନ୍ଦିପକାଇଲେ ସେ ।

ପୁଣି ଘରଆଡ଼ ନିଃଶବ୍ଦ ହେଲା ।

ବିଛଣାରେ ପଡ଼ି ରାଜୁବାବୁ ଛଟପଟ ହେବାକୁ ଲାଗିଲେ···ଗତ ପୂଜାରେ ମହେଶକୁ ସାଙ୍ଗରେ ନେଇ ସମସ୍ତଙ୍କ ପାଇଁ ଲୁଗାପଟା କିଣିଆଣିଥିଲେ ସେ ।

ଓଃ ! ସ୍ମୃତି କଅଣ ସମ୍ବଳ କରି ବଞ୍ଚି ରହିବ ? ତା ଆଗରେ ଯେ ସୁଦୀର୍ଘ ଭବିଷ୍ୟତ ପଡ଼ିରହିଛି । କାଲେ ଯଦି ତାଙ୍କ ନିଜର କିଛି ହୋଇଯାଏ, ଯଦି ସେ ମହେଶ ଭଳି ହଠାତ୍ ମରିଯାଆନ୍ତି, ତା'ହେଲେ ଏ ପରିବାରଟିର ଦଶା କଣ ହେବ ? ସଚୀଟା ଯେ ନିହାତି ପିଲା !

ଭସ୍ମରେ ଭ୍ରମାଚ୍ଛିତ ହୋଇଗଲେ ସେ । ଯଥେଷ୍ଟ ଦୁର୍ବଳ ହୋଇପଡ଼ିଲେଣି ସେ । ମହେଶ ତ ାର ମନୋବଳକୁ ଚୁର୍ ମାର୍ କରିଦେଇ ଚାଲିଯାଇଛି ।

ଅସ୍ୱ ମନେହେବାରୁ ଚେୟାରୁ ଉଠିପଡି ବାହାର ବାରଣ୍ଡାକୁ ଚାଲିଗଲେ ସେ । ଆଶ୍ୱିନର ମନୋରମ ଅପରାହ୍ନ ଶେଷ ହୋଇଆସୁଛି । ବଗିଚାରେ ଫୁଲଗୁଡ଼ିକ ଯେପରି ତରଙ୍ଗ ତୋଳି ଖେଳୁଛନ୍ତି । ସେହି ରକ୍ତଗୋଲାପ ଗଛଟିରେ ଆଜି ଏକାସଙ୍ଗେ ଚାରିଟା ଫୁଲ ଫୁଟିଛି । ହଠାତ୍ ସେ ଅନୁଭବ କଲେ ଯେପରି ଫୁଲଗୁଡ଼ାକରେ କୌଣସି ସୌନ୍ଦର୍ଯ୍ୟ ନାହିଁ, ମେଞ୍ଚାଏ ମେଞ୍ଚାଏ ତାଜାରକ୍ତ ଭଳି ଦିଶୁଛି ସେଗୁଡ଼ାକ !

"ବାପା, ମୁଁ ଆରଥର ପୂଜାଛୁଟିରେ ଆସିଲାବେଳକୁ ଏ ଗଛଟାରେ ଫୁଲ ଫୁଟି ଯାଇଥିବ—ନୁହେଁ ?" ସ୍ମିତା କହିଯାଇଥିଲା ।

ହଠାତ୍ ଯନ୍ତ୍ରଣା ସହିତ ରାଜୁବାବୁ ଅନୁଭବ କଲେ—ଏହିସବୁ ଫୁଲଗୁଡ଼ାକ ଦେଖିଲେ ତ ସ୍ମିତାକୁ ଭାରି କଷ୍ଟ ହେଉଥିବ । ତା ହୃଦୟରେ ଦୁଃଖ ଆହୁରି ଦ୍ୱିଗୁଣ ହୋଇ ବଢ଼ି-ଯାଉଥିବ । ଦୁଃଖକୁ କ୍ରମେ ସେ ଭୁଲିବ କିପରି—ତା ଚାରିଆଡ଼େ ତ ଏସବୁ ରହି ଅତୀତକୁ ବାରମ୍ବାର ଚେତାଇଦେଉଥିବେ !

ମୁହୂର୍ତ୍ତିକ ପାଇଁ କଣ ଭାବିଲେ ରାଜୁବାବୁ, ତାପରେ ଡାକପକାଇଲେ, 'ସଦା...ସଦା...'

ଚାକରଟି ସେ ଡାକ ଶୁଣି ଆସି ପହଞ୍ଚିଲା । ରାଜୁବାବୁ ଆଦେଶ ଦେଇ କହିଲେ, "ବଗିଚାର ସବୁଗୁଡ଼ାକ ଗଛ ଉପୁଡ଼ାଇଦେବୁ ଟି...."

ସଦା ନିଜ କାନକୁ ବିଶ୍ୱାସ କରିପାରିଲା ନାହିଁ । ପଚାରିଲା, "ଆଜ୍ଞା, କଣ କହିଲେ ? ଘାସଗଛଗୁଡ଼ାକ..."

"ନା ରେ, ଫୁଲଗଛଗୁଡ଼ାକ ସବୁ ଉପୁଡାଇ ଫୋପାଡ଼ି ଦେ" । ନିରୁପାୟ ସଦା ବାବୁଙ୍କର ମୁହଁକୁ ଚାହିଁ କଣ ଭାବିଲା, ତାପରେ କହିଲା, "ଯାଉଚି ଆଜ୍ଞା, ଖଣତିଟା ନେଇ ଆସିବି..."

"ଯା ଚଞ୍ଚଳ କର ! "

ସଦାଠୁ ସେ ଖବର ଶୁଣି ସୁଜାତା ବାଧାଦେବାକୁ ଜମା ସାହସ କଲେନାହିଁ । ମା ଆସି କହିଲେ, "ଅକାରଣରେ ଫୁଲଗଛଗୁଡାକ କଷ୍ଟକରି କଣ ଲାଭ ହେବ...?"

"ମା', ସ୍ମିତାର ଆଉ ଫୁଲ ଦ ରକାର ହେବନି । ମୋର ବା କଣ ହେବ ? ଠାକୁରଙ୍କ ପାଇଁ ଦରକାର ହେଲେ ଭିତର ପାରେ କେତୋଟା ଗଛ ତ ଅଛି !" ନି ହ କଣ୍ଠରେ କହିଲେ ରାଜୁବାବୁ ।

କିନ୍ତୁ ମାଆଙ୍କଠାରୁ ଆରମ୍ଭକରି ଘରର ସମସ୍ତେ ଜାଣିଥିଲେ ଫୁଲଗଛଗୁଡ଼ିକ ରାଜୁବାବୁଙ୍କର କେତେ ପ୍ରିୟ ବସ୍ତୁ । ଦିନଯାକର ଅଫିସ କାମ ପରେ କ୍ଳାନ୍ତଶ୍ରାନ୍ତ ହୋଇ

ଫେରନ୍ତାପରେ ବାରଣ୍ଡାଟିରେ ବସି ନିଜର ହାତଗଢ଼ା ବଗିଚାଟି ଆଡ଼କୁ ଯେତେବେଳେ ସେ ଚାହୁଁଥିଲେ, ସେତେବେଳେ ପରମ ତୃପ୍ତିରେ ତାଙ୍କ ମନ ପୂରିଉଠୁଥିଲା । ନିମିଷକରେ ଯେପରି ସବୁ ଶ୍ରାନ୍ତି ଦୂରହୋଇଯାଉଥିଲା । ସକାଳେ ସନ୍ଧ୍ୟାରେ ଫୁଲର ସେ ଆମୋଦିତ ସୁଗନ୍ଧରେ ଘର ବାହାର ମହକ ଉଠୁଥିଲା । ସେହି ଲୋଭନୀୟ ଶୋଭାରାଶିକୁ ବାଟରେ ଚାଲି ଯାଉଥିବା ବାଟୋଇ ମଧ୍ୟ ସପ୍ରଶଂସ ଦୃଷ୍ଟିରେ ଚାହିଁରହୁଥିଲେ । ନାନାବର୍ଣ୍ଣର ଫୁଲର ସେହି ଅପୂର୍ବ ସମ୍ଭାରକୁ ଦେଖିଲେ ମନେହେଉଥିଲା ନବଜାତ ଶିଶୁର ସୁମଧୁର ସ୍ୱର୍ଗୀୟ ପ୍ରାଥମିକ ହସପରି ପବିତ୍ର ଓ ନୈସର୍ଗିକ ।

ନୀରବରେ ଦୀର୍ଘନିଃଶ୍ୱାସଟିଏ ପକାଇ ମାଆ ଫେରିଗଲେ । ଖଣ୍ଡିଏଧରି ଠିଆହୋଇଥିବା ସଦାକୁ ପୁଣି ଆଦେଶ ଦେଲେ ରାଜୁବାବୁ; କିନ୍ତୁ ଠିକ୍ ସେତିକବେଳେ ସେ ଶୁଣିଲେ, 'ବା....ପା !'

ସ୍ମିତାର ଅତଳ କଣ୍ଠସ୍ୱର ଶୁଣି ଚମକିପଡ଼ିଲେ ସେ । ସ୍ମିତା ଯେ କେତେବେଳେ ଆସିଛି, ସେ କଥା ଆଦୌ ସେ ଜାଣିପାରି ନାହାନ୍ତି । ମୁହଁ ଟେକି ଚାହିଁଲେ ସେ—ନାହାଁ ବିବର୍ଣ୍ଣ ଦିଶୁଛି ସ୍ମିତାର ମୁହଁଟା । ସ୍କୁଲ ଭିତରେ ସେ ଯେ କେତେ ଶୁଖିଗଲାଣି, ହଠାତ୍ ଆଜି ଯିମିତି ଖିଆଲ ହେଲା । ତାର ସୁଗୋଲ ସୁନ୍ଦର ମୁହଁଟି ଧାରୁଆ ଦିଶୁଛି । ଆଖି ଦୁଇଟି ଲୁହରେ ଛଳ ଛଳ ହେଉଛି । ସେହି ନିରାଭରଣ, ରୁକ୍ଷ, ଶୁଭ୍ର ମୂର୍ତ୍ତିଟିକୁ ଦେଖିଲାକ୍ଷଣି ରାଜୁବାବୁଙ୍କ ଶୋକ ଯେପରି ଉଚ୍ଛୁଳି ଉଠିଲା । ଅତଳକଣ୍ଠରେ ସେ ପଚାରିଲେ, "କଣ ମା ?"

ଏତେଦିନ ପରେ ବାପାଙ୍କ ଆଗରେ ଆଜି ଆସି ଠିଆହୋଇଛି ସ୍ମିତା । ଅତିକଷ୍ଟରେ ଅଟକି ଅଟକି ସେ କହିଲା, "ବାପା, ଗଛ ଉପାଡ଼ିବାକୁ ସଦାକୁ ମନାକରିଦିଅ—"

"ନାହିଁ ମା, ଫୁଲ ବଦଳରେ ପରିବା ପତ୍ର ଲଗାଇବା । ମାଟି ଭଲ, ବେଶ୍ ଫଳିବ..."

ଛଳ ଛଳ ଆଖିରେ ସ୍ମିତା କହିଲା, "ଗଛଗୁଡ଼ାକ ନଷ୍ଟ କରିଦେଲେ ମୋ ମନରେ ବଡ଼ କଷ୍ଟ ହେବ ବାପା.... ।" ଦୁଇଟି ବଡ଼ ବଡ଼ ଅଶ୍ରୁବିନ୍ଦୁ ଛଳ ଛଳ ହେଉଥିଲା ତାର ସେ ଆଖି ଦୁଇଟିରେ । ପରମୁହୂର୍ତ୍ତରେ ବାଧା ନମାନି ଝରିପଡ଼ିଲା ଗାଲ ଉପରେ । ମୁହଁ ତଳକୁ କରିଦେଲା ସେ ।

ବିସ୍ମୟରେ ହତବାକ୍ ହୋଇଗଲେ ରାଜୁବାବୁ । ହଠାତ୍ ଏ ଯେପରି ଏକ ସମ୍ପୂର୍ଣ୍ଣ ନୂତନ ପରିଚୟ ସେ ପାଇଲେ ସ୍ମିତାର । ଫୁଲଗୁଡ଼ାକ ଦୁଃଖ ବଦଳରେ ଆନନ୍ଦ ଦେଉଛନ୍ତି ସ୍ମିତାର ମନରେ । ଆଶ୍ଚର୍ଯ୍ୟ...ପରମ ଆଶ୍ଚର୍ଯ୍ୟ !

ନିଃଶବ୍ଦରେ ଫେରିଗଲା ସ୍ମିତା । ଅନ୍ୟମନସ୍କ ଭାବରେ ସଦାକୁ ଭିତରକୁ ଫେରଯିବାକୁ କହି ସ୍ତବ୍ଧ ଭାବରେ ବସିରହିଲେ ରାଜୁବାବୁ ।

ଦୁଶ୍ଚିନ୍ତା ମନୁଷ୍ୟକୁ ତଳେ ତଳେ ହତ୍ୟାକରେ । ଗ୍ରେଟ ପରିବାରଟିରୁ ସମସ୍ତ ସୁଖ ଓ ସମସ୍ତ ଆନନ୍ଦ ଯେପରି ଚିରଦିନ ଲାଗି ଦୂର ହୋଇଯାଇଛି । କାହାର ମୁହଁରେ ହସ ନାହିଁ । ଯେପରି ଟିକିଏ ଆନନ୍ଦ କରିବାକୁ ଅଧିକାର ବି ନାହିଁ କାହାର । ଗୋଟିଏ ଗୋଟିଏ ଭଲଦିନ ଅଶାନ୍ତିର ଝଡ ଉଠାଉଛି ସମସ୍ତଙ୍କ ମନରେ, ଜଗାଉଛି ହା ହୁତାଶ, ବୁହାଇଦେଉଛି ଅସରନ୍ତି ଶୋକର ସ୍ରୋତ । ଏହି ପରିସ୍ଥିତିରେ ମନୁଷ୍ୟର ଜୀବନୀଶକ୍ତି କ୍ଷୟ ହୋଇଚାଲିଛି ଧୀରେ ଧୀରେ । ପୂଜା ପରେ କୁମାରପୂର୍ଣ୍ଣିମୀ, ଦୀପାବଳୀ, କାର୍ତ୍ତିକ ପୂର୍ଣ୍ଣିମୀ—ପ୍ରଥମାଷ୍ଟମୀ, ଏହିପରି ଗୋଟିକ ପରେ ଗୋଟିଏ ମହୋତ୍ସବ ଆସୁଛି....ପୁଣି ଯାଉଛି, ମନେ-ପକାଇଦେଉଛି ସେହି ହଜିଲା ଅତୀତର ଅନେକ ସୁଖ ସ୍ମୃତି । କିନ୍ତୁ ଲାଭ ନାହିଁ ଖାଲି ସନ୍ତୁଳି ହେବା ଛଡ଼ା । ଏହିପରି ଗ୍ରେଟ ଗ୍ରେଟ କେତେ ଘଟଣା ଅନ୍ତରର ସେ କ୍ଷତକୁ ଆହୁରି ଅଧିକ କ୍ଷତବିକ୍ଷତ କରିଚାଲିଛି ।

ସେଦିନ ଏକାଦଶୀ । ରାଜୁବାବୁ, ତାଙ୍କ ମା’ ଓ ସ୍ମିତା ତିନିଜଣଯାକର ନିର୍ଜଳା ଉପବାସ ସେଦିନ । ଏପରି ସୁକୁମାର ବୟସରେ ସେ ଦାରୁଣ ନିୟମ ପାଳିବାରେ କିହାତି କଷ୍ଟ ହେଉଥିଲା ସ୍ମିତାର । କାର୍ତ୍ତିକମାସଟା ଏବେ ଯାଇଛି ଓଳିଏ ହବିଷ୍ୟାନ୍ନ ସେବନ କରି, ତେଣୁ ମାର୍ଗଶିରର ଏ ଏକାଦଶୀଟା ତାକୁ ବାଧୁଥିଲା ବେଶି । କିନ୍ତୁ ସମସ୍ତ ଶୋଇବାକୁ ଚେଷ୍ଟାକରି ବିଫଳହୋଇ ଉଠିପଡ଼ି ସେ ବୁଣୁଥିଲା ସଚୀ ପାଇଁ ତିଆରି କରୁଥିବା ସ୍ୱେଟରଟା । ସଚୀ ଜିଦ୍ ଲଗାଇଛି ମା’ଙ୍କ ସଙ୍ଗେ ତାଙ୍କ ବାକ୍‌ସଟା ଖୋଲିବାକୁ । ସକାଳେ ସୁଜାତା ଟଙ୍କା ବାହାରକରିବା ପାଇଁ ବାକ୍‌ସ ଖୋଲିଥିଲାବେଳେ ସଚୀ ତା ଭିତରେ ନିଜର ନାଲି ପେନ୍‌ସିଲ୍‌ଟା ଗଳାଇଦେଇଛି, ପେନ୍‌ସିଲ୍‌ଟା ତାର ଏଇକ୍ଷଣି ଦରକାର । ସୁଜାତା ମହାଭାରତ ପଢ଼ୁଥିଲେ, ବିରକ୍ତ ହୋଇ ଉଠିପଡ଼ି ନିଜ ବାକ୍‌ସଟା ଖୋଲିଲେ ବାଧ୍ୟହୋଇ । ପ୍ରଥମେ ଉପରୁ ଉପରୁ ଖୋଜିଲେ, ପେନ୍‌ସିଲ୍‌ଟି ମିଳିଲା ନାହିଁ । ତେଣୁ ଲୁଗାପଟା ଓ ଅନ୍ୟାନ୍ୟ ଜିନିଷଗୁଡ଼ିକୁ ବାହାରକରି ଖୋଜିବାକୁପଡ଼ିଲା । ହାତରେ କିଛି ଜିନିଷ ଉଠାଇ ଧରିଛନ୍ତି, ହଠାତ୍ ଠନ୍ ଠନ୍ ଶବ୍ଦକରି କଣ ଯୋଡ଼ାଏ ତଳେ ଖସିପଡ଼ିଲା—ସୁନ୍ଦର ସୁନାର ବାଲି ଯୋଡ଼ିଏ । ଭିତରେ ଉଜ୍ଜ୍ୱଳ ଲାଲ୍ ବର୍ଣ୍ଣର ରେଶମୀ ଚଢ଼ା ହୋଇଛି, ତା ଉପରେ ସୁନାର ସୁନ୍ଦର ତାରକସି କାମ କରାଯାଇଛି କାଚ-ଚୁଡ଼ି ଗୁଡ଼ିକୁ ସୁରକ୍ଷିତ କରି ରଖିବା ପାଇଁ । ...ଯେତେଥର କାଚଚୁଡ଼ି ପିନ୍ଧୁଥିଲା ସ୍ମିତା, ଅତି ଚଞ୍ଚଳ ସେଗୁଡ଼ିକ ଭାଙ୍ଗି ପକାଉଥିଲା । କାଚ ଚୁଡ଼ି କିଛି ହାତରେ ବରାବର ରହି-ଥିବା ଦରକାର, ସଧବାର ଚିହ୍ନ—କାଚ ଆଉ ସିନ୍ଦୂର ! ଇଞ୍ଜିନିୟର ବାବୁଙ୍କ ସ୍ତ୍ରୀଙ୍କ ହାତରେ ଏହିପରି ଯୋଡ଼ାଏ ବାଲା ଦେଖି ସ୍ମିତା ଆଗ୍ରହ ପ୍ରକାଶ କରିଥିଲା । ଗତଥର

ଆସିଲାବେଳେ, ତେଣୁ ସୁଜାତା ଗଢ଼ାଇଦେଇଥିଲେ ତା ପାଇଁ ଏ ଦୁଇଟା, ଇଚ୍ଛା ଥିଲା ପୂଜାର ଶୁଭ ଅବସରରେ ନିଜ ହାତରେ ଝିଅ ହାତରେ ପିନ୍ଧାଇଦେବେ ।

ବାଲି ଦୁଇଟା ଭିତରୁ ଗୋଟାଏ ଗଡ଼ି ଗଡ଼ି ଯାଇ ପଡ଼ିଛି ସ୍ମିତାର ଅଧପାଖରେ, ଅନ୍ୟଟି ପଡ଼ିଛି ତାଙ୍କ ପାଦତଳେ । ସୁଜାତାଙ୍କ ମୁଣ୍ଡ ଭିତରେ ଚକ୍ର ପରି ଘୂରିଗଲା କଥାଟା— 'ସ୍ମିତା ହାତରେ କାଚଚୁଡ଼ି ସବୁଦିନପାଇଁ ସୁରକ୍ଷିତ ଅବସ୍ଥାରେ ରହିବ ବୋଲି ଏ ଦୁଇଟା ସେ ଗଢ଼ାଇଥିଲେ....'

କନିଷ୍ଟା ପାଖରେ ପଡ଼ିଲାକ୍ଷଣି ଆପେ ଆପେ ସ୍ମିତାର ହାତ ଚାଲିଯାଇଥିଲା କନିଷ୍ଟାକୁ ଉଠାଇନେବାକୁ । ହଠାତ୍ କନିଷ୍ଟା ଯେ କଣ ଉପଲବ୍ଧିକରି ସେ ଚମକି-ପଡ଼ିଲା । ହାତ ଅଟକିଗଲା ତାର । ଉପବାସକ୍ଳିଷ୍ଟ ମୁହଁଟିରୁ ସବୁ ରକ୍ତ ଯେପରି ନିଃଶେଷ ହୋଇଗଲା ହଠାତ୍, ଯନ୍ତ୍ରଚାଳିତ ପରି ଆପେ ଆପେ ତାର ଦୃଷ୍ଟି ଯାଇ ପଡ଼ିଲା ତାର ଶୂନ୍ୟ ମଣିବନ୍ଧ ଦୁଇଟି ଉପରେ । ଚୂଡ଼ି....ସିନ୍ଦୂର....ମହେଶ··· ସବୁ ଭାବନା ଏକାକାର ହୋଇଗଲା । ଗୋଟିଏ ଅସ୍ଫୁଟ ଆର୍ତ୍ତଚିତ୍କାର ସଙ୍ଗେ ତାର ଅଚେତନ ଦେହଟା ଢଳିପଡ଼ିଲା ସେଇଠି ।

ଚିତ୍କାର ଶୁଣି ଦଉଡ଼ିଆସିଲେ ସୁଜାତା ।

ବସି ବସି ଯେପରି ସ୍ୱପ୍ନ ଦେଖିଥିଲା ସେ—ଅତୀତର ଗୋଟିଏ ଛବି । ଗତ ଦୋଳ-ପୂର୍ଣ୍ଣିମା ଦିନ ନିମନ୍ତ୍ରିତହୋଇ ମହେଶ କାହାଘରକୁ ଯାଇଥିଲା ଖାଇବା ପାଇଁ । ଫେରି-ଆସିବାରେ ତାର ଡେରିହୋଇଗଲା ବୋଲି ଅଭିମାନ କରିଥିଲା ସ୍ମିତା ।

"ସ୍ମିତା, ତମ ପାଇଁ କଣ ଆଣିଛି କହିଲ ଦେଖି···"

"ମୋର କିଛି ଦରକାର ନାହିଁ ..." ମୁହଁ ଫେରାଇ ବସିରହିଲା ସେ ।

"ବାଃ—ରେ ! ମୋର ଦୋଷ କଣ କହିଲ....ସେମାନେ ତ ଖାଇବାକୁ ଦେଉ ଦେଉ ଡେରିକରିଦେଲେ । ମୁଁ ସେଥିପାଇଁ ମୂଳରୁ ଯିବାକୁ ମନାକରିଥିଲି, ତମେ ତ କହିଲ ମୋର ଯିବା ଉଚିତ, ନହେଲେ ମୁଁ ଆଦୌ ଯାଇ ନଥାନ୍ତି...ତମକୁ ଏକୁଟିଆ ଛାଡ଼ି କୁଆଡେ ଯିବାକୁ କଣ ମୋତେ ଭଲଲାଗେ ସ୍ମିତା ?"

ତାର କଥା ଶୁଣି ମୁହୂର୍ତ୍ତକ ଭିତରେ ସ୍ମିତାର ମନରୁ ସମସ୍ତ କ୍ଷୋଭ ଉଭେଇଗଲା କୁଆଡେ । "କଣ ଆଣିଛ ଦେଖେଁ", ଆଗ୍ରହରେ ପଚାରିଲା ସ୍ମିତା ।

"ତମେ ଆଗ ଅନୁମାନ କରି କହ..." କୌତୁକରେ ମହେଶର ମୁହଁଟି ଚକ୍ ଚକ୍ କରୁଥିଲା । ପକେଟ୍‌ରେ ହାତ ପୂରାଇଥିଲା ସେ ।

"କହିବ ?...କହିବ....?" ସ୍ମିତା ଅନୁମାନ କରିବାକୁ ଟିକିଏ ସମୟ ନେଲା । ଫୁଲର ବାସ୍ନା ଆସି ବାଜିଲା ତା ନାକରେ । ତତ୍‌କ୍ଷଣାତ୍ ହସିହସି କହିଲା, "ଫୁଲ ଆଣିଚ..."

ଆଶ୍ଚର୍ଯ୍ୟ ହୋଇ ମହେଶ କହିଲା, "କମିତି ଜାଣିଲ ଯେ ? ହେଉ ହେଲା, ଏବେ କହିଲ କି ଫୁଲ ?"

"ଚମ୍ପା ହୋଇଥିଲେ ଘର ମହକି ଉଠୁଥାନ୍ତା । ଚମ୍ପା ନୁହେଁ, ତମେ ଗୋଲାପ ଫୁଲ ଆଣିଚ ।"

"ଓହୋ ! ତମେ ବାସ୍ନାରୁ ଜାଣିଦେଲ ତାହେଲେ ? ମୁଁ ଇମିତି ବୋକାଟେ !" ହସି ହସି ପକେଟରୁ ଫୁଲ କାଢ଼ିଥିଲ ସେ । ଦୁଇଟି ବିଭିନ୍ନ ରଙ୍ଗର ବଡ଼ ବଡ଼ ଗୋଲାପ ଫୁଲ । ଫୁଲ ଦେଖି ଖୁସିହୋଇଗଲା ସ୍ମିତା । କହିଲା, "କି ସୁନ୍ଦର ଫୁଲ !"

"ଗୋଲାପ ଗଛର ବଣ ହୋଇଚ୍ଛି ତାଙ୍କ ଘରେ..."

"ତାହେଲେ ତାଙ୍କଠୁ କିଛି ଗୋଲାପ ଡାଲ ଆଣନ୍ତ କି ?"

"ରହ, ଆଗ ଫୁଲକୁଣ୍ଡ କେତେଟା କିଣିବା, ତାପରେ ଗଛ ନେଇଆସିବ ତାଙ୍କ ଘରୁ..." ଫୁଲତକ ସ୍ମିତାକୁ ଉପହାର ଦେଇ ପୁଣି ପକେଟ୍‌ରେ ହାତ ପୂରାଇଥିଲା ସେ, "ଦେଖିଲ—ଏ ହେଉଚ୍ଛି ଆଉ ଗୋଟିଏ ବଢ଼ିଆ ଜିନିଷ...ଦେଖ..."

ମୁହଁ ଟେକିଲ ଗୃହିଁଲ ସ୍ମିତା । ହଠାତ୍ ଅବିର ମୁଠାଏ ତାର ମୁହଁରେ ବୋଳିଦେଇ କୌତୁକରେ ହସିଉଠିଥିଲ ମହେଶ ।

ପୁଣି ରାଗି ଉଠିଥିଲ ସ୍ମିତା । କହିଥିଲ, "ଇସ୍, ଏଇକ୍ଷଣି ମୁହଁ ହାତ ଧୋଇ ଆସିଥିଲି,....ତମେ ଇମିତି ଲୋକ ! କାଲି ସିନା ହୋଲି, କାଲି ରଙ୍ଗ...."

କଥା ଛଡ଼ାଇନେଇ କହିଲ ମହେଶ, "କାଲି ଲୋକେ ଖେଳିବେ; କିନ୍ତୁ ଆଜି ହେଉଚ୍ଛି ରାଧାକୃଷ୍ଣଙ୍କର ହୋରିଖେଳ...ବହୁ ଅତୀତରେ ଏଇ ଦୋଳପୂର୍ଣ୍ଣିମୀ ଦିବସରେ ବ୍ରଜେଶ୍ୱର ଶ୍ରୀକୃଷ୍ଣ ତାଙ୍କ ଶ୍ରୀମତୀଙ୍କର ସୁନ୍ଦର ଅତିସୁନ୍ଦର ମୁହଁଟିରେ ଇମିତି ଅବିର ବୋଳି ଆହୁରି ସୁନ୍ଦର କରିଦେଇଥିଲେ ।"

ଅବିର ଝାଡୁ ଝାଡୁ ରାଗରେ ଗର ଗର ହୋଇ କହିଲ ସ୍ମିତା, "ତମେ ସେଇଠି ବସି ବୋଧେ ଦେଖୁଥିଲ... ?"

"ତମେ ବି ସେଦିନ ମୋ ପାଖରେ ଥିଲ ରାଣୀ ! ଶ୍ରୀକୃଷ୍ଣ ତାଙ୍କ ଶ୍ରୀମତୀଙ୍କ ମୁହଁରେ ଅବିର ବୋଳିଲବେଳେ ମୁଁ ମୋ ଶ୍ରୀମତୀଙ୍କ ଅତି ସୁନ୍ଦର ମୁହଁଟିରେ...." ଅବିରମଖା ହାତ ଦୁଇଟିରେ ସ୍ମିତାର ମୁହଁଟିକୁ ଟେକିଧରିଲ ମହେଶ ।

ନିର୍ମଳ ଆକାଶରେ ପୂର୍ଣ୍ଣିମୀର ଚନ୍ଦ୍ର ହସୁଥିଲେ । ଜ୍ୟୋତ୍ସ୍ନାପ୍ଲାବିତ ଧରଣୀର ସେହି ନନ୍ଦିତ ଅପରୂପ ରୂପକୁ ·ଦୁହେଁ ମୁଗ୍ଧହୋଇ ଗ୍ଧହିଁରହିଥିଲେ ଅନେକ କ୍ଷଣ ପର୍ଯ୍ୟନ୍ତ । ସେତେବେଳେ ବି ମହେଶର ହାତ ଭିତରେ ରହିଥିଲି ତାର ହାତଟି...ତାପରେ...

"ନାନି···ନାନି···" ସଚୀ ଡାକିଲି ଦୁଇଥର । କିନ୍ତୁ ନିଜର କଳ୍ପନାରେ ବିଭୋର ସ୍ମିତା ବର୍ତ୍ତମାନଠାରୁ ବହୁତ ଦୂରକୁ ଗ୍ଲଲିଯାଇଥିଲି । ପାଖକୁ ଆସି ଅପେକ୍ଷାକୃତ ଜୋର୍‌ରେ ଡାକିଲି ସଚୀ, "ନାନି ! ମା' ଡାକୁଛନ୍ତି ପଗ୍ଧ....ଗ୍ଲଲ୍ ଖାଇବୁ...."

ସ୍ୱପ୍ନୋତ୍ଥିତା ପରି ବିହ୍ୱଳ ଦୃଷ୍ଟିରେ ଗ୍ଧହିଁଲି ସ୍ମିତା ।

ସଚୀ ପୁଣି ପୁନରାବୃତ୍ତି କଲି, "ମା' ଡାକୁଛନ୍ତି...ଖାଇବୁନି ନାନି ?"

"ଏଁ.... !"

ଆଶ୍ଚର୍ଯ୍ୟାନ୍ୱିତ ହୋଇ ବାଳକ କହିଲି. "ଅନେକ ରାତି ହେଲାଣି ଯେ ।"

"ସଚୀ...ତୁ ମତେ ଡାକଦେଲୁ କାହିଁକି ?"

"ବାଃ ରେ ! ମା' କହିଲେ ଡାକଦେବାକୁ ।"

"ସେଇଥିପାଇଁ ତୁ ମତେ ଡାକଦେଲୁ ! ଖରି ଭୁଲ୍ କଲୁ..." ଅନ୍ୟମନସ୍କ ଭାବରେ କହିଲି ସେ । ମଧୁର ସ୍ୱପ୍ନରାଜ୍ୟ ଭିତରେ ବିଚରଣ କରୁ କରୁ ସେ ଯେପରି ସତକୁ ସତ ପାଇଥିଲି ସ୍ୱାମୀଙ୍କର ସୁଖପ୍ରଦ ସାନ୍ନିଧ୍ୟ, ନିଜ ଦେହରେ ଅନୁଭବ କରୁଥିଲି ମାଦକତା-ଭରା ସେ ଅମ୍ଳାନ ସ୍ପର୍ଶ ! ଏ ପର୍ଯ୍ୟନ୍ତ ସତେ ଯେପରି ମହେଶ ତା ହାତଟିକୁ ଧରିଥିଲା ଆଉ ତା ଗାଲ ଉପରେ ସେ ଅନୁଭବ କରୁଥିଲି ମହେଶର ଉଷ୍ଣନିଃଶ୍ୱାସ ।

ସେହି ସୁତୀବ୍ର ସୁଖକର ଅନୁଭୂତି ଭିତରୁ ହଠାତ୍ ନିଦାରୁଣ ବାସ୍ତବ ଜଗତକୁ ଫେରି-ଆସିବାକୁ ସମୟ ଲାଗିଲା ତାକୁ ।

"ସଚୀ ତୁ ଯା, ଆଉ ଟିକିଏ ପରେ ଯିବି ମୁଁ..."

'ମା ଭାତ ବାଢିଦେଲେଣି···'

'ତୁ ଯା ସଚୀ, ମୋ ସୁନା ଭାଇଟା···'

ତାର କଣ୍ଠସ୍ୱରର ଆର୍ତ୍ତିତା ଦେଖି ହତବୁଦ୍ଧି ହୋଇ ବାଳକ ସଚୀ ଧୀରେ ଧୀରେ ଫେରିଗଲି । ପରମୁହୂର୍ତ୍ତିରେ ବର୍ତ୍ତମାନର ସମସ୍ତ ରୂଢ଼ତା ଯେପରି ଏକାସଙ୍ଗେ ଅନୁଭବ କରିପାରିଲା ସ୍ମିତା··· କାହିଁ ମହେଶ ? କାହିଁ ସେ ଆନନ୍ଦଭରା ଜୀବନ ? ସେହି ସୁନେଲି ଅତୀତ ଆଉ ମାଦକତାଭରା ରହସ୍ୟମୟ ରାତି ? ସ୍ୱାମୀଙ୍କର ସେହି ମନୋନ୍ମାଦକାରୀ ମଧୁର ସ୍ପର୍ଶ, ସେହି ନିବିଡ ସାନ୍ନିଧ୍ୟ ! କୁହେଳିକା ପରି ମିଳାଇଯାଇଛୁ । ତାର ସେହି ଅତି ପ୍ରିୟ ଗ୍ରେଟ; କିନ୍ତୁ ସୁନ୍ଦର ସୁସଜ୍ଜିତ ଶୟନକକ୍ଷଟିରେ ଏପର୍ଯ୍ୟନ୍ତ ସେ ଯେପରି ରହିଥିଲା ! ହତଭାଗିନୀ ସ୍ମିତା ବିଶ୍ୱାସ କରିବାକୁ ଗ୍ଧହିଁଲା—ସେହି ସ୍ୱପ୍ନମୟ ଅତୀତକୁ । ବର୍ତ୍ତମାନର

ବାସ୍ତବତା ଯେପରି ଗୋଟିଏ ଦୁଃସ୍ୱପ୍ନ । ଆପେ ଆପେ ହାତଟି ତାର ଚାଲିଗଲା ତା ନିଜ ମୁହଁପାଖକୁ । ମୁହଁ ଉପରେ ହାତଟିକୁ ବୁଲାଇଆଣି ସତେ ଯେପରି ସେ ଜାଣିବାକୁ ଚାହିଁଲା—ଅବାର ବୋଲା ହୋଇଛି କି ନାହିଁ । ତାର ଅତି ନିକଟରେ ଯେପରି ମହେଶ ଠିଆହୋଇଛି....ଫେରି ଚାହିଁଲାକ୍ଷଣି କୁଆଡେ ଉଭେଇଯିବ ସେ ! ସ୍ମିତା କଦାପି ଫେରି ଚାହିଁବନି, ମହେଶ ସେହିପରି ଠିଆହୋଇଥାଉ, ହେଉପଛକେ ସେ ଅଶରୀରୀ ! ଆତ୍ମାର ଆହ୍ୱାନ ପରି ଆତ୍ମା ଏଡ଼ିଦେଇପାରେନି, ତାହେଲେ ତା ଆତ୍ମାର ଏ ଏକାଗ୍ର ଆହ୍ୱାନ ଶୁଣି ସ୍ୱାମୀଙ୍କ ଅଶରୀରୀଆତ୍ମା ଆସିବନାହିଁ କାହିଁକି ? ତାଙ୍କର ସାକ୍ଷାତ ପାଇବା ପାଇଁ ତା ଦେହର ପ୍ରତ୍ୟେକ ଅଣୁ ଯେପରି ଆକୁଳ ଚିତ୍କାର କରୁଛି । ଆତ୍ମସୁଖର ସେହି ଉତ୍ତେଜନାପୂର୍ଣ୍ଣ ମୋହ ସ୍ମିତାକୁ ପାଗଳ କରିଦେଲା ଯେପରି...ସେ ଭାବିଲା ହୁଏତ ଏଇ ମୂହୂର୍ତ୍ତିରେ ମହେଶ ଆସି ଠିଆହୋଇପଡ଼ିବ ତା ଆଗରେ, ହାତଟିକୁ ଧରି ସ୍ନେହରେ ପୋଛିଦେବ ତା ଆଖିର ଲୁହ । ଏପରି ଅଧୀର ହେଉଥିବାପାଇଁ ତାକୁ ମୃଦୁ ତିରସ୍କାର କରିବ ଆଉଜାଇନେବ ନିଜ ଛାତି ଉପରକୁ ।

ପୁଲକରେ ରୋମାଞ୍ଚିତ ହୋଇଗଲା ସ୍ମିତାର ଦେହ । ଅସହ୍ୟ ଉତ୍ତେଜନାରେ, ଗୋଟାଏ ଅସମ୍ଭାବନାର ସମ୍ଭାବନା ଆଶାରେ ମୁଣ୍ଡ ତାର ଝିମ୍ ଝିମ୍ ହୋଇଯାଉଥିଲା । ଉଦ୍‌ଗ୍ରୀବ ଅନ୍ତରରେ ସେ ପ୍ରତୀକ୍ଷା କରିବାକୁ ଲାଗିଲା ପ୍ରତିଟି ମୂହୂର୍ତ୍ତି ।

"ସ୍ମିତା, ବାହାରଟାରେ ବସିଛୁ, ଥଣ୍ଡା ଲାଗିଯିବ ମା', ଭାତ ଶୁଖିଯିବ...ବଡ଼ା ହୋଇଗଲାଣି ପରା..."

ସ୍ମିତାର ସୁନ୍ଦର ସୁନିର୍ମିତ ସ୍ୱପ୍ନର କାଚଘର ଉପରେ କିଏ ଯେପରି ବିରାଟ ପଥର ଖଣ୍ଡେଟାଏ ଗଡ଼ାଇଦେଲା । ନିମିଷକରେ ଚୂନା ଚୂନା ହୋଇଗଲା ଘରଟି ।

ସୁଜାତାଙ୍କର ସେହି ସ୍ନେହବୋଳା କଣ୍ଠସ୍ୱରର ଉତ୍ତରରେ ଅସ୍ଫୁଟସ୍ୱରରେ କାନ୍ଦିଉଠିଲା ସ୍ମିତା । ତୀବ୍ର ଅନ୍ତର୍ଦାହର ସ୍ପଷ୍ଟ ସୂଚନାପରି ଆଖିଦୁଇଟିରୁ ତାର ଝରିପଡ଼ିବାକୁ ଲାଗିଲା ଅଶ୍ରୁର ଅବିରତ ଧାର । ଦୁଇହାତରେ ମୁହଁ ଲୁଚାଇ କାନ୍ଦିବାକୁ ଲାଗିଲା ସେ ।

ପାଷାଣୀ ପ୍ରତିମା ପରି ସୁଜାତା ଚାହିଁରହିଲେ ସେଇଠି ଠିଆହୋଇ—ଜୀବନ୍ତ ଦଗ୍‌ଧ ହୋଇଯାଉଥିବା ସେହି ଶୋକସନ୍ତପ୍ତ ମୂର୍ତ୍ତିଟି ଆଡ଼କୁ । ସାନ୍ତ୍ୱନାଦେବାକୁ ଆଉ ଭାଷା ନାହିଁ ତାଙ୍କ କଣ୍ଠରେ, ସହାନୁଭୂତି ଜଣାଇବାକୁ ବଳ ନାହିଁ ଦେହରେ । କାନ୍ଦିବାକୁ ଆଖିରେ ଆଉ ଲୁହ ନାହିଁ । କିନ୍ତୁ ହୃଦପିଣ୍ଡଟା ଭିତରେ ଗୋଟାଏ ଅଭୂତପୂର୍ବ ଯନ୍ତ୍ରଣା ତାର ନିର୍ମମ ପ୍ରତିକ୍ରିୟା କରିଚାଲିଛି । ଅନ୍ତରତଳୁ ହାହାକାର ଉଠିଆସିଲା । ଅନ୍ତର ଯେପରି ସହସ୍ରକଣ୍ଠର ଆର୍ତ୍ତିତା ନେଇ ଚିତ୍କାରକରିଉଠିଲା, "ହେ ଭଗବାନ୍ !"

ସହିବାକୁ ଯଦି ଭଗବାନ୍ ଶକ୍ତି ଦେଇନଥାନ୍ତେ, ତାହେଲେ ଦୁଃଖକୁ ସୃଷ୍ଟି କରିନଥାନ୍ତେ ନିଶ୍ଚୟ । ଯେତେ ବଡ଼ ମର୍ମାନ୍ତକ ଦୁଃଖ ହେଉ ପଛକେ ସାଧାରଣତଃ ମଣିଷ ତାକୁ ସହେ, ସହିନିଏ ।

ଦିନପରେ ଦିନ ଗଡ଼ିଚାଲିଛି, ମାସପରେ ମାସ ଆଉ ବର୍ଷପରେ ବର୍ଷ । ସମୟ କାହାରି ସୁଖଦୁଃଖକୁ ଅପେକ୍ଷା କରେନି । ଅନ୍ତରର କ୍ଷତ ଆରୋଗ୍ୟ ହୋଇଆସୁଛି । ଦେହ ଅଭ୍ୟସ୍ତ ହୋଇଗଲାଣି କଠୋର ପରିସ୍ଥିତିକୁ । ମହେଶର ଛବି ଲିଭି ଲିଭି ଆସୁଛି । ଜଳନ୍ତା ଅଙ୍ଗାର ପରି ଉତ୍ତପ୍ତ ଉଜ୍ଜ୍ୱଳ ସ୍ମୃତିଗୁଡ଼ିକ ନିଷ୍ପ୍ରଭ ହୋଇ ଆସୁଛି ଧୀରେ ଧୀରେ । ଅବଶ୍ୟ କେବେ କିପରି ଏ ନିୟମର ବ୍ୟତିକ୍ରମ ଘଟିଯାଏ, ନିଷ୍ପ୍ରଭ ହୋଇଆସୁଥିବା ସ୍ମୃତିଗୁଡ଼ିକ ଦହକି ଉଠନ୍ତି । ଅବରୁଦ୍ଧ ଶୋକ ଉଚ୍ଛ୍ୱସିତ ହୋଇପଡ଼େ ଆଖି । ଦୁଇଟିରେ ସୁପ୍ତ ପ୍ରବୃତ୍ତି ଜାଗ୍ରତ ହୋଇ ଅନ୍ତରକୁ ଦଗ୍‌ଧକରେ କେତେକ୍ଷଣ । ତାପରେ—ତାପରେ ସବୁ ସ୍ଥିର । ଗଭୀର ସମୁଦ୍ରର ସୁଗଭୀର ଜଳରାଶି ପରି ସ୍ଥିର, ପ୍ରଶାନ୍ତ, ଗମ୍ଭୀର ।

କେବେ କିପରି ହସର ଲହରୀ ବି ଦେଖାଦିଏ ସ୍ମିତାର ସେହି ଶୁଷ୍କ ଶୀର୍ଣ୍ଣ ଅଧର-ପ୍ରାନ୍ତରେ । ଜୀବନର ଆନନ୍ଦରେ ଭାଗ ନେବାକୁ ଏବେ ଆଉ ସେ ତେତେ ଉଦ୍ୟଭୀତା ନୁହେଁ । ସେ ନିଜେ ହସେ, ସତୀକୁ ହସାଏ, ଆଉ ହସାଇବାକୁ ଚେଷ୍ଟା କରେ ବାପା-ମା'ଙ୍କୁ । ଆଜିକାଲି ବେଶ୍ ନିଷ୍ଠାପର ଭାବରେ ସ୍ୱଚ୍ଛନ୍ଦରେ ସେ ନିଜର ନିୟମଗୁଡ଼ିକୁ ପାଳେ । ସଂସାରର ଯାବତୀୟ କର୍ମରେ ନିଜେ ଯୋଗଦେଇ ସବୁବେଳେ ନିଜକୁ କାର୍ଯ୍ୟବ୍ୟସ୍ତ କରି ରଖିବାକୁ ଚାହେଁ ।

ଚାରିମାସ ହେଲା ସବଜଜ୍ ରୂପେ ରାଜୁବାବୁ ବଦଳି ହୋଇଆସିଛନ୍ତି ସମ୍ବଲପୁରକୁ । ପାହାଡ଼ ଉପରେ ଏକାନ୍ତ ନିରାଞ୍ଜନ ଜାଗାରେ ଘରଟି ଅବସ୍ଥିତ । ଘରର ଚାରିଆଡ଼େ କେତେଟା ଦେବଦାରୁ ଗଛ ଏଠି ସେଠି ହୋଇ ରହିଛି, 'ବାକିସବୁ ରୁକ୍ଷ ଟାଙ୍ଗର ଭୂଇଁ । ଚାରିପଟେ ଥିବା ଚଉଡ଼ା ବାରଣ୍ଡାରେ ଠିଆହେଲେ ବିସ୍ତାରିତ କ୍ଷେତ ସେ ପ୍ରାନ୍ତରେ ଦିଶେ ସାରା ସହରଟା ।

ସେହି ରକ୍ତଗୋଲାପ ଗଛଟି ସହିତ କେତେଗୁଡ଼ିଏ ଫୁଲଗଛ କୁଣ୍ଡରେ ଲଗାଇ ବଲାଙ୍ଗିରରୁ ନେଇଆସିଥିଲା ସ୍ମିତା । ବାରଣ୍ଡା ଧାରରେ ସଜେଇ ରଖିଥିଲା ସେଗୁଡ଼ିକ । ସେଦିନ ସତୀ ସହିତ ମିଶି ସେଗୁଡ଼ିକର ଯତ୍ନ ନେଉଥିଲା ସେ । ମୂଳ ସଫାକରି, ମାଟି ଖୁରୁପେଇ, ଶୁଖିଲାପତ୍ର ସଫାକରି କଇଞ୍ଚିରେ ଅଗଡ଼ାଳଗୁଡ଼ିକ କାଟି ଜୋର୍‌ସୋର୍‌ରେ କାମରେ ଲାଗିଥିଲେ ଝିଅଭଉଣୀ ଦିହେଁଯାକ ।

ନଜର ପିପ୍ତ ଆରାମଚୌକିଟିରେ ଶୋଇ ସେ ଦୁହିଁଙ୍କ କାମ ଦେଖୁଥିଲେ ରାଜୁବାବୁ । ପ୍ରୌଢ଼ା ଅସ୍ଥା ତାର ସମସ୍ତ ଚିହ୍ନ ସୁସ୍ପଷ୍ଟ କରି ଆଙ୍କିଦେଲାଣି ତାଙ୍କ ମୁହଁରେ । ମଥାର କୃଷ୍ଣ କେଶରାଜି ମଧ୍ୟରେ କେତେଗୁଚ୍ଛ କେଶ ଶୁଭ୍ରତା ଧାରଣ କରିଆସୁଛି । ଦୃଷ୍ଟିରେ ଭରିରହିଛି ପରମ ଉଦାସୀନତା ।

ଘରିଆଡର ରୁକ୍ଷତା ମଝିରେ ସିଂ ତାର ସେହି କେତୋଟି ଫୁଲଗଛ ଆଣିଦେଇଛି କମନୀୟତାର ଆଭାସ । ଅସ୍ତଗାମୀ ସୂର୍ଯ୍ୟର ରକ୍ତାଭ କିରଣ ଦେବଦାରୁ ଗଛର ଫାଙ୍କରେ ଆସି ପଡ଼ୁଛି ବାରଣ୍ଡା ଉପରେ । ଦୂରରେ—ତଳେ ଝାରସୁଗୁଡ଼ା ଅଭିମୁଖରେ ଯାତ୍ରା କରୁଛି ରେଳଗାଡ଼ି ଉପରେ କୁଣ୍ଡଳୀକୃତ ଧୂମ ଉଦ୍‌ଗୀରଣ କରୁ କରୁ । ରେଲ୍‌ଗାଡ଼ି ଉପରେ ଦୃଷ୍ଟି ପଡ଼ିଲାକ୍ଷଣି ରାଜୁବାବୁ ସଚୀକୁ ଲକ୍ଷ୍ୟ କରି କହିଲେ, 'ସଚୀ, ଦେଖରେ ରେଲଗାଡ଼ି ଯାଉଛି...''

ସଚୀର ବୟସ ବଢ଼ିଥିଲେ ମଧ୍ୟ ଶୁଣିଲାକ୍ଷଣି ସେ ଡେଇଁପଡ଼ିଲା ଗାଡ଼ି ଦେଖିବାକୁ । ଗୋଟାଏ ସରୀସୃପ ପରି ଗତି କରୁଛି ରେଲଗାଡ଼ିଟା ।

ହଠାତ୍ ଗୋଟାଏ କଣ ପଡ଼ିଯିବା ଶବ୍ଦରେ ତିନିଜଣଯାକ ଚମକିପଡ଼ିଲେ । ବଡ଼ ତାଲଟାଏ ପଡ଼ିଗଲା ବୋଧହୁଏ ! କିଏ କିଛି ବୁଝିବାପୂର୍ବରୁ ଠିକା ଚାକରାଣୀଟା ଦଉଡ଼ି ଆସି କହିଲା, ''ଆଜ୍ଞା, ବୁଢ଼ୀ ମା' ପଡ଼ିଯାଇଛନ୍, ଉଠି ପାରନ୍ ନାଇଁ...''

ଜସ୍ତପଦରେ ସମସ୍ତେ ଓହ୍ଲାଇଗଲେ ତଳକୁ । ପୂଜା ପାଇଁ ନିଜେ ପାଣି କାଢ଼ି ଆଣନ୍ତି ରାଜୁବାବୁଙ୍କ ମା' । ନିଜେ ନ ଆଣିଲେ ତାଙ୍କ ମନ ବୁଝେନି । ଘରଟି ଉଚ୍ଚ ଜାଗାରେ, ଆଉରି କଲ ଆସିପାରିନି, ଅନେକ ତଳେ କୂଅ । ପାଣି ଧରି ପାହାଚରେ ଉପରକୁ ଉଠିଲା-ବେଳକୁ ଦୈବାତ୍ ପାଦ ଖସିଯାଇଛି । ବିପତ୍ତି ଘଟିବାକୁ ଥିଲେ ଯୁଆଡୁ ହେଲେ ଘଟିବ ।

ଅତି ସାଂଘାତିକ ଭାବରେ ଅଣ୍ଟା ହାଡ଼ ଭାଙ୍ଗି ଯାଇଥିଲା; କିନ୍ତୁ ଡାକ୍ତରଖାନାକୁ ଯାଇ ଏ ବୟସରେ ଧର୍ମ ନାଶ କରିବାକୁ ସେ ଆଦୌ ରାଜି ହେଲେନାହିଁ । ବାଧ୍ୟହୋଇ ଘରେ ତାଙ୍କର ଚିକିତ୍ସାର ବ୍ୟବସ୍ଥା କରାଗଲା ।

ବିପଦ କୁଆଡ଼େ ଏକାକୀ ଆସେନା କେବେ, ସାଙ୍ଗସାଥୀ ନେଇ ଆସେ । ଠିକ୍ ଏ ଦୁର୍ଘଟଣାର ପଦାରବିନ୍ଦପରେ ସୁଜାତା ଜ୍ୱରରେ ଶଯ୍ୟାଶାୟୀ ହେଲେ । ଚିକିତ୍ସା ସତ୍ତ୍ୱେ ଜ୍ୱର ଜଟିଳ ଆକାର ଧାରଣକଲା ।

ଶ୍ରେଷ୍ଠ ସଂସାରଟିର ଚକଟି ଯେପରି ହଠାତ୍ ଗତିହୀନ ହୋଇପଡ଼ିଲା । ଚାରିଆଡ଼େ ଦେଖାଗଲା ବିଶୃଙ୍ଖଳା । ଦୀର୍ଘ ପଞ୍ଚବିଂଶ ବର୍ଷ ହେଲା ସୁରୁଖୁରୁରେ ଗଡ଼ିଚାଲୁଥିବା ଜୀବନଧାରାର ଛନ୍ଦପତନ ଘଟିଲା । ଗତ କେତେବର୍ଷ ଭିତରେ ସୁଜାତା କେବେ ଏପରି ଅସୁସ୍ଥତା ଭୋଗକରିନଥିଲେ । ସ୍ୱାମୀଙ୍କର ସୁଖଦୁଃଖରେ-ସମଦୁଃଖିନୀ ହୋଇ ସବୁବେଳେ

ବିନା ପ୍ରତିବାଦରେ ସଂସାର ସୁପରିଚାଳିତ କରିଆସିଥିଲେ ସେ ଏପର୍ଯ୍ୟନ୍ତ । ଗୃହିଣୀ ହିସାବରେ ଆଦର୍ଶ ଗୃହିଣୀ ସୁଜାତା । ରାଜୁବାବୁ ଓ ତାଙ୍କର ଦାମ୍ପତ୍ୟ ଜୀବନ ଆଦର୍ଶ ।

ରାଜୁବାବୁଙ୍କର ମନେହେଲା ଡାହାଣ ହାତଟି ତାଙ୍କର ହଠାତ୍ ଅକର୍ମଣ୍ୟ ହୋଇ-ଯାଇଛି ଯେପରି ! ନିହାତି ଅସହାୟ ମନେହେଲା ନିଜକୁ । ଚାକିରୀର କେତେବର୍ଷ ଭିତରେ ଏଇ ପ୍ରଥମ କରି ଦୀର୍ଘ ଛୁଟିଲାଗି ଦରଖାସ୍ତ କଲେ ସେ । ଘରେ ଦୁଇଟିଯାକ ରୋଗୀଙ୍କୁ ସମ୍ଭାଳିବା ସ୍ମିତା ପକ୍ଷରେ ଅସମ୍ଭବ ଥିଲା ।

ମୃତ୍ୟୁର ସେଇ ଭୟଙ୍କର ରୂପ ଯେ ଥରେ ଆଖି ଆଗରେ ଦେଖିଛି, ଟିକିଏ ବିପଦ ପଡ଼ିଲାକ୍ଷଣି ତାର ଅନ୍ତରରେ ସେଇ ବିଭୀଷିକା ଜାଗି ଉଠେ ଥରକୁ ଥର । ସ୍ମିତାର ଅନ୍ତରାତ୍ମା ଥରୁଛି ଭୟରେ । ଲୁଚେଇ ଲୁଚେଇ ସେ ଲୁହ ପୋଛେ ନିଜ ଆଖିରୁ । ବାରମ୍ବାର ନିଜର ଏ ଅଲୋଡ଼ା ଜୀବନକୁ ସେ ଯାଚଞ୍ଜା କରେ ଭଗବାନଙ୍କ ନିକଟରେ, ପ୍ରତିଦାନରେ ମା' ତାର ସୁସ୍ଥ ହୋଇଉଠନ୍ତୁ, ସେମାନଙ୍କ ସମସ୍ତଙ୍କର ଜୀବନଧାରା ଯେ ମା'ଙ୍କୁ ହିଁ କେନ୍ଦ୍ର କରି ଘୂରି ବୁଲୁଛି । ଏ କ୍ଷୁଦ୍ର ସଂସାରର ମେରୁଦଣ୍ଡ ଯେ ସେ । ତାଙ୍କ ବିନା...

ଆତଙ୍କରେ ଶିହରିଉଠେ ଶୁଚିସ୍ମିତା ।

ଆଉ ଶେଯରେ ପଡ଼ିରହି ଆକାଶ ପାତାଳ ଚିନ୍ତା କରୁଥାନ୍ତି ନିଜେ ସୁଜାତା ମଧ୍ୟ । ସ୍ୱାମୀଙ୍କର ଉଦ୍‌ବିଗ୍ନ ଚିନ୍ତାଗ୍ରସ୍ତ ମୁହଁ, ସ୍ମିତା ଓ ସତୀର ଛଳ ଛଳ ଆଖି, ସବୁ ମିଶି ମନରେ ଆଣିଦେଉଥାଏ ବିକ୍ଷିପ୍ତତା । ଘରର ବର୍ତ୍ତମାନର ପରିସ୍ଥିତିରେ ସ୍ୱାମୀ ଓ ପିଲାଙ୍କୁ ନିତାନ୍ତ ଅସହାୟ ଅବସ୍ଥାରେ ରଖି ନିଜେ ଶଯ୍ୟାଶାୟୀ ହୋଇରହିବା ଯେ କେଡ଼େ କଷ୍ଟକର ତାହା ତାଙ୍କ ଛଡ଼ା କିଏ ବେଶି ବୁଝିପାରିବ ? ପ୍ରଥମେ କେତେଦିନ ଚଞ୍ଚଳ ଭଲହୋଇଯିବାର ଆଶା ଥିଲା ତାଙ୍କର । କିନ୍ତୁ କ୍ରମେ କ୍ରମେ ସେ ବି ଚିନ୍ତିତ ହୋଇପଡୁଛନ୍ତି—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ତିନୋଟିଯାକ ଛିନ୍ନଛିନ୍ନହୋଇ ଦେଖାଦେଉଛନ୍ତି ମନ ଭିତରେ ।

ଟିକିଏ ଦୂରରେ ଠିଆହୋଇ ସ୍ମିତା ଫଳରସ ତିଆରିକରୁଛି । ମୁହଁଟି କେତେ ଧାରୁଆ ଦିଶିଲାଣି । ଏ କେତେଦିନରେ ବଡ଼ ଶୁଖିଗଲାଣି ସେ, ମୁଣ୍ଡ ବୋଧହୁଏ ପନ୍ଦରଦିନ ହେଲା କୁଣ୍ଡାଇ ନାହିଁ । ତେଲବିହୀନ ରୁକ୍ଷ ବାଳଗୁଡ଼ାକୁ କୌଣସିମତେ ଏକାଠିକରି ଗଣ୍ଠିଟିଏ ପକାଇଦେଇଛି । ଧଳା ଆମୀକନାର ବ୍ଲାଉଜ ଆଉ ସେ ଗଣ୍ଠି ମଝିରେ ଆଭରଣ-ହୀନ ବେକଟି କେଡ଼େ ଗୋରା ଦିଶୁଛି ସତେ ! ମୁଣ୍ଡର ଲମ୍ବା କଳାକଳା ଘନ କେଶ ପାଇଁ ସୁଖ୍ୟାତି ଥିଲା ସ୍ମିତାର । ରେଶମ ଭଳି ନରମ ଆଉ ସୁନ୍ଦର କେଶରାଶି ଖୋଲି-ଦେଲାକ୍ଷଣି ସମୁଦ୍ରର ଢେଉ ଭଳି ବିଞ୍ଛିହୋଇପଡୁଥିଲା ତା ପିଠି ଉପରେ । କେତେ ଯତ୍ନରେ କେତେ ସମୟ ଦେଇ ତାର ବାଳ ବାନ୍ଧିଦେଉଥିଲେ ସେ । ତାଙ୍କର ଏଡ଼େ ସୁନ୍ଦର ଝିଅର ଏ କି ଦୁର୍ଦ୍ଦଶା ସତେ !

ସୁଜାତାଙ୍କ ଆଖିରୁ ଲୁହ ଝରିପଡ଼ିଲା ।

ଫଳରସ ତିଆରି କରୁ କରୁ ନୀରବରେ ଅଶ୍ରୁପାତ କରୁଥିଲା ସ୍ମିତା । ଦଶଦିନରୁ ଆଗରୁ ସେ ବାପାଙ୍କ ପାଖରୁ ଶୁଣିଛି—ଡାକ୍ତର କୁଆଡ଼େ ମତ ଦେଇଛନ୍ତି ମା'ଙ୍କର ଟାଇଫଏଡ୍ ହୋଇଛି । ଆଜିକାଲି ଏ ଜ୍ୱର ସେତେ ଦୁରାରୋଗ୍ୟ ନୁହେଁ ସତ, ତେବେବି ଆଶଙ୍କାରେ ମନଟା ପୂରିଯାଇଛି ।

ସ୍ନେହସିକ୍ତ କଣ୍ଠରେ ସୁଜାତା ଡାକିଲେ, 'ସ୍ମିତା' ।

ମୁହଁ ନ ଫେରାଇ ସ୍ମିତା ଉତ୍ତର ଦେଲା, "କଣ ମା' ?"

"କଣ ଟିକିଏ ଖାଇଲୁଣି ନା ମା' ? ମତେ କଣ ଆଉ ଟିକିଏ ପରେ ଖାଇବାକୁ ଦେଲେ ହୁଅନ୍ତାନି ? ଏତେ ତରତର କାହିଁକି ଯେ ?"

ସେ କଣ୍ଠସ୍ୱର ଶୁଣି ସ୍ମିତାକୁ ବେଶି କାନ୍ଦ ଲାଗିଲା । ସେ ପିଠିକରି ଠିଆହୋଇଥିଲେ ମଧ ସୁଜାତା ଜାଣିପାରି କହିଲେ, "କାନ୍ଦୁଛୁ ନା ? କାହିଁକି ମା···ଆସିଲୁ ମୋ ପାଖକୁ", ଏତିକି କହି ନିଜ ଆଖିରୁ ଲୁହ ପୋଛିଲେ ସୁଜାତା । ଭାବିଲେ ନିଶ୍ଚୟ ମହେଶଙ୍କୁ ମନେ ପକାଇ ସ୍ମିତା କାନ୍ଦୁଛି; ହୁଏତ ଫଳରସ ତିଆରି ସହିତ ମହେଶର କେଉଁ ସ୍ମୃତିବିଜଡ଼ିତ ···ହାସ୍ୟରେ !

ଧରାପଡ଼ିଯାଇ ଲଜ୍ଜିତ ଅନୁଭବ କଲା ସ୍ମିତା । ସେଥିପାଇଁ ଲୁଗାକାନିରେ ଲୁହ ପୋଛିପକାଇଲା ଚଞ୍ଚଳ ଆଉ ହସିବାକୁ ଚେଷ୍ଟାକଲା ମଧ—ଛିଃ, ମା'ଙ୍କ ଆଗରେ ତାର ଏ ଦୁର୍ବଳତା ଦେଖାଇବା ନିହାତି ଅନୁଚିତ । ଫଳରସକୁ ସଫାକନାରେ ଛାଣି ଗିଲାସଟି ଧରି ଆଗେଇଆସିଲା ସେ । ପାଖକୁ ଆସିଲାକ୍ଷଣି ସୁଜାତା ଉଠିପଡ଼ି ବସିବାକୁ ଚେଷ୍ଟାକଲେ । ସ୍ନସ୍ତକଣ୍ଠରେ ବାଧାଦେଲା ସ୍ମିତା, "ଉଠନି ମା, ଡାକ୍ତର ମନାକରିଛନ୍ତି···" ଭୀତ-କଣ୍ଠରେ ସୁଜାତା ପଚାରିଲେ, "କାହିଁକି ମୋର କଣ ହୋଇଛି କି ?"

କୌଣସିମତେ ନିଜକୁ ସମ୍ଭାଳିରଖି ସ୍ମିତା କହିଲା, "ଟାଇଫଏଡ୍ ହୋଇଛି..."

"ଟାଇଫଏଡ୍ !"

"ହଁ ମା, ତେବେ ଡାକ୍ତର କହିଲେ କିଛି ଭୟ ନାହିଁ । ଆଜିକାଲି ସେଥିପାଇଁ କେତେ ନୂଆ ନୂଆ ଔଷଧ ବାହାରିଲାଣି ।" ଜନନୀଙ୍କୁ ନିର୍ଭୟ ଦେବାକୁ ଚେଷ୍ଟାକଲା ସ୍ମିତା । ତାପରେ ଯତ୍ନରେ ଫଳରସତକ ଖୁଆଇଦେଲା ।

"ତାହେଲେ କେତେଦିନ ଏହିପରି ଶେଯରେ ପଡ଼ିରହିବାକୁ ହେବ ?" ସୁଜାତାଙ୍କ କଣ୍ଠରେ ଭୟର ଚିହ୍ନ ।

"ବାପା କହିଲେ—ଡାକ୍ତରବାବୁ କହୁଥିଲେ ଆଜିକାଲି ଗୋଟାଏ ଔଷଧ ବାହାରିଛି—ଟାଇଫଏଡ୍ ଖୁବ୍ ଚଞ୍ଚଳ ଭଲ ହୋଇଯାଉଛି ସେଥିରେ ।"

'ହୁଁ' ଅନ୍ୟମନସ୍କଭାବେ କହିଲେ ସୁଜାତା । କିଛିସମୟ ଚୁପ୍‌ରହି ପୁଣି କହିଲେ, "ସ୍ମିତା, ଆଜିଲୁ ପାଣିଆଣ । ତେଲ ଟିକିଏ ଲଗାଇ ଆସେ । ମୁଁ ଶୋଇ ଶୋଇ ତୋ ମୁଣ୍ଡଟା କୁଣ୍ଡାଇଦେବି । କେଣ ହେଲାଣି ବାଳଗୁଡ଼ାକ ?"

"ନାଇଁ ନାଇଁ ମା, ଏଇଲେ ଏସବୁ କରିବା ତମ ପକ୍ଷରେ ଆଦୌ ଉଚିତ ନୁହେଁ...."

"କିଛି ହେବନି, ଆସ୍ତେ ଆସ୍ତେ କୁଣ୍ଡାଇଦେବି ଯେ ! ଆଉ ଦି' ଚାରିଦିନ ଇମିତି ରହିଲେ ବାଳଗୁଡ଼ାକ ଜଟ ବାନ୍ଧିଯିବ..."

ସ୍ମିତାର ଆପତ୍ତି ସତ୍ତ୍ୱେ ସୁଜାତା ତା ବାଳତକ ସଜାଡ଼ିଦେବାକୁ ଲାଗିଲେ ।

ଦି'ଦିନ ପରର କଥା । ବୁଢ଼ୀମା'ଙ୍କ ପାଇଁ ଓ ନିଜ ପାଇଁ ମଠାଲୁଗା ପିନ୍ଧି ଅଲଗା ରନ୍ଧାବଢ଼ା କରୁଥିଲା ସ୍ମିତା । ସଚୀ ସ୍କୁଲକୁ ଚାଲିଯାଇଥିଲା । କାଲିଠାରୁ ମା'ଙ୍କ ଜର ବେଶ୍ ବଢିଯାଇଛି । ସେଥିପାଇଁ ସମସ୍ତେ ଚିନ୍ତିତ । ଅନ୍ୟମନସ୍କଭାବରେ କାମ କରୁଥିଲା ସେ । ହଠାତ୍ ବାପାଙ୍କ ଡାକ ଶୁଣି ଦେହ ଭିତରେ ତାର ଯେପରି ଗୋଟାଏ ଶୀତଳ ସ୍ରୋତ ବହିଗଲା ! ଦଉଡ଼ିଗଲା ସେ ।

ପ୍ରବଳ ଜ୍ୱରରେ ଅଚେତନ ହୋଇଯାଇଛନ୍ତି ସୁଜାତା । ବରଫ ମୁଣାଟିକୁ ମୁଣ୍ଡ ଉପରେ ଚପିଧରିବାକୁ କହି ରାଜୁବାବୁ ଡାକ୍ତରବାବୁଙ୍କୁ ଫୋନ କଲେ ଆସିବାପାଇଁ । ଅଳ୍ପ ଚେଷ୍ଟା ପରେ ରୋଗିଣୀର ଚୈତନ୍ୟ ଫେରିଆସିଲା । ମା' ଟିକିଏ ସୁସ୍ଥ ଅନୁଭବ କଲାପରେ ସ୍ମିତା ଯାହାକିଛି ଟିକେ ରାନ୍ଧି ବୁଢ଼ୀମା'ଙ୍କୁ ଖୁଆଇଦେଲା । ବାପାଙ୍କର ବାରମ୍ବାର ଅନୁରୋଧ ହେତୁ ନିଜେ ଖାଇବାକୁ ବସିଲା ମଧ୍ୟ । କିନ୍ତୁ ଗୁଣ୍ଡାଏ ସୁଦ୍ଧା ଭାତ ଖାଇପାରିଲା ନାହିଁ । ଯେପରି ସେ ସ୍ପଷ୍ଟ ଅନୁଭବ କରିପାରୁଛି.... ଛପି ଛପି ସାବଧାନରେ ପାଦ ପକାଇ ଧୀରେ ଧୀରେ ଆଗେଇ ଆସୁଛି ମୃତ୍ୟୁ ଏ ଘର ଭିତରକୁ । ତାର ସେ ଶଙ୍କିତ ପଦଧ୍ୱନି କାନରେ ବାଜୁଛି ସ୍ମିତାର । ଗଳା ଫଟାଇ କୋହ ଉଠିବାକୁ ଲାଗିଲା ତାର ।

ସେଦିନପରଠାରୁ ଜ୍ୱରର ତାପ ବଢିଲାକ୍ଷଣି ମୂର୍ଚ୍ଛିତା ହୋଇପଡୁଥିଲେ ସୁଜାତା । କ୍ରମେ କ୍ରମେ ଅତି ଦୁର୍ବଳ ହୋଇଯିବାକୁ ଲାଗିଲେ ମଧ୍ୟ । ଡାକ୍ତରମାନେ ଚିନ୍ତିତ ହୋଇ-ପଡ଼ିଲେ । ସେମାନଙ୍କ ମତରେ ଭୀଷଣ ରକ୍ତଶୂନ୍ୟତା ପାଇଁ ଜ୍ୱର ଏହିପରି ଜଟିଳ ଦିଗକୁ ଗତିକଲା ।

ମଣିଷ ନିଜର ଗବେଷଣାବଳରେ, ଶକ୍ତି ଓ ବୁଦ୍ଧି ବିନିଯୋଗ କରି ବହୁତ ଉଚ୍ଚକୁ ଉଠିଛି ସତ; କିନ୍ତୁ ନିୟତିକୁ ଜୟ କରିବା ଶକ୍ତି ଏପର୍ଯ୍ୟନ୍ତ ସଂଗ୍ରହ କରିପାରି ନାହିଁ । ମନୁଷ୍ୟର ଚରମ ଉନ୍ନତିକୁ, ତାର ଦାମ୍ଭିକତାକୁ ଉପହାସ କରି ନିୟତି କଟାକ୍ଷ ହାଣିଛି । ସେ ଯେ ଚିରଜୟୀ ସେକଥା, ଜଣାଇଦେଇଛି ଥରକୁ ଥର ତାର ସଂହାର ଶକ୍ତି ପ୍ରୟୋଗକରି ।

ତେଣୁ ନୂତନ ଆବିଷ୍କୃତ ଔଷଧ, ଡାକ୍ତରଙ୍କ ଅକ୍ଳାନ୍ତ ଚେଷ୍ଟା ଆଉ ରାଜୁବାବୁ ଓ ସ୍ନିଗ୍ଧାର ପ୍ରାଣପାତ ସେବା, ସଚୀର ବ୍ୟାକୁଳ କ୍ରନ୍ଦନ, କିଛି...କିଛି ଅଟକାଇ ରଖିପାରିଲା ନାହିଁ ସୁଜାତାଙ୍କୁ । ସୌଭାଗ୍ୟର କଥା, ମୃତ୍ୟୁର ଦୁଇଦିନ ପୂର୍ବରୁ ସବୁବେଳେ ଆଚ୍ଛନ୍ନ ଅବସ୍ଥାରେ ପଡ଼ିରହିଲେ ସେ । ତେଣୁ ଆସନ୍ନ ମୃତ୍ୟୁର ସେ ଭୟଙ୍କର, ନିଷ୍ଠୁର ରୂପକୁ ଅନୁଭବ କରିବାର ଦୁର୍ଯୋଗରୁ ରକ୍ଷାପାଇଁଥିଲେ ସେ । ପ୍ରିୟତମ ସ୍ୱାମୀ, ପ୍ରାଣାଧିକ ପୁତ୍ରକନ୍ୟା, ଶାଶୁ ଅତି ଆଦରର ଘରସଂସାର ସବୁ ପଡ଼ିରହିଲା—ଚିରଦିନ ପାଇଁ ଆଖି ବୁଜିଦେଲେ ସୁଜାତା ।

ଆଘାତରେ ଜର୍ଜରିତ ହୋଇପଡ଼ିଲେ ବି ଏ ଜୀବନରୁ ମୁକ୍ତି ନାହିଁ ମଣିଷର । ତାକୁ ଆଉଥରେ ଠିଆହେବାକୁ ପଡ଼ିବ ଦମ୍ଭଧରି । ଭାଙ୍ଗି ପଡ଼ିବାର ଅଧିକାର ଯେ ତାର ନାହିଁ ।

ଗୃହପରିଚାଳନାର ଭାର ନିଜ ହାତକୁ ନେଇଛି ସ୍ନିଗ୍ଧା । ସଚୀକୁ ମଣିଷ କରିବ, ବାପାଙ୍କୁ ଦମ୍ଭ ଦେବ, ବୁଢ଼ୀମାଙ୍କର ସେବା କରିବ । ଅସଂଖ୍ୟ ଦାୟିତ୍ୱ ତାର ।

ରାଜୁବାବୁ ଭାଙ୍ଗି ପଡ଼ିଥିଲେ ଏକାବେଳେ—ସାଙ୍ଗେ ସାଙ୍ଗେ ଛୁଟିନେଇ ପ୍ରାଣାଧିକା ପତ୍ନୀଙ୍କର ସହସ୍ର ସ୍ମୃତି ବିଜଡ଼ିତ ସେ ଘରଟି ଛାଡ଼ି ଆଉ କେଉଁଠାକୁ ପଳାଇଯିବାର ଉପାୟ ନ ଥିଲା, କାରଣ ମା'ଙ୍କୁ ତାଙ୍କର ହଲଚଲ କରିବାର ଉପାୟ ନଥିଲା ।

ନିର୍ଜୀବ ଶୂନ୍ୟ ଦିନଗୁଡାକ କିପରି ଯେ କଟୁଥିଲା, ତାହା ସେମାନେ କେବଳ ଜାଣୁ-ଥିଲେ । ଘରେ ବାହାରେ ସବୁଆଡ଼େ ଗୋଟାଏ ନିଃଶବ୍ଦ ହାହାକାର ଘୂରି ବୁଲୁଥିଲା । ସେହି ଅନ୍ତର୍ଦାହୀ ହାହାକାରରୁ ମୁକ୍ତି ପାଇବା ପାଇଁ ବାପା ଯେପରି ଛଟପଟ ହେଉଥିଲେ, ସ୍ନିଗ୍ଧା ବି ସେହିପରି ହେଉଥିଲା । ଅତିକଷ୍ଟରେ ନିହାତି ଦରକାର ପଡ଼ିଲେ ପଦଟିଏ କଥା କହୁଥିଲେ ବାପା । ଲୁହ ଢଳ ଢଳ ଆଖି ଦୁଇଟି ତୋଳି ନାନାର ମୁହଁଟିକୁ ଅସହାୟ ଭାବରେ ଚାହୁଁଥିଲା ସଚୀ । ସାନଭାଇଟିକୁ ନିକଟକୁ ଟାଣିଆଣି ତାର ଆଖି ଦୁଇଟିକୁ ପୋଛି ଦେଉଦେଉ ଲୁହର ବନ୍ୟାରେ ଭାସିଯାଉଥିଲା ସେ ନିଜେ । ଶୋକବିହ୍ୱଳ ବୁଢ଼ୀ ମା'ଙ୍କୁ ସାନ୍ତ୍ୱନା ଦେବାପାଇଁ ଭାଷା ଆଉ ଯେପରି ନଥିଲା ।

ଜୀବନର କେତୋଟା ବର୍ଷ ବା ଯାଇଛି । ତାର ସବୁଠାରୁ ମୂଲ୍ୟବାନ ଆଉ ମଧୁରତମ ବସ୍ତୁପରେ ସେ ପାଇଲା କଣ ? ଭଗବାନ ବଡ଼ ନିଷ୍ଠୁର...ବଡ଼ ନିଷ୍ଠୁର ! ଅନ୍ତରର ଯନ୍ତ୍ରଣା ଯେତେବେଳେ ଅସହ୍ୟ ହୋଇଉଠେ—ଅସ୍ଫୁଟ ଭାବରେ କଣ୍ଠରୁ ସ୍ୱତଃ ବାହାରିଆସେ ଅଭିଯୋଗ । ଏ ଦୁନିଆରେ ଆଉ କାହା ପାଖରେ ସେ ଅଭିଯୋଗ ପ୍ରକାଶ କରାଯାଇ ପାରେନା କେବଳ ଅଦୃଶ୍ୟ ଭଗବାନଙ୍କ ଛଡ଼ା । ସାରା ଦେହ ଓ ମନରେ ବିଦ୍ୱେଷ

ବକ୍ଷର ପ୍ରତିଧ୍ୱନି କରେ, ମନ ଶତଚ୍ଛିନ୍ନ ହୋଇ ଯେପରି ଚିତ୍କାର କରି ଉଠେ—ମଣିଷର ଅତି ଆଦରର ଅଦୃଶ୍ୟ ଭଗବାନ୍ ଜଣେ ନିର୍ମମ ଉଦ୍ଧାମାତ୍ମାଶ୍ରିନ ଜଲ୍ଲାଦ୍ !!

ମନ ଭିତରର ବିପ୍ଳବ ମନ ଭିତରେ ଗୁମରିଉଠି ପୁଣି ଶାନ୍ତ ହୁଏ ମନ ଭିତରେ ।

ମୃତ୍ୟୁ କିନ୍ତୁ ସେପର୍ଯ୍ୟନ୍ତ ସେହି ପରିବାରକୁ ଗ୍ରାସିଯାଇନଥିଲା । ଲୁଚି ରହିଥିଲା ଆଖ-ପାଖରେ । ତେବେ ମହେଶ ଆଉ ସୁଜାତାଙ୍କ ମୃତ୍ୟୁ ପରେ ତାର ଆକସ୍ମିକ ଆବିର୍ଭାବରେ ଆଉ ବିଚଳିତ ହେବେନାହିଁ ଏ ପରିବାରର କେହି । ଶୁଚିସ୍ମିତା ତ ଆଦୌ ନୁହେଁ ।

ସେଥିପାଇଁ ବୁଢ଼ୀମା' ଯେତେବେଳେ ସେହି ଅକ୍ଷମ ଅବସ୍ଥାରେ ଶେଷନିଃଶ୍ୱାସ ତ୍ୟାଗ-କଲେ, ରାଜୁବାବୁ ଆଖିର ଲୁହସମ୍ଭାଳି ପାରିନଥିଲେ । କିନ୍ତୁ ସ୍ମିତାର ଆଖି ଦୁଇଟା ଶୁଖିଲା ରହିଲା । ତାର ଆଖି ଆଗରେ ଦୁଇ ଦୁଇଟା ଦରକାମ୍ପି ଜୀବନ ଚାଲିଯାଇଛି, ସହସ୍ର ଚେଷ୍ଟା କରିସୁଦ୍ଧା ସେ ରଖିପାରିନି...ଆଉ ବୁଢ଼ୀମା, ତାଙ୍କର ତ ଯିବାବେଳ ଆସିଯାଇଥିଲା ।

ଏ ସଂସାରର ନିୟମ ବିଚିତ୍ର—ତା'ଠାରୁ ଆହୁରି ଅଧିକ ବିଚିତ୍ର ହେଉଛି ମଣିଷର ମନ ।

ମା'ଙ୍କ ମୃତ୍ୟୁ ପରେ କିଛି ଦିନ ଛୁଟି ନେଇ ରାଜୁବାବୁ ପୁରୀକୁ ଚାଲିଆସିଲେ; କିନ୍ତୁ ସେ ଛୁଟିର ଦିନଗୁଡ଼ିକ ବି ଅସହ୍ୟ ହୋଇପଡ଼ିଲା ଯେପରି । ଅତୀତର ତାଙ୍କ ଯୌବନ-ସମୟର ମଧୁର ସ୍ମୃତିଗୁଡ଼ିକ ପୁରୀ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତହୋଇ ରହିଥିଲା—ସେହି ଏକା ସମୁଦ୍ର, ସେହି ଝାଉଁବଣ, ସେହି ମନ୍ଦିର, ସବୁ ରହିଛି ଏକାପରି; କିନ୍ତୁ ମଣିଷ ରହିନି, ରହି ପାରିନି । ସବୁ ଅଛି, କିନ୍ତୁ—କାହାନ୍ତି ସୁଜାତା ?

ଘରର ଟିକିନିଖି ଦାୟିତ୍ୱ ତୁଲାଇବାରେ ଲାଗିଛି ସ୍ମିତା । ନିଃଶବ୍ଦ ତାର ପଦସଞ୍ଚାରଣ, ନୀରବ ତାର କଣ୍ଠ । ସେ କାନ୍ଥା ନୁହେଁ ଆଉ, ଗ୍ରୀଷ୍ମ ମାତ୍ର । କିନ୍ତୁ ସେ ଗ୍ରୀଷ୍ମର ଅଙ୍ଗ-ପ୍ରତ୍ୟଙ୍ଗରେ ସୌନ୍ଦର୍ଯ୍ୟ ଠିକ୍ ସେହିପରି ଦୀପ୍ତିମାନ୍ ହୋଇ ରହିଛି, ଟିକିଏ ହେଲେ ନଷ୍ଟ ଭ ହୋଇପାରିନି । ଯୌବନ ତାର ଜୈତ୍ର ପତାକା ଉଡ଼ାଇବାରେ ଟିକିଏହେଲେ ହେଲା କରିନି । ଅଗ୍ନିର ଲେଲିହାନ ଶିଖାପରି ତେଜସ୍ୱାନ୍ ସୁନ୍ଦର ସେ ରୂପରାଶି; କିନ୍ତୁ ମୁହଁରେ ହସ ନାହିଁ, ଆଖିରେ ଚପଳତା ନାହିଁ, କଣ୍ଠ ମୁଖରିତ ନୁହେଁ—ତଥାପି ସୌନ୍ଦର୍ଯ୍ୟ ପରାଜୟ ସ୍ୱୀକାର କରି ନାହିଁ—ଜ୍ୱଳନ୍ତ ଅଗ୍ନିଶିଖାକୁ କିଏ ଯେପରି ମନ୍ତ୍ର-ବଳରେ ଜଡ଼ରେ ପରିଣତ କରିଦେଇଛି—ଦହନ ଶକ୍ତି ନାହିଁ, କୌଣସି କମ୍ପନ ନାହିଁ ତାର ତଥାପି ସେ ଏକ ବହ୍ନିଶିଖା, ଅକମ୍ପିତ ବହ୍ନିଶିଖା !

ସେହି ଦିନଠୁ, ଉଦ୍ଧତ ସୌନ୍ଦର୍ଯ୍ୟଙ୍କୁ ଆଖି ଆଗରେ ଦେଖିଲାଷଣି ରାଜୁବାବୁଙ୍କର ହୃଦୟ କଣ ହୋଇଯାଏ ଦୁଃଖରେ। ଦୁନିଆରେ ଭାବପ୍ରବଣ ବ୍ୟକ୍ତି ହିଁ ସବୁଠାରୁ ବେଶି କଷ୍ଟ ଭୋଗକରେ।

ସ୍ମିତା ନିଜେ ବି ଗୁଡ଼ାଏ କଷ୍ଟପାଏ—ସମୁଦ୍ରର ଅସ୍ପଷ୍ଟ ଗର୍ଜ୍ଜନ ସହିତ ଅଜାଣତର ଶବ୍ଦ ଶବ୍ଦ ସ୍ମୃତି ଯେପରି ଶିକାରୀ କୁକୁରଦଳ ପରି ଗୋଡ଼ାଇଆସୁଛି ଘେରିଯାଉଛନ୍ତି ତାକୁ ! ଶୂନ୍ୟ ଭବିଷ୍ୟତ୍ର ରାକ୍ଷସର ମୁଖବିବର ପରି ଦେଖାଦିଏ ଆଖି ଆଗରେ। ସେ ଭାବେ—ତାର ଏ ନିଷ୍ଫଳ ଜୀବନ କେବେ ଶେଷ ହେବ ? କେବେ ଯାଇ ଏ ଦଗ୍ଧକାରୀ ଯନ୍ତ୍ରଣାରୁ ସେ ରକ୍ଷା-ପାଇବ ? କେତେଦିନ ଆହୁରି ଏହିପରି ବଞ୍ଚିରହିବାକୁ ପଡ଼ିବ ତିଳେ ତିଳେ ଜୀବନୀ ଶକ୍ତିକୁ କ୍ଷୟ କରି କରି ? ଦେହକୁ କଷ୍ଟ ଦେବା ଦରକାର, ମନକୁ କଷ୍ଟ ଦେବା ଦରକାର। ମନ ଅସଂଯତ ହୋଇ ଉଠିଲେ ମହାପାପ, ସୁଖର ଚିନ୍ତା ବି ପାପ।

ମା' ଆଉ ନାହାନ୍ତି ଯେ ଧାଇଁଯାଇ ତାଙ୍କ କୋଳରେ ମୁହଁ ଲୁଚାଇ ନିଜକୁ ଶାନ୍ତି ଦେବ। ମା'ଆଙ୍କ ମୃତ୍ୟୁ ପରେ ବାପା ଯେପରି ଘୁଞ୍ଚିଯାଇଛନ୍ତି ଲକ୍ଷ ଯୋଜନ ଦୂରକୁ, ଏକ ଗଭୀର ଉଦାସୀନତାରେ ସଦା ଗମ୍ଭୀର ସେ !

ନିଜେ କାନ୍ଦିଲେ ନିଜକୁ ଲୁହ ପୋଛିବାକୁ ପଡ଼ିବ। ଅନ୍ତରର ବେଦନା ଉଦ୍‌ବେଳ ହୋଇଉଠିଲେ ନିଜକୁ ନିଜେହିଁ ସାନ୍ତ୍ୱନା ଦେବାକୁ ପଡ଼ିବ।

ନିଷ୍ଠା ସହିତ ସ୍ମିତା ସବୁ ଉପବାସବ୍ରତ ପାଳେ; ଯଦିଚେହେଲେ ମନ୍ଦିରକୁ ଯାଇ ଠାକୁରଙ୍କୁ ଦର୍ଶନ କରିବାର ଇଚ୍ଛା ବଳିନଥାଏ। ରାଜୁବାବୁ ବି ବଳେଇ ନାହାନ୍ତି କେବେ।

ଋତୁଚକ୍ର ତାର ନିୟମିତ ଆବର୍ତ୍ତିରେ ଘୂରିବୁଲେ।

ବାଲେଶ୍ୱର। ଅଳ୍ପ କେତେଦିନ ହେଲା ରାଜୁବାବୁ ବଦଳିହୋଇ ଆସିଛନ୍ତି ଏଠାକୁ। ଆଉ ଏଠାକୁ ଚାଲିଆସିବାପରଠାରୁ ଅପେକ୍ଷାକୃତ ହାଲୁକା ହୋଇଯାଇଛି ତାଙ୍କ ମନଟା। ସଚୀ ଯୋଗଦେଇଛି ଯେଠାକାର ବିଦ୍ୟାଳୟରେ। ସହରର କୋଳାହଳଠାରୁ ବହୁତ ଦୂରରେ ରହିଛି ଘରଟା। ନୀଳଗିରି ଆଡ଼କୁ ପ୍ରଧାନସଳଖ ଲମ୍ବିଯାଇଛି ଯେଉଁ ରାଜପଥଟି —ତାର ବାଁପଟକୁ ବିରାଟ କୋଠାଘରଟିଏ। ଘରର ଚାରିପଟେ ତାରବାଡ଼ଘେରା ବିସ୍ତୃତ ଘାସ ପଡ଼ିଆ। ତାର ବାଡ଼ର ସେପଟକୁ ଗୋଟାଏ ନାଲିରଙ୍ଗର ଛୋଟ ବଙ୍ଗଳା—କିଏ ଜଣେ ପାଦ୍ରୀ ରହିଛନ୍ତି ସେଇଠି। ଏ ଦୁଇଟି ଘର ଛଡ଼ା ଆଖପାଖରେ ଆଉ କୌଣସି ଘର ନାହିଁ। ତେଣୁ ସାମୟିକ ଯାନବାହନର ଶବ୍ଦ ବା କେତେ ଜଣ ପଥିକଙ୍କ

ସାମାନ୍ୟ କୋଳାହଳକୁ ଛାଡ଼ିଦେଲେ ବାକି ସବୁବେଳେ ସ୍ଥାନଟିକୁ ଅଧିକାର କରି ରହିଥାଏ ନିସ୍ତବ୍ଧ ନୀରବ ବାତାବରଣ ।

ପୂଜାଛୁଟି ପରେ ସ୍କୁଲ କଲେଜ ଖୋଲିଗଲାଣି । କାର୍ତ୍ତିକ ମାସର ଆରମ୍ଭ । ବାପା ଆଉ ସାନଭାଇ ସତୀ ଦଶଟାବେଳୁ ଘରୁ ଖାଇପିଇ ଗଲେଣି । ସେମାନେ ଯିବାପରେ ଆଉ ଥରେ ମୁଣ୍ଡ ଧୋଇ ଗାଧୋଇପଡ଼ି ନିଜ ହାତରେ ହବିଷଭାତ ମୁଠାଏ ରାନ୍ଧି, ପୂଜା ସାରି ଖାଇବାକୁ ବସିଛି ସ୍ନିତା । କଦଳୀପତ୍ର ଖଣ୍ଡିକ ଉପରେ ହବିଷଭାତ ଆଉ ଗୋଟା-ମୁଗଡାଲି ମେଞ୍ଚାକ ଗୁଡାହୋଇଛି । ପାଖରେ ପାଚିଲା କଦଳୀଟାଏ । ସେ ପତ୍ରକୁ ଚାହିଁଲା-କ୍ଷଣି ଆଜି କାହିଁକି ତାର କୋହ ଉଚ୍ଛୁଳି ଉଠୁଥିଲା । ଥରକୁଥର ଖାଇବାକୁ ଚେଷ୍ଟାକରି ମଧ୍ୟ ମୁହଁକୁ ଭାତଗୁଣ୍ଡାଟି ନେଇପାରୁନଥିଲା ସେ । ବାଧା ନ ମାନି ଆଖିରୁ ଝରିଯାଉଥିଲା ଧାର ଧାର ଲୁହ । କୁଆଡେ କେହି ନାହାନ୍ତି । ଖରାବେଳର ନିର୍ଜନତା ଯେପରି ଖାଁ ଖାଁ ହୋଇ ଖାଇଗୋଡାଉଛି । ତେଣେ ପରସ୍ତରକାଟି ଦାଣ୍ଡ ବାରଣ୍ଡାରେ ବସୁ ବସୁ ଶୋଇ-ପଡ଼ିଛି । ଏକୁଟିଆ ପତ୍ରଟା ପାଖରେ ବସି ସ୍ନିତା ନିଜକୁ ନିଜେ ସାନ୍ତ୍ୱନାଦେବାକୁ ଚାହିଁଲା । ଚେଷ୍ଟାକଲା ମନକୁ ଦୃଢ଼ କରିବାକୁ । କୌଣସିମତେ ପ୍ରଥମ ଭାତଗୁଣ୍ଡାଟି ମୁହଁରେ ପୂରାଇ ଦ୍ୱିତୀୟ ଗୁଣ୍ଡାଟାକୁ ଟେକି ଧରିଛି ଯେ, ହଠାତ୍ କୋତାର ମଚ୍ ମଚ୍ ଶବ୍ଦ ଶୁଭିଲା । ସତୀ ଏତେ ଚଞ୍ଚଳ ଚାଲିଆସିଲା ସ୍କୁଲରୁ... ? ଭାବି ଆଶ୍ଚର୍ଯ୍ୟ ହୋଇ ମୁହଁ ଟେକି ଚାହିଁଲା ସ୍ନିତା । ଆଗରେ ଯାହାକୁ ଦେଖିଲା ତାଙ୍କୁ ଦେଖିପକାଇ ନିହାତି ଲଜ୍ଜିତ ହୋଇପଡ଼ିଲା ସେ । ଦୁଆରବନ୍ଧର ସେପଟେ ଜଣେ ଅପରିଚିତା ଠିଆହୋଇଛନ୍ତି । ବେଶ-ଭୂଷା ଓ ଦେହର ବର୍ଣ୍ଣ ପ୍ରଭୃତିରୁ ପରିଷ୍କାର ଜଣାପଡୁଛି ଯେ ସେ ଜଣେ ଖାଣ୍ଟି ୟୁରୋପିୟାନ ଭଦ୍ରମହିଳା ।

ଏ ଅଭାବିତ ଘଟଣା ଦେଖି ସ୍ନିତା ସ୍ତମ୍ଭିତ ହୋଇଯାଇଥିଲା । ତାର ସେ ଅବସ୍ଥା ଦେଖି ଆଗନ୍ତୁକ ମହିଳା ଜଣକ ଟିକିଏ ହସି ବିଶୁଦ୍ଧ ଓଡ଼ିଆରେ କହିଲେ, "ଖାଇନିଅ... ହେଇଟି ଏଇଠି ତ ଚଉକିଟେ ପଡ଼ିଛି ମୁଁ ବସିଯିବି ଯେ..." କହୁ କହୁ ଚଉକିଟିକୁ ଟାଣି-ଆଣି ବସିପଡ଼ିଲେ ସେ ।

ଆଉ ଖାଇବା କଥା ଶୁଣିଲାକ୍ଷଣି ମନକୁ ମନ ଚମକିପଡ଼ିଲା ସ୍ନିତା—ସେ ଆଉ ଖାଇପାରିବନି, କାରଣ ମ୍ଲେଚ୍ଛର ଛୁଇଁ ପଡ଼ିଛି । ବ୍ରାହ୍ମଣଘର ବିଧବାପକ୍ଷରେ ସେଇଟା ଗୋଟାଏ ପ୍ରଧାନ କାରଣ । ହାତରେ ଭାତଗୁଣ୍ଡାଟାକୁ ପତ୍ର ଉପରେ ଥୋଇଦେଲା ସେ । ଆଜି ସାରାଦିନ ଉପବାସରେ କଟାଇବାକୁ ପଡ଼ିବ ତାକୁ । ସେ କଥାଟା ଅବଶ୍ୟ ସେମିତି ବେଶି କିଛି ଗୁରୁତର ନୁହେଁ—ହେଲେ ଏଇଲେ ଉଠିପଡ଼ିବ କେମିତି ? ଭଦ୍ରମହିଳା-

ଜଣକ ଭାବିବେ କଣ? ଏଇକ୍ଷଣି ତାର ଏ ବିଚିତ୍ର ଘାତବତା ଦେଖି ମନେ ମନେ ହସୁଥିବେ। ନିଜ ପାଦ ଆଡ଼କୁ ଚାହିଁ ଲାଜରେ ମାଟି ସଙ୍ଗେ ମିଶିଯିବାକୁ ଇଚ୍ଛାହେଲା ତାର।

"ଖାଇନାଅ ନା ଝିଅ, ତମକୁ ଯଦି ଲାଜ ମାଡୁଛି, ତାହେଲେ ମୁଁ ବାରଣ୍ଡାକୁ ଯାଇ ଅପେକ୍ଷା କରିଥିବି।"

ସଙ୍କୋଚରେ ଏଥରକ ମୁହଁ ଉଠାଇଲାନି ଶୁଚିସ୍ମିତା। ଅପରିଚିତ କଣ୍ଠସ୍ୱର ପରିସ୍ଥିତିକାର ଆଗ୍ରମପ୍ରଦ ଉଦାହରଣରେ ବ୍ୟାଘାତ କରିଥିବି ନିଶ୍ଚୟ। ଘର ଭିତରକୁ ପଶିଆସି ଅଚଥିକୁ ଦେଖି ସେ ମଧ୍ୟ କାଠପାଲଟିଗଲା ଯେମିତି। ସାହେବ ପାଦ୍ରୀଙ୍କ ମେମ୍ ସ୍ତ୍ରୀ ଯେ କସ୍ମିନ୍‌କାଳେ ଏହିପରି ଚାଲିଆସିପାରନ୍ତି, ତାହା ତାର ଧାରଣାତୀତ। ଯାହାହେଉ କିଛି ସମୟ ଭିତରେ ନିଜକୁ ଠିକ୍ କରିନେଇ, ପୁଣି ଯେତେବେଳେ ମେମ୍‌ସାହେବ ନାମାଙ୍କୁ ଖାଇବାକୁ ଅନୁରୋଧ କଲେ, ତରତରରେ ସେ ପରିଷ୍କାର ରୂପେ କଥାଟି ବୁଝାଇଦେଲା—ସ୍ମିତା ଆଜି ଖାଇପାରିବନି, ଭାତ ତାର ମାରି ହୋଇଯାଇଛି—ବ୍ରାହ୍ମଣଘର ବିଧବାକୁ ଏସବୁ ନିୟମ ମାନିବାକୁ ପଡେ ଇତ୍ୟାଦି।

ତା କଥା ଶୁଣି ଆଶ୍ଚର୍ଯ୍ୟ ଆଉ ବ୍ୟଥିତ ହୋଇପଡ଼ିଲେ ଆଗନ୍ତୁକ ଜଣକ। ବର୍ତ୍ତମାନ ଲଜ୍ଜିତ ହେବାର ପାଳି ତାଙ୍କର। ଏତେବେଳକୁ ଯାଇ ସେ ଲକ୍ଷ୍ୟ କଲେ ସ୍ମିତାର ପରିଧାନରେ ଧଳା ଥାନ ଲୁଗା ଖଣ୍ଡେ, ଦେହ ତାର ନିରାଭରଣ।

ଏ ସୁଯୋଗରେ ସ୍ମିତା ଚେଷ୍ଟାକରି କୌଣସିମତେ ଉଠିପଡ଼ିଲା ପତ୍ର ପାଖରୁ। ତରତରରେ ବାରଣ୍ଡାରେ ହାତମୁହଁ ଧୋଇ ଫେରିଆସିଲାକ୍ଷଣି ବିଦେଶିନୀ ମହିଳା ଜଣକ କହିଉଠିଲେ, "ଇସ୍, ମୋରି ପାଇଁ ଆଜି ଉପବାସରେ ରହିବାକୁ ପଡ଼ିବ ତମକୁ!"

ଏତେବେଳକୁ ତାଙ୍କର ସରଳ କଥାବାର୍ତ୍ତା ଶୁଣି ଟିକିଏ ଭରସିଯା'ଇଥିଲା ସ୍ମିତା। ସେଥିପାଇଁ ଉତ୍ତର ଦେଲା ଏଥର, "ନା, ନା, ସେଥିରେ କିଛି ଯାଏଆସେନି...ମୁଁ ପ୍ରାୟ ଖାଇସାରିଥିଲି ଯେ...." ଏ ଅଶ୍ୱସ୍ତିକର ପରିସ୍ଥିତିରୁ ତାହାଙ୍କୁ ରକ୍ଷା କରିବାକୁ ଯେ ବାଧ୍ୟହୋଇ ମିଛ କହିଲା। ତାପରେ ଡାକିନେଇ ତାଙ୍କୁ ବସାଇଲା ବାପାଙ୍କ ସୁସଜ୍ଜିତ ବୈଠକଖାନାରେ। ଏତେବେଳେ ଯାଇ ସେ ତାଙ୍କୁ ଭଲରୂପେ ଲକ୍ଷ୍ୟ କରିପାରିଲା। ବୟସ ପ୍ରୌଢ଼ତ୍ୱର ଶେଷସୀମାରେ ପହଞ୍ଚିଲାଣି। ଶୁଭ୍ର ଦେହଟି ଉପରେ କୁଞ୍ଚନର ରେଖା କେତେକ ଜାଗାରେ ସ୍ପଷ୍ଟ ହୋଇଯାଇଛି। ରଜତଶୁଭ୍ର କେଶଜାଲର ମଝିମଝିରେ ଏପର୍ଯ୍ୟନ୍ତ ଏଠି ସେଠି କୃଷ୍ଣତାର ଆଭାସ ମିଳୁଛି। ଦୁଇଟି ନୀଳାଭ ଚକ୍ଷୁତାରକା। ଦେହଟିରେ ବୟସ ନିଜର ଛାପ ପକାଇଥିଲେ ବି ପରାଜୟ ସ୍ୱୀକାର କରିଛି ସେଇ ମୁହଁଟିରେ। ସବୁବେଳେ ଯେପରି ହସଖୁସି ଲାଗିରହିଛି ସେ ମୁହଁରେ। ଆଖି ଦୁଇଟିରେ ସ୍ନେହବୋଳା ପ୍ରଶାନ୍ତ ଦୃଷ୍ଟି। ଶ୍ରେଷ୍ଠ ଶିଶୁର ସରଳତା ଆଉ ପ୍ରଗଲ୍‌ଭତା ଉଭୟ ମିଶି

ରହିଛି କଥାବାର୍ତ୍ତାରେ, ଭାବଭଙ୍ଗୀରେ । ସାଧାରଣତଃ ଗୋରାଲୋକେ ଯେଉଁଭଳି ବ୍ୟବହାର କରଆନ୍ତି, ତାହା ଅଜଣା ନଥିଲା ସ୍ମିତାର । କିନ୍ତୁ ଏହି ବିଦେଶିନୀଙ୍କଠାରେ ସେ ନଅଁମର ଏ ଅଦ୍ଭୁତ ବ୍ୟତିକ୍ରମ ଦେଖି ବେଳକୁବେଳ ସେ ବେଶି ବିସ୍ମିତ ହୋଇପଡୁଥିଲା । ପ୍ରଥମେ ତାଙ୍କର ପ୍ରତ୍ୟେକ ପ୍ରଶ୍ନର ଉତ୍ତର କେବଳ ଦେଇଗଲା ସେ । ଅନେକ ସମୟ ପରେ ଅତି କୁଣ୍ଠିତହୋଇ ଯେତେବେଳେ ସେ ତାଙ୍କ ଦେଶ ବିଷୟରେ ପଚାରିଲା ସେ ଏକ-ପ୍ରକାର ନିରାଡ଼ମ୍ବର ହସ ହସି ନିଜର ପରିଚୟ ଦେଲେ ସେ । କଥାଗୁଡ଼ିକ ଯେମିତି ଆଶ୍ଚର୍ଯ୍ୟଜନକ, ସେ ପରିଚୟ ବି ସେହିପରି ଆଶ୍ଚର୍ଯ୍ୟଜନକ ବୋଲି ମନେହେଲା ସ୍ମିତାର । ତିନୋଟି ପୁତ୍ରସନ୍ତାନର ଜନନୀ ସେ । ସମସ୍ତେ ବର୍ତ୍ତମାନ ବିଦେଶରେ ରହି ପଢୁଛନ୍ତି । ସ୍ୱାମୀ ତାଙ୍କର ଜଣେ ଖ୍ରୀଷ୍ଟଧର୍ମ ପ୍ରଚାରକ; କିନ୍ତୁ ଜର୍ଜିଆନାଙ୍କର କୌଣସି ଧର୍ମରେ ବିଶ୍ୱାସ ନାହିଁ । ତାଙ୍କ ଦେଶ ହେଉଛି ମାଟିର ଏ ପୃଥିବୀ ଆଉ ତାଙ୍କ ଜାତି ହେଉଛି ମନୁଷ୍ୟ—ଏତିକି ତାଙ୍କର ଏକମାତ୍ର ପରିଚୟ । ଭଗବାନଙ୍କ ପ୍ରତି ଅଟଳ ବିଶ୍ୱାସ ରହିଛି । ହେଲେ ତାଙ୍କର ଭଗବାନ ଖ୍ରୀଷ୍ଟ ନୁହନ୍ତି କି କୃଷ୍ଣ ନୁହନ୍ତି, ସେ ହେଉଛନ୍ତି ଏକ ଅଦ୍ଭୁତ ଶକ୍ତି । ନିଜର ସମସ୍ତ ଶକ୍ତି ଯେତେବେଳେ ହରାଇଦିଏ ମଣିଷ, ଏହି ଦୈବୀଶକ୍ତି ବଳରେ ଆଉଥରେ ବଳୀୟାନ୍ ହୋଇଉଠେ, ଆଉଥରେ ସଂଗ୍ରହ କରିପାରେ ସାହସ । ମାନବସମାଜର କଲ୍ୟାଣ ପାଇଁ ନିଜର ସାରାଜୀବନ ଚେଷ୍ଟା କରିଆସିଛନ୍ତି ଜର୍ଜିଆନା । ଏବେ ବି ବଡ଼-ଡାକ୍ତର ଖାନାକୁ ପ୍ରତିଦିନ ଯାଇ ରୋଗୀମାନଙ୍କର କିଛି ନା କିଛି ପରିଚର୍ଯ୍ୟା କରିଆସନ୍ତି । ଏଠାକାର ହରିଜନବସ୍ତିରେ ସ୍କୁଲଟିଏ ପ୍ରତିଷ୍ଠା କରିଛନ୍ତି ନିଜ ଚେଷ୍ଟାରେ ଏବଂ ପ୍ରତିଦିନ ସନ୍ଧ୍ୟାରେ ସେଠାକୁ ଯାଇ ପଢ଼ାଇଆସନ୍ତି ।

ସେ ଆଶ୍ଚର୍ଯ୍ୟ କଥାଗୁଡ଼ାକ ଶୁଣି ପ୍ରଥମେ ସ୍ମିତାର ମନେହେଲା ଏହି ନାରୀଜଣଙ୍କର ହୁଏତ ମୁଣ୍ଡ ଠିକ୍ ନାହିଁ—ସେ ବୋଧହୁଏ ପାଗଳୀ । କିନ୍ତୁ ମଣିଷ ସମାଜ ପ୍ରତି ତାଙ୍କର ସେହି ନିବିଡ଼ ସ୍ନେହଶ୍ରଦ୍ଧା ଦେଖି ବିସ୍ମୟରେ ହତବାକ୍ ହୋଇପଡ଼ିଲା ସେ । ତା ଜୀବନରେ ଏ ପର୍ଯ୍ୟନ୍ତ ଏ ଧରଣର କୌଣସି କଥା କେବେ ସେ କାହାର ସଙ୍ଗେ ଆଲୋଚନା କରିନି କିମ୍ବା ମନରେ ସୁଦ୍ଧା ଚିନ୍ତା ଭାବିନି । ସ୍କୁଲରେ ପଢିଲାବେଳେ ଥରେ ଅଧେ ବହିରେ ଏ ପ୍ରକାର କେତେଟା କଥା ସେ ଅବଶ୍ୟ ପଢିଥିଲା; କିନ୍ତୁ ପାଠପଢାର ଇତି ହେବା ସଙ୍ଗେ ସଙ୍ଗେ ସେ ସବୁର ବି ଇତିଶ୍ରୀ ହୋଇଯାଇଥିଲା ସେଇଠି ।

ମନଗହ୍ୱରର ଅନ୍ଧକାର ଭିତରେ ହଠାତ୍ କେଉଁଠି ଯେପରି ଗୋଟିଏ ପ୍ରଦୀପ ଜଳି-ଉଠିଛି—ନିଜର, ନିଜ ଗୃହର, ନିଜ ପରିବାରର ଗଣ୍ଡି ଭିତରେ ଯେଉଁ ଚିନ୍ତାଧାରା ସୀମିତ ହୋଇରହିଥିଲା ଏ ପର୍ଯ୍ୟନ୍ତ, ତାହା ଯେପରି ସୀମା ଲଙ୍ଘି ଆସିଛି । ବାହାର ଦୁନିଆ ସାଙ୍ଗରେ ତା ଅନ୍ତରର ଯୋଗସୂତ୍ର ଖଞ୍ଜି ହୋଇଯାଇଛି ଆପେ ଆପେ । ଏ ପୃଥିବୀରେ ଅନେକ କଥା ଭାବିବାର ଅଛି, ଅନେକ କଥା କରିବାର ଅଛି ।

ଏହି ନୂତ... ...ବ ନିଜ ଅନ୍ତରରେ ଅନୁଭବ କରି ରୋମାଞ୍ଚ... ହୋଇଗଲା ସ୍ମିତାର ଦେହ ।

ଜର୍କିଆନା ଯେତେବେଳେ ବିଦାୟ ନେଲେ, ସେତେବେଳକୁ ବେଶ୍ ବନ୍ଧୁତା ହୋଇ-ଯାଇଥିଲା ଦୁହିଁଙ୍କ ଭିତରେ ।

ଶୁଭ ସୂଚନା କି ଅଶୁଭ ସୂଚନା କହିହେବ ନାହିଁ; କିନ୍ତୁ ତା ଜୀବନ ଆକାଶରେ ଏହି ବିଦେଶିନୀ ନାରୀଟି ଶୂନ୍ୟତାରି ପରି ଶୁଭ ସଙ୍କେତ ଦେଇ ଉଦୟହୋଇଛନ୍ତି ବୋଲି ମନେକଲା ନିଜେ ଶୁଚିସ୍ମିତା । ବୃଦ୍ଧା ଜର୍କିଆନାଙ୍କ ସହିତ ରାଜକିଶୋରବାବୁଙ୍କ ପରିବାରର ବେଶ୍ ବନ୍ଧୁତା ଜମିଗଲାଣି । ରାଜୁବାବୁ, ସତୀ, ସ୍ମିତା ସମସ୍ତଙ୍କର ସେ ପ୍ରିୟ ହୋଇଉଠିଲେଣି ଏଥି ଭିତରେ । ତାଙ୍କର ପରିଷ୍କାର ଦୃଷ୍ଟିଭଙ୍ଗୀ, ଉଦାର ମନୋଭାବ, ଦୃଢ଼ ଚରିତ୍ର ସମସ୍ତଙ୍କର ଅଜାଣତରେ ସମସ୍ତଙ୍କୁ ପ୍ରଭାବିତ କରିଚାଲିଥିଲା ।

ସ୍ମିତାକୁ ଦେଖିବାର ପରମୁହୂର୍ତ୍ତଠାରୁ ତାର ସେ ରକ୍ତ ବିଷାଦଭରା ମୂର୍ତ୍ତି ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା ଜର୍କିଆନାଙ୍କ ସଂସ୍କାରପ୍ରିୟ, ପରୋପକାରୀ ମନରେ । ତାର ମରୁଭୂମି ପରି ଶୁଷ୍କ ଜୀବନରେ କିଛିହେଲେ ପରିବର୍ତ୍ତନ ଆଣିଦେବା ପାଇଁ ପ୍ରାଣଟା ତାଙ୍କର ଆକୁଳ ହୋଇଉଠିଲା । କହିବାଟା ଉଚିତ ହେବ କି ନାହିଁ ଭାବୁ ଭାବୁ କିଛି ଦିନ କଟିଗଲା । ହଠାତ୍ ଦିନେ ରାଜୁବାବୁଙ୍କ ସହିତ ଆଲୋଚନାରେ ପ୍ରବୃତ୍ତ ଥିଲାବେଳେ ତାଙ୍କର ଅଜାଣତରେ ହିଁ ମନ ଭିତରର କଥାଟା ବାହାରି ଆସିଲା ମୁହଁ ଦେଇ । ସ୍ମିତାର ଭବିଷ୍ୟତ କଣ ହେବ ? ଏକାନ୍ତ ନିର୍ଭରଶୀଳ ଏହି ଅସହାୟା ଝିଅଟିର ଭବିଷ୍ୟତ୍ କଣ ହେବ, ସେ କଥା କେବେ କଣ ରାଜୁବାବୁ ଚିନ୍ତା କରି ଦେଖିଛନ୍ତି ? ଅନିଶ୍ଚିତ ଭବିଷ୍ୟତ ପାଇଁ ତାକୁ ପ୍ରସ୍ତୁତ କରି ରଖିବାକୁହେଲେ ପୁଣି ପାଠ ପଢ଼ାଇବା ଦରକାର । ଆଉ ଥରେ ପଢ଼ା ଆରମ୍ଭ କରୁ ସେ—ପ୍ରସ୍ତାବ କଲେ ସେ ।

ପ୍ରସ୍ତାବଟା ଶୁଣିଲାକ୍ଷଣି ପ୍ରବଳ ବେଗରେ ମୁଣ୍ଡ ହଲାଇ ରାଜ୍‌ବାବୁ ଆପତ୍ତି କରିଉଠି-ଥିଲେ । "ନା ନା, ମିସେସ୍ ହେଓ୍ୱାର୍ଥ, ସେ କଥା ଅସମ୍ଭବ । ତା ଜୀବନରେ ସେ ସବୁର ପ୍ରୟୋଜନ ସରିଯାଇଛି । ଆଉ ସେ ସବୁ ନୀତିନିୟମ ବିରୁଦ୍ଧ କଥାଗୁଡ଼ାକୁ ପ୍ରଶ୍ରୟ ଦେଇ ଅଧିକ ଲାଭଟା ବା କଣ ହେବ ?"

"ଯଥେଷ୍ଟ ଲାଭହେବ ବୋଲି ମୋର ମନେହୁଏ ।" ଶାନ୍ତକଣ୍ଠରେ କହିଲେ ଜର୍କିଆନା । ଆତ୍ମ ନିର୍ଭରଶୀଳ ହେବାକୁ ଶିଖିବ ସେ ଆଉ ତା ଭବିଷ୍ୟତର ନିରାପତ୍ତା ବିଷୟରେ ଆମେ ନିଶ୍ଚିତ ହୋଇପାରିବା । ତା ଛଡ଼ା ତାର ଏ ନିଃସ୍ୱ, ବଞ୍ଚିତ

ଜୀବନରେ ପାଠପଢ଼ା କଚ୍ଛହେଲେ ଆନନ୍ଦ ଆଣିଦେଇପାରିବ ତ ! ଆପଣ ମନୋନିରଞ୍ଜନ ଗଜ୍‌ବାବୁ... ତାର ପାଠପଢ଼ାର ସମସ୍ତ ଦାୟିତ୍ୱ ନେବାକୁ ମୁଁ ପ୍ରସ୍ତୁତ ଅଛୁ । ଓଃ ! ଝିଅଟାକୁ ଏ ଅବସ୍ଥାରେ ଦେଖିଲାକ୍ଷଣି ମୁଁ ଯେ କେତେ କଷ୍ଟ ଅନୁଭବ କଲି..."

ବୃଦ୍ଧାର ଅକୃତ୍ରିମ ବ୍ୟଥିତ କଣ୍ଠସ୍ୱର ଶୁଣି ରାଜୁବାବୁ ସାଙ୍ଗେ ସାଙ୍ଗେ କିଛି କହି-ପାରିଲେନି ।

ତାଙ୍କର ସେ ନୀରବତା ଜର୍ଜିଆନାଙ୍କୁ ବହୁତ ଉତ୍ସାହ ଦେଲା । ବହୁତ ପ୍ରକାର ଯୁକ୍ତି ବାଢିବସିଲେ ସେ । ନୀରବରେ ବସି ରାଜୁବାବୁ କେବଳ ଶୁଣିଗଲେ ଶେଷପର୍ଯ୍ୟନ୍ତ । ତାପରେ କେତେବେଳେ ଜର୍ଜିଆନା ବିଦାୟ ନେଇ ଚାଲିଯାଇଛନ୍ତି ସେକଥା ତାଙ୍କର ଖିଆଲ ହେଇନି । ଗମ୍ଭୀର ଚିନ୍ତାରେ ବୁଡ଼ିରହି ସେ ଖାଲି ଭାବିଚାଲିଛନ୍ତି ନ୍ୟାୟ ଅନ୍ୟାୟ । ହୁଏତ ସାମାଜିକ ନିୟମ ନିଷ୍ଠାର ଶୃଙ୍ଖଳକୁ ଭାଙ୍ଗି ଦେଲେ ସ୍ମିତାର ଉପକାର ହେବା ବଦଳରେ ବରଂ ଅପକାର କରିବସିବେ ସେ । ଜର୍ଜିଆନାଙ୍କ ପ୍ରସ୍ତାବ ରାଜକିଶୋରବାବୁଙ୍କୁ ଏତେ ବିଚଳିତ କରିପକାଇଥିଲା ଯେ ରାତିରେ ଶୋଇବାକୁ ଗଲାବେଳକୁ ପୁଣି ସେହିସବୁ ଚିନ୍ତା ତାଙ୍କୁ ଗ୍ରାସକଲା । ସ୍ମିତାର ଭବିଷ୍ୟତ ନେଇ ଜର୍ଜିଆନା ବୁଢ଼ୀଙ୍କର ସେହିସବୁ ଯୁକ୍ତିଗୁଡ଼ାକ ଗୁଡେଇ ଗୁଡ଼େଇ ମନ ଭିତରେ ଖେଳିବାକୁ ଲାଗିଲା...ସତରେ ଯଦି ଏଇକ୍ଷଣି ତାଙ୍କର ହଠାତ୍ ମୃତ୍ୟୁ ଘଟେ, ତାହେଲେ ସ୍ମିତାର ଅବସ୍ଥା କଣ ହେବ ? ରମେଶବାବୁ ବଞ୍ଚିଥିବା-ଯାକ ମଝିରେ ମଝିରେ ଚିଠି ଖଣ୍ଡେ ଖଣ୍ଡେ ଦେଇ ସ୍ମିତାର ଖବର ନେଉଥିଲେ, ତାଙ୍କର ମୃତ୍ୟୁହେଲାପରଠାରୁ ସ୍ମିତାର ସେପଟର ଆତ୍ମୀୟମାନେ ଏକାବେଳେ ନୀରବ ହୋଇ-ଯାଇଛନ୍ତି । ଆଉ ଏପଟର ନିକଟ ଆତ୍ମୀୟ ବୋଲି କେହି ବି ନାହାନ୍ତି ପିଲାଦୁହିଁଙ୍କର । ଅକୂଳ ସମୁଦ୍ରରେ ଖଣ୍ଡିଏ ମାତ୍ର କାଠକୁ ସମ୍ବଳ କରି ଭାସିଲା ପରି ଦୁହେଁ ବଞ୍ଚିରହିଛନ୍ତି କେବଳ ତାଙ୍କୁ ହିଁ ସମ୍ବଳ କରି । ତାଙ୍କର ଯଦି କିଛି ହୋଇଯାଏ ? ଭୟରେ ଶିହରି ଉଠିଲେ ସେ । ମୃତ୍ୟୁଟା କିଛିମାତ୍ର ବିଚିତ୍ର ନୁହେଁ । ଯେ କୌଣସି ମୁହୂର୍ତ୍ତରେ ସେ ଶିକାର କରିଦେଇପାରିବ ମଣିଷକୁ । ତାଙ୍କଠୁ ସାତସାନ ହୋଇ ମହେଶ ଚାଲିଗଲା, ସୁଜାତା ଗଲେ, ସେ ବି ଚାଲିଯାଇପାରନ୍ତି...ସେଥିରେ ଅସମ୍ଭାବନା କଣ ଅଛି ? ସ୍ମିତା ଆଉ ସତୀ ଚଳିବେ କିମିତି? ସତୀ ଯୋଗ୍ୟ ହେଉ ହେଉ ଆହୁରି ବାରବର୍ଷ ଚାଲିଯିବ । ତାଙ୍କ ଅବର୍ତ୍ତମାନରେ ଦୁହେଁଯାକ ତିଷ୍ଠିହେବେ କେଉଁଠି ? ଅର୍ଥପାଇଁ କୌଣସି ଚିନ୍ତା ନାହିଁ, କାରଣ ସେ ସେମାନଙ୍କ ପାଇଁ ଯଥେଷ୍ଟ ଅର୍ଥ ସଞ୍ଚୟ କରି ରଖିଯାଇଛନ୍ତି; କିନ୍ତୁ ଦୁନିଆରେ ମଣିଷପରି ବଞ୍ଚିବାକୁ ହେଲେ ଟଙ୍କା ଯିମିତି ଦରକାର, ଦରକାର ସିମିତି ମନର ବଳ, ନିଜକୁ ନିଜେ ରକ୍ଷା କରିପାରିବା-ଭଳି ଦମ୍ଭ ଓ ସାହାଯ୍ୟକାରୀ । ତା' ନହେଲେ ଏ ଅନ୍ୟାୟ, ଅସତ୍ୟ ଓ ଠକାମିଭରା ଦୁନିଆର ଭଉଁରିରେ ପଡ଼ି ମଣିଷ ତଳେଇଯିବ କେଉଁ ଅତଳଗର୍ଭରେ । ....ତାଙ୍କର ଅବର୍ତ୍ତମାନରେ

ସ୍ମିତାକୁ ଏକୁଟିଆ ଚାଲିବାକୁ ପଡ଼ିବ, ତାକୁ ନିଜକୁ ନିଜର ଆଶ୍ରୟଦାତ୍ରୀ ହେବାକୁ ପଡ଼ିବ, ଦୁନିଆର ସମସ୍ତ ବିପଦରୁ ନିଜକୁ ବଞ୍ଚେଇ ରଖିବାକୁ ପଡ଼ିବ, ନିଜେ ସେ ଚାଲିବ, ସତୀକୁ ମଣିଷ କରିବ—ଯାହାକି ତା ପକ୍ଷରେ ନିହାତି ଅସମ୍ଭବ । ଗତ ସାତ ଆଠ ବର୍ଷ ହେଲା ଖାଲି ବଦଳି ହେଇଯିବା ସମୟଗୁଡିକ ଛଡ଼ା ଆଉ ଦିନଟେ ସୁଦ୍ଧା ଦାଣ୍ଡକୁ ବାହାରିନି ସେ । ତାଙ୍କରି ଆଶ୍ରୟତଳେ ଘରକୋଣରେ ନିଜକୁ ଆବଦ୍ଧ ରଖି ଦୁନିଆ-ଦୃଷ୍ଟିର-ଅନ୍ତରାଳରେ ଏ ପର୍ଯ୍ୟନ୍ତ ରହିଆସିଛି । ହଠାତ୍ ତାକୁ ଯଦି ସବୁ ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିବ, ଅବସ୍ଥା ସେ ସମ୍ଭାଳିବ କିପରି ? ତାଙ୍କ ବିନା ଅନ୍ଧ ଭଳି ନିହାତି ଅସହାୟ ହୋଇପଡ଼ିବ ସେ । ନା, ଜର୍ଜିଆନା ଯାହା କହୁଛନ୍ତି ତାହା ଏକାବେଳକେ ଠିକ୍ । ଏକଥା ଆହୁରି ଅନେକ ଆଗରୁ ତାଙ୍କର ଭାବିବା ଉଚିତ ଥିଲା । ସ୍ମିତାକୁ ମଣିଷ ଭଳି ଠିଆକରାଇବାକୁ ପଡିବ, ତାକୁ ସେଇ ଦମ୍ଭ ଶିଖାଇବାକୁ ପଡ଼ିବ, ଯାହା ବଳରେ କି ରାଜୁବାବୁଙ୍କ ଅବର୍ତ୍ତମାନରେ ବି ସେ ଅବସ୍ଥା ସମ୍ଭାଳି ଚାଲିପାରିବ—ଅବସ୍ଥାଚକ୍ରର ଆବର୍ତ୍ତନରେ ପଡ଼ି ଆଉ ତଳେଇଯିବନି । ଜର୍ଜିଆନାଙ୍କ କଥା ଠିକ୍—ପାଠ ପଢିବାରେ ପାପ କଣ ? ବରଂ ସତ୍‌ଶିକ୍ଷା ଲାଭ କଲେ ତା ପକ୍ଷରେ ବେଶି ମଙ୍ଗଳଜନକ ହେବ । ଏଇ ନିଃସ୍ୱ, ବ୍ୟର୍ଥ ଜୀବନରେ କିଛି ହେଲେ ସାନ୍ତ୍ୱନା ପାଇବ ତ···ଦୁଃଖକଷ୍ଟଭରା ନିଃସଙ୍ଗ ଭବିଷ୍ୟତ୍ ପାଇଁ କିଛିହେଲେ ପାଥେୟ ପାଇବ । ନା,ବୃଦ୍ଧା ଜର୍ଜିଆନାଙ୍କ ଯୁକ୍ତିଗୁଡ଼ିକ ଏକାବେଳକେ ଠିକ୍ ।

ସାରାରାତିଟା ରାଜୁବାବୁଙ୍କର କଟିଗଲା ଅନିଦ୍ରା ରହି । ଆରଦିନ ସନ୍ଧ୍ୟାରେ ଯେତେବେଳେ ଜର୍ଜିଆନା ଆସି ପହଞ୍ଚିଲେ, ସେ କିଛି ପଚାରିବା ପୂର୍ବରୁ ସ୍ମିତାର ପାଠପଢ଼ା ବିଷୟରେ ନିଜର ସମ୍ମତି ପ୍ରଦାନ କଲେ । କଥାଟା ଶୁଣିଲାକ୍ଷଣି କ୍ଷୁଦ୍ର ଶିଶୁଟିଏ ପରି ଆନନ୍ଦରେ ଉଚ୍ଛ୍ୱସିତ ହୋଇଉଠିଲା ଶୁଚିସ୍ମିତା । ତାର ଏ ଅଲୋଡ଼ା ଜୀବନରେ ଆଉ ଥରେ ଯେ କେବେ ଆନନ୍ଦ ଦେଖାଦେବ, ସେକଥା ତାର କଳ୍ପନାତୀତ ଥିଲା । ତାକୁ ମୃତପ୍ରାୟ କରିଦେଇଥିଲା ବ୍ୟର୍ଥଜୀବନର ଅଖଣ୍ଡ ଅବସର । ପ୍ରତିମୁହୂର୍ତ୍ତର ସେଇ ଏକା ଚିନ୍ତାସବୁ, ବୁକୁ ଭିତରର ସେଇ ହାହାକାର ଗୋଟାଏ ନିର୍ଜୀବ ଜଡ଼ ପଦାର୍ଥରେ ପରିଣତ କରିଦେଇଥିଲା ତାକୁ । କରିବାକୁ ହାତରେ ନୂଆ କାମ କିଛି ନାହିଁ—ମନରେ ଭାବିବାକୁ ନୂଆକଥା କିଛି ନାହିଁ । ଖାଲି ଅତୀତର ସେହିସବୁ ଅନ୍ତର୍ଦାହୀ ପୁରୁଣା ସ୍ମୃତି ଛଡ଼ା ଆଉ କିଛି ସମ୍ବଳ ନାହିଁ । ଏଇଥିପାଇଁ ଛଟପଟ ହେଉଥିଲା ସେ ପ୍ରତି ମୁହୂର୍ତ୍ତରେ ।

ଆଜି ଜର୍ଜିଆନାଙ୍କର ଏ ନୂଆ ପ୍ରସ୍ତାବ ତାର ମୃତଦେହରେ ଯେପରି ନୂତନ ଜୀବନ ସଞ୍ଚାରିତ କଲା । ଆଃ, ଏଥର ସେ ଇମିତି କିଛି ପାଇବ, ଯେଉଁଥିରେ ପଛର ସେସବୁ କଷ୍ଟଦାୟକ ଘଟଣାକୁ ଭୁଲି ରହିପାରିବ, ଅନ୍ତତଃ କିଛି ସମୟ ପାଇଁ ତ ହେଲେ ଭୁଲିପାରିବ !

ସିଲ୍ଭବସ୍ ଦେଖି ବାପା ସବୁ ବନ୍ଧୁଗୁଡ଼ିକ ଆଣିଦେଲେ । ଅତି ସଙ୍କୋଚରେ ଜର୍ଜିଆନାଙ୍କ ପାଖରେ ପ୍ରଥମ ପଢ଼ା ଆରମ୍ଭ କଲା ସିନ୍ଥିଆ ।

କର୍ମମୟ ଜୀବନ । ଅବସର ନାହିଁ, କିନ୍ତୁ ଅବସାଦ ବି ନାହିଁ । ଦେହରେ ନୂତନ ଶକ୍ତି, ହୃଦୟରେ ନୂତନ ସ୍ପନ୍ଦନ, ମନରେ ନୂତନ ଆଶା ଆଉ ଚକ୍ଷୁରେ ତାର ନୂତନ ଆଲୋକ । ଏ ପୃଥିବୀଟା ସମ୍ପୂର୍ଣ୍ଣ ନୂଆକରି ଆଉଥରେ ଗଢ଼ାହେଲା ଯେପରି—କେବଳ ତାରି ପାଇଁ, ତାର ଆଖି ଆଗରେ । ଦେହରେ ସେଇ ଆସମାନିକନାର ବ୍ଲାଉଜ ଓ ଲୁଗା । ବାଳଗୁଡ଼ାକ ଅଧିକାଂଶ ସମୟରେ ସେହିପରି ଅଯତ୍ନରେ ପଡ଼ିଥାଏ ଏପଟେ ସେପଟେ, ହେଲେ ସର୍ବାଙ୍ଗରେ ଯେପରି ଭରିଯାଇଚ୍ଛି ପ୍ରାଣର ପ୍ରାଚୁର୍ଯ୍ୟ, କିନ୍ତୁ ତଟିନୀର ଗୃଙ୍ଖଳା ତାକୁ କିହିହେବନି, ସାଗରର ଗଭୀରତମ ପ୍ରଦେଶ ଭଳି ପ୍ରଶାନ୍ତ ଆଉ ଗାମ୍ଭୀର୍ଯ୍ୟରେ ଢଳ ଢଳ ସେ ।

ସମୟ କୁଆଡୁ ଆସି ପୁଣି କେଉଁପରି କଟିଯାଏ, ତା ଆଦୌ ଜାଣିପାରେନି ସିନ୍ଥିଆ । ଅନେକ ବର୍ଷ ହେଲା ପଢ଼ା ଛାଡ଼ିଦେଇଥିବାରୁ ପୁଣି ଛାତ୍ରଜୀବନ ସହିତ ଯୋଗସୂତ୍ର ସ୍ଥାପନ କଲାବେଳକୁ କମ୍ କଷ୍ଟକର ହୋଇନଥିଲା । ତେବେ ଜର୍ଜିଆନାଙ୍କ ଅପୂର୍ବ ଧୈର୍ଯ୍ୟ ଆଉ ଆଗ୍ରହ ବଳରେ ଶେଷରେ ସଫଳ ହେଲା ସିନ୍ଥିଆ । ତାଙ୍କରି ନିର୍ଦ୍ଦେଶ ଅନୁସାରେ ଗଣିତ, ସଂସ୍କୃତ ଓ ତର୍କଶାସ୍ତ୍ର ନେଇଥିଲା ସେ । ଭାରତୀୟ ସାହିତ୍ୟରେ ତାଙ୍କର ଗଭୀର ନିପୁଣତା ଆଉ ପାଣ୍ଡିତ୍ୟ ଦେଖି ନିଜେ ରାଜକିଶୋରବାବୁ ବି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଜର୍ଜିଆନାଙ୍କ ସ୍ୱାମୀ ଆର୍ଥର ବି ଜଣେ ପଣ୍ଡିତ ଓ ବେଶ୍ ନିରୀହ ଭଦ୍ରଲୋକ । ତେବେ ସ୍ତ୍ରୀଙ୍କ ପରି ସେ ଏତେ ମେଳାପୀ ନଥିଲେ । ଓଡ଼ିଶା ରେଡ୍‌କ୍ରସ ଅନୁଷ୍ଠାନର ଜଣେ ପରିଚାଳିକା ଥିଲେ ଜର୍ଜିଆନା । ପାଠପଢ଼ାଟା ବିରକ୍ତିକର ନ ହେବା ପାଇଁ ସିନ୍ଥିଆ ଯେତେବେଳେ ଟିକିଏ ଅବସର ନେଉଥିଲା, ଅନାଥ ଓ ଦୁଃସ୍ଥ ଶିଶୁମାନଙ୍କ ପାଇଁ ଜାମାପଟା ନିଜ ହାତରେ ତିଆରିକରି ଜର୍ଜିଆନାଙ୍କ ଜରିଆରେ ରେଡକ୍ରସ୍ ଅନୁଷ୍ଠାନକୁ ପଠାଇଦେଉ-ଥିଲା । ଏଭଳି ସବୁ କାମ କରିବାରେ, ଏପ୍ରକାର କଥାସବୁ ତାର ଶିକ୍ଷାଦାତ୍ରୀଙ୍କ ମୁହଁରୁ ଶୁଣିବାରେ ସେ ଏତେ ଆନନ୍ଦିତ ହେଉଥିଲା ଯାହାକି ଭାଷାରେ ଅବର୍ଣ୍ଣନୀୟ । ତାର ବି ଇଚ୍ଛା ହେଉଥିଲା ଯେ ଯାଇ ସ୍ୱେଚ୍ଛାସେବିକା ରୂପେ ରୋଗୀଙ୍କ ସେବା କରିଆସନ୍ତା, ନହେଲେ ଅନୁନ୍ନତ ଜାତିର ପିଲାଙ୍କୁ ଆଉଁ ପାଠପଢାନ୍ତା—ତାର ଏ ଅଲୋଡ଼ା ଜୀବନକୁ ନିୟୋଜିତ କରନ୍ତା ମାନବସମାଜର କଲ୍ୟାଣ ପାଇଁ । କିନ୍ତୁ ନିଜର ଏ ଇଚ୍ଛା ମୁହଁରେ ପ୍ରକାଶକରିବା ଦୂରେ ଥାଉ, ଏକାକୀ ବସିଥିଲାବେଳେ ଏକଥା ଭାବିଲାକ୍ଷଣି ଲାଜରେ ତା

ମୁହଁଟା ନିଲ୍ ହୋଇଯାଉଥିଲା । ଯେଉଁ ସମାଜ ଭିତରେ—ଯେଉଁ ପରିବେଷ୍ଟନୀ ଭିତରେ ସେ ବଢ଼ିଆସିଛି, ସେଥିରୁ ବାହାର ଏସବୁ କରିବାର ଅଧିକାର ତାର ନାହିଁ, କଲେ ବି ତାହା ନିତାନ୍ତ ଅଶୋଭନୀୟ ହୋଇପଡ଼ିବ । ବାପା ଆଦୌ ପସନ୍ଦ କରିବେନି । ତାଛଡ଼ା—ଯେତେ ସଦିଚ୍ଛା ଥିଲେ ବି ବାହାରକୁ ପାଦ କାଢ଼ିଲାକ୍ଷଣି ଲୋକେ ହୁଏତ କହିବେ ତାର କିଛି ନା କିଛି ଦୁରଭିସନ୍ଧି ଅଛି ।

ସମସ୍ତ କେବେ କଣ ସ୍ଥିର ହୋଇ ରହିଯାଇଛି ? ନା । କୌଣସି କଥାକୁ କେବେ ଭ୍ରୂକ୍ଷେପ କରିନି ସେ—ବହିଗ୍ଲିଛି ଅବାରିତ ଗତିରେ କେଉଁ ଅନନ୍ତକାଳରୁ । ସିଂ ତାର ନୂଆ ପୃଥିବୀ ଯେପରି ନିତ୍ୟନୂତନ ରୂପ ଧରୁଛି ତା ଆଖିଆଗରେ । ମଣିଷଜୀବନର ଏହି ଦିଗ, ଏହି ଲକ୍ଷ୍ୟ ଆଡ଼କୁ ତାର ଦୃଷ୍ଟି ପଡ଼ିନଥିଲା ଆଦୌ । ଜ୍ଞାନଆହରଣ ଭିତରେ ଯେ ଏତେ ଆନନ୍ଦ ଆଇପାରେ, ତାହା ଧାରଣା କରିପାରିନଥିଲା ସେ । ମଣିଷଜୀବନ କଥା ଭାବିବାକୁ ଗଲାବେଳକୁ ସବୁବେଳେ ସେ ଭାବିଆସିଛି ତାର ନିତ୍ୟନୈମିତ୍ତିକ ପ୍ରୟୋଜନ ସବୁ । ଖାଇବା, ପିଇବା, ପିନ୍ଧିବା ଓ ଫୂର୍ତ୍ତିରେ ଜୀବନ କଟାଇବାଟା ହିଁ ସିମିତ ଏପର୍ଯ୍ୟନ୍ତ ଜୀବନର ପ୍ରକୃତ ପରିଚୟ ରୂପେ ରହିଥିଲା ତା ପାଖରେ । କିନ୍ତୁ ତା'ଠାରୁ ଉନ୍ନତ ଧରଣର ଚିନ୍ତା ବା ପରିକଳ୍ପନା କେବେ ତା ମନରେ ସ୍ଥାନ ପାଇନି । ବର୍ତ୍ତମାନ ମନୁଷ୍ୟର ଚିନ୍ତାଧାରାର ଉନ୍ନତ ସ୍ତରର ସନ୍ଧାନ ପାଇଛି । ଜୀବନର ଏହି ଦିଗଟି ହେଉଛି ନୈସର୍ଗିକ—ଏଥିରେ ସ୍ୱାର୍ଥପରତାର ସନ୍ଧି ସୁଦ୍ଧା ନାହିଁ । ମନୁଷ୍ୟର ସବୁ ପ୍ରକାର କର୍ତ୍ତବ୍ୟ ଭିତରେ ଏଇଟା ବି ହେଉଛି ଗୋଟାଏ ପ୍ରଧାନ କର୍ତ୍ତବ୍ୟ—ସୃଷ୍ଟିର ଉପକାର ପାଇଁ କିଛି ଦେଇଯିବା, ମନୁଷ୍ୟ ସମାଜର କଲ୍ୟାଣ ପାଇଁ ନିଜ ଜୀବନର କିଛି ଅଂଶ ତ୍ୟାଗ କରିଯିବା—ସେ ତ୍ୟାଗ ସାମାନ୍ୟ ହେଲେ ମଧ୍ୟ କେତେ ମହନୀୟ ! ପ୍ରସିଦ୍ଧ ମନୀଷୀମାନଙ୍କର ଉନ୍ନତ ଚିନ୍ତାଧାରା ସହିତ କ୍ରମେ କ୍ରମେ ପରିଚିତ ହେବାକୁ ଲାଗିଲା ସେ । ପାଠ୍ୟ-ପୁସ୍ତକରେ ଶେଲି, ବ୍ରାଉନିଂ, କିଟ୍ସ୍ ପ୍ରଭୃତି ବିଖ୍ୟାତ ଲେଖକମାନଙ୍କର କବିତାଗୁଡ଼ିକ ପଢ଼ୁ ପଢ଼ୁ ଯେପରି ସମ୍ପୂର୍ଣ୍ଣ ଭିନ୍ନ ଗୋଟିଏ ଜଗତକୁ ଗ୍ଲିଯାଉଥିଲା ସେ । ସୁପ୍ରସିଦ୍ଧ ଦାର୍ଶନିକ ବର୍ଟ୍ରେଣ୍ଡ୍ରସେଲଙ୍କର ମନୁଷ୍ୟ-ଜୀବନର ତଥ୍ୟମୂଳକ ରଚନାଗୁଡ଼ିକ ପଢ଼ି ସେ ହୋଇପଡୁଥିଲା ତନ୍ମୟ । ମହାତ୍ମା ଗାନ୍ଧି, ଜବାହରଲାଲ୍, ରବୀନ୍ଦ୍ରନାଥ ପ୍ରଭୃତିଙ୍କ ଲେଖା, ଗଳ୍ପ, ପ୍ରବନ୍ଧ, ଜୀବନୀ—ସବୁଥିରୁ କିଛି କିଛି ପଢ଼ିଯିବାକୁ ନିର୍ଦ୍ଦେଶ ଦେଇଥିଲେ ଜର୍ଜ୍ଜିଆନା । ପାଠାଗାରରୁ ଭଲ ଭଲ ବହି ବାଛି ଆଣିଦେଉଥିଲେ ପଢ଼ିବାପାଇଁ ।

ଜ୍ଞାନର ଯେଉଁ କ୍ଷୁଦ୍ର ଧାପଟିଏ ହଠାତ୍ ଜଳିଉଠିଥିଲା, କ୍ରମଶଃ ତେଜୋସ୍ଥାନ୍ ହୋଇ ଅନ୍ତରର ପରିସରକୁ ଅଧିକରୁ ଅଧିକ ଆଲୋକିତ କରିଗ୍ଲିଥିଲା । ସେ ଦେଢ଼ବର୍ଷତଳର

ସ୍ମିତା ଆଉ ଆଜିର ସ୍ମିତା ଭିତରେ ବହୁତ ପ୍ରଭେଦ । ଦେଢ଼ବର୍ଷତଳର ଗୋଟିଏ ଭୀରୁ ସଦାବିଷଣ୍ଣ ନାରୀ—ଯାହାର ଏ ସଂସାରରେ କିଛିମାତ୍ର ପ୍ରୟୋଜନ ନଥିଲା, ଯାହାଠି କହିବାକୁ ଏ ବୋଲି ଆତ୍ମ-ବିଶ୍ୱାସ କି ବଳ କି କଳ୍ପନା କିଛି ନଥିଲା, ବର୍ତ୍ତମାନ ସେ ସମ୍ପୂର୍ଣ୍ଣ ବଦଳିଯାଇଛି । ବର୍ତ୍ତମାନ ପ୍ରତିଟି କଥାରେ ତାର ଗୁରୁତ୍ୱ ଅଛି, ପ୍ରତିପଦକ୍ଷେପରେ ଫୁଟିଉଠୁଛି ଆତ୍ମପ୍ରତ୍ୟୟ । ଚାଲିଚଳଣି ସବୁଥିରେ ଗୋଟାଏ ବେଶ୍ ସ୍ୱଚ୍ଛନ୍ଦତା । ସେ ଗାମ୍ଭୀର୍ଯ୍ୟ-ମୟୀ ପ୍ରତିମାଟିକୁ ଦେଖିଲେ ବର୍ତ୍ତମାନ ରାଜକିଶୋରବାବୁଙ୍କ ଛାତି ଗର୍ବରେ ଫୁଲିଉଠେ । ସ୍ମିତାର ବୁଦ୍ଧି ଅତି ପ୍ରଖର—ଚମତ୍କାର ତାର ସ୍ମୃତିଶକ୍ତି । ତାର ପ୍ରଶଂସାରେ ସବୁବେଳେ ଉଚ୍ଛ୍ୱସିତ ଜର୍କିଆନା ।

ସେଦିନ ଗ୍ୟ'ଷିଆବେଳେ ହଠାତ୍ ଗୋଟାଏ ଝଡ଼ ଉଠିଗଲା କହିଲେ ଚଳେ—ଆଉ ସେ ଝଡ଼ ସ୍ମିତାକୁହିଁ କେନ୍ଦ୍ରକରି । ରାଜକିଶୋରବାବୁଙ୍କ ପାଖରେ ସ୍ମିତା ଠିଆହୋଇ-ଥିଲା । ତା'ଆଡ଼କୁ ଚାହିଁଦେଇ ଜର୍କିଆନାଙ୍କର ମନେହେଲା ସତେ ଯେପରି ମାର୍ବଲ୍ ପଥରରେ ଖୋଦିତ ହୋଇଥିବା ମୂର୍ତ୍ତିଟିଏ ଠିଆହୋଇ ରହିଛି ! ଗୋରା ତକ୍ ତକ୍ ଦେହ ଉପରେ ଦୁଧ ପରି ଧଳା ଥାନ ଲୁଗାଖଣ୍ଡେ ଆଉ ଧଳା ବ୍ଲାଉଜ୍—ଏହି ଦୃଶ୍ୟଟି ସବୁବେଳେ ଅସହ୍ୟ ବୋଲି ମନେହୋଇଛି ଜର୍କିଆନାଙ୍କର । ଓଃ ! କୁସଂସ୍କାରର ଚରମ ସୀମା ! ସେ ସବୁ ସହିଛନ୍ତି । ତାଙ୍କ ପାଖରେ ପଢିଲା ପରେ ସ୍ମିତା ମୁଣ୍ଡ ଧୋଇ ଗାଧୋଇ ନିଜପାଇଁ ରାନ୍ଧେ, ସବୁପ୍ରକାର ଛୁଆଁଛୁତି ମାନି ଚଳେ, ଏସବୁ ଜାଣିସୁଦ୍ଧା ଦିନେହେଲେ ସେ ବିଷୟରେ ସେ ପଦେ କହିନାହାନ୍ତି: କିନ୍ତୁ ସ୍ମିତାର ବଞ୍ଚିତ ମୂର୍ତ୍ତିଟି ଦେଖିଲାକ୍ଷଣି ଏ କୁସଂସ୍କାର ଅସହ୍ୟ ବୋଲି ମନେହେଉଛି ତାଙ୍କର । କାହିଁକି—ସମାଜର କି ଅଧିକାର ଅଛି, ରାଜୁବାବୁଙ୍କର କି ଅଧିକାର ଅଛି ଝିଅଟିକୁ ଏହିପରି ସବୁଥିରୁ ବଞ୍ଚିତ କରି ରଖିବାକୁ ? ବଡ଼ ଯନ୍ତ୍ରଣା-ଦାୟକ ଦୃଶ୍ୟ ଏ !

ହୁଏତ ତାଙ୍କର କନ୍ୟାସନ୍ତାନହୀନ ଜୀବନର ଏହା ଗୋଟାଏ ମସ୍ତବଡ଼ ଦୁର୍ବଳତା । ସ୍ମିତା ପ୍ରତି ଯେ ତାଙ୍କ ମନ ଭିତରେ ଅସମ୍ଭବ ରକମର ସ୍ନେହ ଓ ମାୟା ଭରିରହିଛି, ଏକଥା ଅସ୍ୱୀକାର କରିହେବ ନାହିଁ । ତାର ଏ ରିକ୍ତତା ସବୁବେଳେ କଣ୍ଟା ଭଳି ବିନ୍ଧୁଛି ଜର୍କିଆନାଙ୍କୁ । ଅନେକ ଥର ଏକଥା କହିବା ପାଇଁ ସେ ବିଚାରିଛନ୍ତି । ପରକ୍ଷଣରେ ଅପରର ଧର୍ମବିଶ୍ୱାସରେ ଅଯଥା ହସ୍ତକ୍ଷେପ ହେବ ଭାବି କହିନାହାନ୍ତି କିଛି । ଆଜି ଆଉ କାହିଁକି କେଜାଣି ନିଜକୁ ସଂଯତ କରିପାରିଲେନି ସେ । କହିଉଠିଲେ, "ସ୍ମିତା ଦେହରେ ଏ ଧଳାଲୁଗା ଦେଖିଲାକ୍ଷଣି ମୋର ଅସହ୍ୟ ମନେହେଉଛି ରାଜୁବାବୁ । ନିହାତି ଅନ୍ୟାୟ ଛଡ଼ା ଯା'ର ଅର୍ଥ ଆଉ କଣ ହୋଇପାରେ କହନ୍ତୁ ତ ?"

ତାଙ୍କର ଏକଥା ଶୁଣିଲାକ୍ଷଣି ରାଜୁବାବୁ ଓ ସ୍ମିତା ଦୁହେଁ ଏକାସଙ୍ଗେ ଚମକିପଡ଼ିଲେ । ଈଷତ୍ ବିରକ୍ତିସହ ରାଜୁବାବୁ ଉତ୍ତର ଦେଲେ, "ନିଜ ଧର୍ମର ମାତ୍ର ନିୟମସବୁକୁ ତ ଫେରେ ଆମର ମାନିବା ଉଚିତ ମିସେସ୍ ହେଓ୍ୱାର୍ଥ..."

ଜକ୍ଲିଆନା ଆଜି ନିରସ୍ତ ନହୋଇ କହିଉଠିଲେ, "କାହାକୁ ଧର୍ମ ବୋଲି କହୁଛନ୍ତି ମିଷ୍ଟର ମହାପାତ୍ର ? ଗୋଟାଏ ନିରୀହ ଝିଅଟିକୁ ତାର ସମସ୍ତ ସୁଖରୁ ବଞ୍ଚିତକରି କଠୋର ସନ୍ନ୍ୟାସର ଦଣ୍ଡ ଦେବାଟା କଣ ସତରେ ଧର୍ମ ?"

ଲଜ୍ଜା ଓ ଗ୍ଲାନିରେ ମାଟିସଙ୍ଗେ ମିଶିଯିବାକୁ ଇଚ୍ଛା ହେଉଥିଲା ସ୍ମିତାର ସେ ସବୁ କଥା ଶୁଣି । ଏଠୁ ଦୌଡ଼ିପଳାଇ ଆତ୍ମଗୋପନ କଲେ ଯାଇ ସେ ରକ୍ଷା ପାଆନ୍ତା.... ଛିଃ...ଛିଃ ।

ରାଜକିଶୋରବାବୁଙ୍କ ହୃଦୟର ନିଭୃତ କନ୍ଦରରେ ଯେଉଁ ପ୍ରଶ୍ନଗୁଡ଼ିକ ସ୍ତର ସ୍ତର କରି ସଜଡ଼ା ହୋଇ ରହିଛି, କେବଳ ସେହିଗୁଡ଼ିକର ହିଁ ପୁନରାବୃତ୍ତି କରିଯାଉଛନ୍ତି ଜକ୍ଲିଆନା । କିନ୍ତୁ ଅନ୍ତର ସମର୍ଥନ କରୁଥିଲେ ହେଁ ଧର୍ମ ବିରୁଦ୍ଧରେ କୌଣସି କଥା ଶୁଣିବା ଅନ୍ୟାୟ । ଆଉ ମଧ୍ୟ ସ୍ମିତା ପକ୍ଷରେ ଏ ଧରଣର ଆଲୋଚନା ଶୁଣିବା ଆଦୌ ଉଚିତ ହେବନାହିଁ । ସେଥିପାଇଁ ପ୍ରଥମେ ସ୍ମିତାକୁ ଲକ୍ଷ୍ୟ କରି କହିଲେ ଯେ, 'ଯାଲୁ ମା, ଆଉ ଦୁଇକପ୍ ଚାହା ବିଆରିକରି ପଠାଇଦେବୁ ।'

ସ୍ମିତା ଆଦେଶଟା ଶୁଣି ଯେପରି ରକ୍ଷାପାଇଗଲା । ସାଙ୍ଗେ ସାଙ୍ଗେ ଅଦୃଶ୍ୟ ହୋଇଗଲା ସେ ।

ଗଳାଟାକୁ ପରିଷ୍କାର କରି ଅପେକ୍ଷାକୃତ ଧୀର କଣ୍ଠରେ କହିଲେ ରାଜୁବାବୁ, "ସ୍ମିତା ଆଗରେ ଏ ପ୍ରସ୍ତାବଟା ବାଢ଼ି ଆପଣ ଅନ୍ୟାୟ କରିଛନ୍ତି ମିସେସ୍ ହେଓ୍ୱାର୍ଥ । ଗୋଟାଏ ବୃଥା ଦ୍ୱନ୍ଦ୍ୱ ସ୍ଥାନ ପାଇବ ତା ମନ ଭିତରେ । ଯାହା ଅସମ୍ଭବ—ତାହା ଅସମ୍ଭବ । ଅସମ୍ଭବକୁ ସମ୍ଭବ କରିପାରିବା ଭଳି ମନୋବୃତ୍ତିକୁ ମଣିଷର ମୂର୍ଖାମି ଛଡ଼ା ଆଉ କଣ କୁହା-ଯାଇପାରେ ? ତା'ଛଡ଼ା ଆପଣଙ୍କ ଧର୍ମ ଆଉ ଆମର ଧର୍ମ ଭିତରେ ଆକାଶ ପାତାଳ ପ୍ରଭେଦ...."

ଆହତ ଅନୁଭବ କଲେ ବି ଦୀପ୍ତକଣ୍ଠରେ ଜକ୍ଲିଆନା ଉତ୍ତର ଦେଲେ, "ଆପଣଙ୍କ ଧର୍ମ ଆଉ ଆମର ଧର୍ମର ପ୍ରଶ୍ନ ଏଠି ଉଠନ୍ତି ରାଜୁବାବୁ···ମୁଁ ଧର୍ମର ଏକମାତ୍ର ରୂପକୁ ହିଁ ବିଶ୍ୱାସ କରେ—ତାହା ହେଉଛି ସାରା ମନୁଷ୍ୟଜାତିର ହୃଦୟର ଧର୍ମ···ତାର ବିଭିନ୍ନତା ନାହିଁ ! ଆପଣ ସ୍ପଷ୍ଟ ଭାବେ କହନ୍ତୁ ତ, ସ୍ମିତାକୁ ଏହି ଯେଉଁସବୁ କଠୋର ନିୟମ ପାଳିବା ପାଇଁ ବାଧ୍ୟ କରାଯାଉଛି, ସେସବୁକୁ ଆପଣଙ୍କ ହୃଦୟ କଣ ପ୍ରକୃତରେ ଅନୁମୋଦନ କରୁଛି ? ସେ ସବୁ ବିରୁଦ୍ଧରେ କେବେହେଲେ ବିଦ୍ରୋହ କରିବାକୁ ଚାହିଁନି ?'

ଜର୍ଜିଆନାଙ୍କର ଏ ପ୍ରକାରର ସୁଧାସଳଖ ପ୍ରଶ୍ନରେ ରାଜୁବାବୁ ଅତମତ ହୋଇଗଲେ । ହଠାତ୍ ଉତ୍ତର ଦେଇନପାରି କିଛି ସମୟ ଚୁପ୍ ରହିଗଲେ ସେ । ତାପରେ ଧୀରେ ଧୀରେ କହିଲେ, "ମୋର ହୃଦୟ ସେସବୁ ନିୟମକୁ ଯେ ଅନୁମୋଦନ କେବେ କରିନି ତା ଠିକ୍, କିନ୍ତୁ ମୋର ହୃଦୟ ପିତାର ସ୍ନେହଦୁର୍ବଳ ହୃଦୟ ..."

"ଆପଣଙ୍କ ଦେଶର ଲୋକଙ୍କ ଆଦର୍ଶ ହିଁ ଆପଣଙ୍କ ଆଗରେ ବାଡ଼ୁଛି ରାଜୁବାବୁ । ଗାନ୍ଧିଜୀଙ୍କ ଆନ୍ଦୋଳନରେ ବିଧବା ବିବାହ ମଧ୍ୟ ଗୋଟାଏ ଅଙ୍ଗ ଥିଲା, ସେ କଥା ଆପଣ ଜାଣନ୍ତି । ବିଧବା-ବିବାହ ବିଷୟରେ ସେ ତାଙ୍କର ସ୍ପଷ୍ଟ ମତ ଉଲ୍ଲେଖ କରିଚନ୍ତି । ମୁଁ ଦେଖୁଛି....ମହାତ୍ମାଙ୍କର ଜୀବନବ୍ୟାପୀ ସେ କଠୋର ସାଧନାର ମୂଲ୍ୟ ତାଙ୍କ ମୃତ୍ୟୁ ପରେ ଜନସମାଜ ପାଖରେ କମିଆସୁଛି । ନୈଷ୍ଠିକ ହିନ୍ଦୁ ପରିବାରରେ ବିଧବାର ଦୁରବସ୍ଥା ମୁଁ ଅନେକ ଥର ଦେଖିବାର ସୁଯୋଗ ପାଇଛି । ଗୋଟାଏ ଜୀବନକୁ ବାଧ୍ୟକରି ତାକୁ ସମସ୍ତ ସୁଖଭୋଗରୁ ବଞ୍ଚିତ କରିବା ନିହାତି ଅନ୍ୟାୟ ବୋଲି ମନେ ହେଉଛି ମୋର । ସ୍ୱାମୀର ମୃତ୍ୟୁପରେ ନିହାତି ଅସହାୟ ଅବସ୍ଥାରେ ପଡ଼ି ସମୟସମୟରେ ଦୁର୍ଗତିର ଚରମ-ସୀମାରେ ଉପସ୍ଥିତ ହେବାକୁ ପଡ଼େ ତାକୁ । ବିଶେଷତଃ ଅଳ୍ପ ବୟସରେ ଯେଉଁମାନେ ସ୍ୱାମୀ ହରାଇଛନ୍ତି ସେମାନଙ୍କର ଦୁଃଖ ଅବର୍ଣ୍ଣନୀୟ । ଆପଣଙ୍କ ଭଳି କେତେ ଜଣ ସ୍ନେହପ୍ରବଣ ବାପା ବା ଭାଇଙ୍କ କଥା ଛାଡ଼ିଦେଲେ ସାଧାରଣତଃ ପରିବାରରେ ବିଧବାକୁ ଗଣାଯାଏ ଗୋଟାଏ ଅଦରକାରୀ ବୋଝ ପରି । ସମାଜର ଏସବୁ କଠୋର ପ୍ରଥା ପାଇଁ ସମୟସମୟରେ ବାଧ୍ୟ ହୋଇ ବିଧବା ବିପଥଗାମିନୀ ହୁଏ ନହେଲେ ତାର ଅସହାୟ ପରିସ୍ଥିତି ତାକୁ ବିପଥଗାମିନୀ କରାଏ । ଏସବୁର ଦୃଷ୍ଟାନ୍ତ ତ କମ୍ ଦେଖିବାକୁ ମିଳେନି..."

ସ୍ମିତା ନିଜେ ଆସିଲା ନାହିଁ—ପରିଚାରିକା ହାତରେ ଚାହା ଟ୍ରେଟି ପଠାଇଦେଲା । ଚାହା କପ୍‌ଟା ହାତକୁ ନେଇ ରାଜୁବାବୁ ଅନ୍ୟମନସ୍କ ଭାବରେ କହିଲେ, "କିନ୍ତୁ ମିସେସ୍ ହେଓ୍ୱାର୍ଥ, ହିନ୍ଦୁସମାଜର ଚକ୍ଷୁରେ ଭାରତବର୍ଷର ଆଦର୍ଶରେ ବ୍ରହ୍ମଚର୍ଯ୍ୟର ମୂଲ୍ୟ କମ୍ ନୁହେଁ । ତ୍ୟାଗ ହିଁ ଏ ଦେଶର ଆଦର୍ଶ- ଭୋଗ ନୁହେଁ ! ମହାତ୍ମାଗାନ୍ଧୀ ମଧ୍ୟ ଏଥିରେ ଏକମତ ଥିଲେ । ସ୍ମିତା ଅଳ୍ପ ବୟସରେ ସର୍ବସ୍ୱ ତ୍ୟାଗକରି ବ୍ରହ୍ମଚାରିଣୀର ଆଦର୍ଶରେ ଅନୁପ୍ରାଣିତ ହେବାଟା ଗୋଟାଏ ଛୋଟ କଥା ନୁହେଁ ।"

"କିନ୍ତୁ ରାଜୁବାବୁ, ଆଜିପର୍ଯ୍ୟନ୍ତ କେବେହେଲେ ବିଧବାର ଏପ୍ରକାର ତ୍ୟାଗକୁ ଏଦେଶ ସେ ପ୍ରକାରର ମହିମାମୟ ରୂପ ଦେଇଛି କି ? ଆଜି ତର୍କ ଉଠି ବାରୁ ଆପଣଙ୍କ ମନରେ ଏ ପ୍ରକାରର ଭାବନା ସିନା ଦେଖାଦେଲା, ତା ନହେଲେ ଆଜିପର୍ଯ୍ୟନ୍ତ କେବେହେଲେ ଏ ପ୍ରକାରର ଚିନ୍ତା ଦେଖାଦେଇଥିଲା କି ? ତାପରେ ତ୍ୟାଗର ଅର୍ଥ ଆତ୍ମପ୍ରବଞ୍ଚନା ନୁହେଁ । ସ୍ମିତା ନିହାତି ପିଲା ବର୍ତ୍ତମାନ । ଯେଉଁ ଦେଶରେ ଷାଠିଏ ବର୍ଷର ବୃଦ୍ଧର ଦାରପରିଗ୍ରହଣବେଳେ

ତ୍ୟାଗର ପ୍ରଶ୍ନ ଉଠେନ, ସେ ଦେଶରେ ଷୋଡ଼ଶବର୍ଷର କିଶୋରୀର ପୁନର୍ବିବାହବେଳେ ସେହି ତ୍ୟାଗର ପ୍ରଶ୍ନ କାହିଁକି ଉଠିବ ? ତ୍ୟାଗ କରିବା କଣ ଏକା ଏ ଦେଶର ନାରୀ-ମାନଙ୍କର ଧର୍ମ—ପୁରୁଷମାନଙ୍କର ନୁହେଁ ?"

କୌଣସି ଉତ୍ତର ଦେଇପାରିଲେନି ରାଜୁବାବୁ । କଣ ବା କହିଥାନ୍ତେ ସେ ? ନୀରବରେ ସେ ଖାଲି ଚାହିଁ ରହିଲେ ଏହି ବିଦେଶିନୀଙ୍କ ଉତ୍ତେଜିତ ମୁହଁ ଆଡ଼କୁ ।

"ମୁଁ....ଭାବୁଛି...ମାନେ....ଅଳ୍ପବୟସ୍କା ବିଧବାକୁ ଆଉଥରେ ବାହା ଦେଇ ତାର ଜୀବନକୁ ସୁରକ୍ଷିତ କରି ସତ୍‌ମାର୍ଗରେ ପରିଚାଳିତ କରିବାଟା ଶହେ ଗୁଣରେ ଭଲ..."

'ଏଁ ! ···କଣ କହିଲେ··· !' ପାଦ ନିକଟରେ ସିମିତି ବିଷଧର ସାପ ଦେଖି ଚମକିପଡ଼ିଲେ ରାଜୁବାବୁ ।

'ହଁ, ଗୋଟାଏ ବଞ୍ଚିତ ଆତ୍ମାର ହାହାକାର ପରିବର୍ତ୍ତେ ତାର ଜୀବନରେ ଆସିବ ପରିପୂର୍ଣ୍ଣତା, ଯାହା ବଳରେ କି ଏ ସଂସାରକୁ ସେ ପରିପୂର୍ଣ୍ଣ କରିପାରିବ, କିଛି ଦେଇଯାଇ-ପାରିବ । ବିଧବାର ଅସହାୟ ନିଷ୍ପାପ ଶିଶୁକୁ ସମାଜ ଆଉ ଆଙ୍ଗୁଠି ଦେଖାଇ ବିଦ୍ରୂପ କରିପାରିବନି ଜାରଜ ଶିଶୁ ବୋଲି । ଦେଶରେ ବଳିଷ୍ଠ ନାଗରିକ ଗଠନରେ ସେ ବି ପ୍ରତ୍ୟେକ ମାଆ ପରି ସହାୟତା କରିପାରିବ, ଦେଶର ପ୍ରତ୍ୟେକ ମାଆ ପରି ତାର ମଧ ଉଚିତ ଅଧିକାର ରହିବ । ତା ଫଳରେ ସମାଜରେ ଆଉ ଦେଖାଦେଇ ପାରିବନି ବିକୃତ ମନୋବୃତ୍ତି । ...ହଁ, ଭବିଷ୍ୟତରେ ସ୍ମିତା ଯଦି କେବେ ବାହାହେବାକୁ ଚାହେଁ ତାହେଲେ ଆପଣଙ୍କର ସେଥିରେ ସମ୍ମତି ଦେବା ଉଚିତ ।"

ମୁଣ୍ଡ ହଲାଇ ରାଜୁବାବୁ କହିଲେ, 'ଭଗବାନ କରନ୍ତୁ ସ୍ମିତାର ସେଭଳି ଦୁର୍ଭାଗ୍ୟ କେବେ ନଘଟୁ···'

'ଆଚ୍ଛା ହେଉ, ଆପଣ ଅନ୍ୟ କିଛି ନ କରନ୍ତୁ ପଛକେ ସ୍ମିତାକୁ ସେଇଟିକିକ ଅଧିକାର ଦିଅନ୍ତୁ । ତାର ଏ ନିଃସ୍ୱ ଶ୍ରୀହୀନ ଯୋଗିନୀ ବେଶ ଦେଖିଲାକ୍ଷଣି, ଆପଣ ହୁଏତ ବିଶ୍ୱାସ କରିବେନି—କିନ୍ତୁ ସ୍ମିତା ସତ 'ତାର ସେ ବେଶ ଦେଖିଲାକ୍ଷଣି ମୁଁ ବହୁତ କଷ୍ଟ ଅନୁଭବ କରେ ।' ସତକୁ ସତ ଛଳ ଛଳ ହୋଇଉଠିଛି ତାଙ୍କର ଆଖି ଦୁଇଟା ।

ବିଷଣ୍ଣକଣ୍ଠରେ କହିଲେ ରାଜୁବାବୁ, 'ଆପଣ ଜଣେ ସ୍ନେହୀ ମଣିଷ···ହୁଏତ ମୋଠାରୁ ବେଶୀ ଆପଣ ସ୍ମିତାକୁ ସ୍ନେହ କରନ୍ତି । ତାର ମଙ୍ଗଳ ଚାହାନ୍ତି । କିନ୍ତୁ ଆପଣ ଜାଣିନାହାନ୍ତି ଆଜିକାଲିର ଦୁନିଆରେ ସୁଦ୍ଧା ନିୟମ ଭାଙ୍ଗିବାକୁ ଗଲେ ଶହ ଶହ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡେ ଆଉ ଗୋଟାଏ ନିୟମବିରୁଦ୍ଧ କାମ କଲାକ୍ଷଣି ଚାରିଆଡ଼ୁ ଅଭିଯୋଗ ମାଡ଼ିଆସିବ, ମିଛରେ ସମସ୍ତେ ସ୍ମିତାର କୁତ୍ସା ରଟନା କରି ବୁଲିବେ..."

ଏଥର ବି କ୍ଷୀଣ ପ୍ରତିବାଦ ଜଣାଇଲେ ଜର୍ଜିଆନା, 'ଆପଣଙ୍କ ବ୍ରାହ୍ମଣ ଘରେ କେତେ ଜାଗାରେ ତ ମୁଁ ଦେଖିଛି ବିଧବାମାନେ ସାମାନ୍ୟ ଗହଣା ପିନ୍ଧନ୍ତି, ଧଡ଼ିଥିବା ଧାଦା ଶାଢି ପିନ୍ଧନ୍ତି...''

ମଳିନ ହସ ହସି ଉତ୍ତର ଦେଲେ ରାଜୁବାବୁ, 'ସେ ସବୁ ଆମ ସମାଜର ଶ୍ରେଣୀବିଭାଗର ନିୟମ । ଉଚ୍ଚସ୍ତରର ନିମ୍ନ ସ୍ତରର, ଏମିତି କେତେ କଣ...ଭିନ୍ନ ସ୍ଥର ପାଇଁ ଭିନ୍ନ ପ୍ରଥା ସବୁ....'

'ଖଣ୍ଡେ ଧଡ଼ିଥିବା ଶାଢି, ଦୁଇପଟ ଚୁଡ଼ି ଯଦି ଖାଲି ସେ ପିନ୍ଧନ୍ତା ତାକୁ କି ସୁନ୍ଦର ମାନନ୍ତା !'

ବାଧାଦେଇ କହିଉଠିଲେ ରାଜକିଶୋର, 'ନା ନା ମିସେସ୍ ହେଓ୍ୱାର୍ଥ ! ଅଭାଗିନୀ ଯେଉଁଥିରୁ ବଞ୍ଚିତ ହୋଇଛି ସେଥିରୁ ସେ ଚିରବଞ୍ଚିତା ହୋଇ ରହୁ । କାହିଁକି ଆଉ ଏସବୁ ମିଛର ଆଶ୍ରୟ ସେ ନେବ ? ଯାହା ସତ ତାକୁ ସତ ବୋଲି ଧରି ଠିଆହେବାର ସାହସ ତାର ରହିବା ହିଁ ଭଲ ।'

କ୍ଳାନ୍ତକଣ୍ଠରେ 'ତା ସତ' ବୋଲି ସଂକ୍ଷିପ୍ତ ଉତ୍ତରଟିଏ ଦେଇ ଯିବାକୁ ଉଠିପଡ଼ିଲେ ଜର୍ଜିଆନା ।

ମନ ଭିତରେ ଆଗେ ସହଜରେ ଚିନ୍ତା ପଶିପାରୁନଥିଲା, କିନ୍ତୁ ଆଜିକାଲି ସାମାନ୍ୟ ମାନ୍ଦ ଦୁର୍ବଳତାର ସୁଯୋଗ ନେଇ ଗନ୍ତାଘର କରିବସୁଛି—ଥରେ ପଶିଲେ ଆଉ ରକ୍ଷା ମିଳୁନି ତାର କବଳରୁ । ସେଦିନ ଆଲୋଚନାର ସମାପ୍ତି ସେଇଠି ଘଟିଥିଲା । ତାପରେ ଜର୍ଜିଆନା ଏ ଘରକୁ କେତେଥର ଆସିଛନ୍ତି, କିନ୍ତୁ ଆଉ କେବେ ଉଠାଇନାହାନ୍ତି ସେ ବିଷୟ । ହେଲେ କଣ ହେବ, ରାଜୁବାବୁଙ୍କ ମନଭିତରେ କଥାଟା ବସା ବାନ୍ଧି ରହିଗଲା ସିମିତି । ଯେତେବେଳେ ଟିକିଏ ଅବସର ମିଳିଲା ମନ ଭିତରେ ଗୁଡ଼େଇ ତୁଡ଼େଇ ହୋଇ ଦେଖା-ଦେଉଥିଲା ସେସବୁ ପ୍ରଶ୍ନ । ଗୋଟାଏ ପଟେ ଧର୍ମଭୀରୁ ମନ, ଅନ୍ୟ ପଟେ କୁସଂସ୍କାର-ବିରୋଧୀ ମନ, ଦୁଇଟି ଭିତରେ ଦ୍ୱନ୍ଦ୍ୱ ଚାଲୁଥିଲା ଅନବରତ ।

ସେଦିନ ସକାଳେ ବି ବସି ବସି ଭାବୁଥିଲେ ସେଇକଥା ।

''ଆଜି ଶ୍ରାବଣପୂର୍ଣ୍ଣିମା ବାପା, ବାଅଁଙ୍କର ଝୁଲଣଯାତ୍ରା ପୁରୀରେ ଆରମ୍ଭ ହୋଇଯାଇ-ଥିବ ନାହିଁ ?'' କିଶୋର ସଚୀ ଗୋଟାଏ ଅହେତୁକ ପ୍ରଶ୍ନ କଲା ।

ଅନ୍ୟମନସ୍କ ଭାବରେ ବାପା ଉତ୍ତର ଦେଲେ, :'ହୁଁ ...''

''ନାନୀ କହୁଥିଲା, ଆଜି ଏଇ ପୂର୍ଣ୍ଣମୀତିଥିରେ ସେ ଜନ୍ମ ହୋଇଥିଲା, ଆଜି ତାର ଜନ୍ମଦିନ...''

ସ୍ମିତାର ଜନ୍ମଦିନ । ଯେପରି ଏଥି ଭିତରେ ବହୁ ଯୁଗ ଅତୀତ ହୋଇଯାଇଛି । ଯେପରି ସେହି ବହୁ ଯୁଗର ବହୁ ଦୂରତ୍ୱକୁ ଅତିକ୍ରମକରି ଆସି କାନରେ ବାଜୁଛି ଗୋଟାଏ ସେହ, ପ୍ରୀତିଭରା କଣ୍ଠସ୍ୱର 'ସ୍ମିତାର ଜନ୍ମଦିନ...' ସୁଦୂର ଅତୀତ ବକ୍ଷରେ ହଠାତ୍ ଜାଗିଉଠି ସୁଜାତା ଯେପରି ତାଗିଦା କରୁଛନ୍ତି, "ସ୍ମିତାର ଜନ୍ମଦିନ ହେବ, ତା ଲାଗି ନୂଆଲୁଗା-ହେରିକା ଆଣିବ କେବେ ?"

ସେଦିନର ସେ ଶ୍ରେଷ୍ଠ ବାଳକାଟି ଦୌଡ଼ି ଆସି ତାଙ୍କ ଆଣ୍ଠୁ ଦୁଇଟାକୁ ଜାବୁଡ଼ି ଧରି ଆଗ୍ରହରେ ମୁହଁ ଉପରକୁ ଟେକି ଚାହିଁ ଦାବୀ କରୁଛି, "ବାପା, ମତେ ସୁନ୍ଦର ଜାମାଟେ ଦରକାର ।" ଆନନ୍ଦରେ ଝଲମଲ କରୁଛି ସେହି ଶିଶୁମୁହଁଟି । —ଘଟନାଚକ୍ର ଦ୍ରୁତ-ଗତିରେ ଘୂରିଯାଇଛି । ଗ୍ରୀଷ୍ମ ଛବି ପରି ପର ପର ହୋଇ ଭାସିଉଠୁଛି ଅତୀତର ଚିତ୍ର । ତାଙ୍କର ଘର ଥିଲା ସେ । ମା, ସୁଜାତା, ସ୍ମିତା···ସମସ୍ତେ ମରିଛନ୍ତି, ରହିଯାଇଛନ୍ତି କେବଳ ସେ ନିଜେ ଆଉ ତାଙ୍କ ସମ୍ମୁଖର ଏହି ଅସହାୟ ବାଳକଟି ! ହଁ, ସ୍ମିତା ଅଛି, କିନ୍ତୁ ତାର ବଞ୍ଚିବା ମରିବା ଭିତରେ ଫରକ୍ କଣ ? କିଛି ନାହିଁ । କିଛି ନାହିଁ ? ଆଜି ବି ସ୍ମିତାର ଜନ୍ମଦିନ; କିନ୍ତୁ···କିନ୍ତୁ ଆଜି ସେ ଆଉ ତାକୁ ଲୁଗା ଦେଇପାରିବେନି । ···କାହିଁକି ଦେଇ-ପାରିବେନି ? ଯଦି ଦିଅନ୍ତି ? ଯଦି....ଯଦି....ଜର୍ଜିଆନାଙ୍କ କଥା ଅନୁସାରେ ଆଉଥରେ ସେହି ଅତୀତକୁ ଫେରାଇଆଣିବାକୁ ଚେଷ୍ଟା କରନ୍ତି ସେ ? ନା ନା, ଛିଃ, ଏଗୁଡ଼ାକ କଣସବୁ ଭାବୁଛନ୍ତି ସେ ? ...ଆହା, ସ୍ମିତାର ବି ତ ଆଗଦିନର ସବୁକଥା ମନେପଡୁଥିବ । କେତେ ଦୁଃଖ ସେ ଅନୁଭବ କରୁଥିବ ! ମୁହଁ ଫିଟାଇ କହିପାରିବନି କାହାକୁ ପଦଟିଏ । କାହାକୁ ବା କହିବ ? କିଏ ଅଛି ? ସ୍ତ୍ରୀଙ୍କ ମୃତ୍ୟୁ ପରେ ଝିଅଟାକୁ ସେ ଠେଲିଦେଇଛନ୍ତି ବହୁତ ଦୂରକୁ—ଆଜି ପ୍ରଥମ କରି ଏକଥା ମନେହେଲା ରାଜକିଶୋରବାବୁଙ୍କର ।

ବିସ୍ମିତ ସଚୀକୁ ପଦେ କିଛି ନ କହି ବାକ୍ସ ଭିତରୁ ମନିପର୍ସଟା କାଢ଼ି ପକେଟରେ ରଖି ସେ ଓହ୍ଲାଇପଡ଼ିଲେ ବାରଣ୍ଡାତଳକୁ—ସ୍ମିତା ପାଇଁ ନିଶ୍ଚୟ ଲୁଗା ଖଣ୍ଡେ ଆଣିବେ ସେ—ଆଜି ତାର ଜନ୍ମଦିନ । × × × × × ରିକ୍ସାବାଲା ଯେତେବେଳେ ଗନ୍ତବ୍ୟ ସ୍ଥାନ କେଉଁଟା ବୋଲି ପଚାରିଲା ଆତ୍ମବିସ୍ମୃତ ରାଜୁବାବୁ ଉତ୍ତର ଦେଲେ, "ବଜାରକୁ ନେ....ଶାଢ଼ିଦୋକାନ ଆଗରେ ରଖିବୁ...।"

ଗନ୍ତବ୍ୟସ୍ଥଳକୁ ନେଇଗଲାପରେ ରିକ୍ସାବାଲାର ତିନି ଥର ଡାକ ପରେ ରାଜୁବାବୁ ସ୍ୱାଭାବିକ ଅବସ୍ଥାକୁ ଫେରିଆସିଲେ । "ବାବୁ ଶାଢ଼ି କିଣିବେ ପରା ? ଏଇଟା ଗୋଟାଏ ବଢ଼ିଆ ଶାଢ଼ିଦୋକାନ ।"—ରିକ୍ସାବାଲା କହିଲା । ତା କଥା ଶୁଣି ଚମକିପଡ଼ିଲେ ରାଜୁବାବୁ । ଆଗରେ ଥାକ ଥାକ ହୋଇ ସଜ୍ଜିତ ରହିଛି ରକମ ରକମର ରଙ୍ଗୀନ ଶାଢ଼ି । ସ୍ତବ୍ଧ ହୋଇ ଚାହିଁରହିଲେ ସେ ।

ବସି୍‌ତ ରିକ୍‌ସାବାଲା ଆଉଥରେ ପଚାରିଲା, "ଆଜ୍ଞା, ଯାଉ ନାହାନ୍ତି, ଶାଢି କିଣିବେ ପରା ?" ଦୋକାନୀଟି ଆଗେଇଆସି ସାଦର ସମ୍ଭାଷଣ ଜଣାଇଲା । ବିମୂଢ଼ ଅବସ୍ଥାରୁ ମୁକ୍ତି ପାଇଯିବା ପାଇଁ ସେ ଉଠିପଡ଼ିଲେ ଦୋକାନ ଉପରକୁ । ଦୋକାନୀ ସେତେ-ବେଳକୁ ଦଶପନ୍ଦରଟା ଶାଢି କାଢିସାରିଲାଣି ଆଲମାରି ଭିତରୁ—ରଙ୍ଗୀନ୍, ଚକ୍ ଚକ୍ ଜରିଧଡ଼ିଆ, ସିଲ୍‌କ, ସମ୍ବଲପୁରୀ ହରେକ ରକମର । 'ଆମ୍ଭ ଲୁଗା' କହିବାକୁ ଗଲାକ୍ଷଣି କିଏ ଯେପରି ଗଳାଟା ଚିପି ଧରିଲା ତାଙ୍କର । ଶତଚେଷ୍ଟାରେ ସୁଦ୍ଧା ସେ ପରିସ୍ଥିତିରେ ସେଇ ପଦକ କଥା ଉଚ୍ଚାରଣ କରିପାରିଲେନି ସେ । କଣ ଯେ କରିବେ କିଛି ସ୍ଥିର କରି ନ ପାରି ବିମୂଢ଼ ହୋଇ ଚାହିଁରହିଲେ କେତେକ୍ଷଣ । ହଠାତ୍ ଏ ସମୟରେ ତାଙ୍କର ଦୃଷ୍ଟି-ପଡ଼ିଲା, ଗୋଟାଏ କୋଣରେ କେତେଖଣ୍ଡ ସାଦା ଖଦଡ଼ ଶାଢି ରଖାଯାଇଛି । ସେହି ଅପ୍ରସ୍ତୁତ ଅବସ୍ଥାରୁ ମୁକ୍ତିପାଇଯିବାର ବାଟ ହଇଗଲା ଯିମିତି, "ହୁଁ, ଏ ସବୁ ଲୁଗା ତ ସେ ବ୍ୟବହାର କରେନି, ତମେ ସେଇ ଖଦଡ଼ ଶାଢି ଦେଖେଇଲ"—ଗଳାରେ ଜୋର୍ ଦେଇ କହିଉଠିଲେ ରାଜୁବାବୁ ।

ଦୋକାନୀର ମୁହଁରେ ଫୁଟିଉଠିଲା ଅପ୍ରସନ୍ନ ଭାବ । ଗମ୍ଭୀରତା ସହିତ ସେ ସେଇ ଖଦଡ଼ ଶାଢି କେତେଖଣ୍ଡ ଆଣି ଥୋଇଲା ଆଗରେ । ଖଦଡ଼ ଶାଢି, ଧଳା ହ' ଯାଇଖଣ୍ଡ ଥିଲେ ବି ତାର ଧଡ଼ି ଅଛି । ଆଗରେ ଥିବା ସେଇ ଶାଢିଗୁଡ଼ିକୁ ଚାହିଁ ରାଜୁବାବୁ ନିଜମନକୁ ଦୃଢ଼ କରିବାକୁ ଚେଷ୍ଟା କରୁଥିଲେ । ଏଥିରୁ ଖଣ୍ଡେ ସାଦା ଶାଢି ଯଦି ସ୍ମିତା ପିନ୍ଧେ, ତାହେଲେ କ୍ଷତି କଣ ? ଚକ୍ ଚକ୍ ନାହିଁ, ରଙ୍ଗୀନ୍ ନାହିଁ, ଖାଲି ଚଉଡ଼ା ଧଡ଼ି ଟିକେ; କିନ୍ତୁ ହେଲେ ବି ସମାଜର ନିୟମ ଭାଙ୍ଗିବାକୁ ପଡ଼ିବ, ଘରର ନାଁରେ ଦାଗ ଲାଗିବ । ସେଇଟା କଣ ଭଲ ହବ ? ନା...ଛିଃ....ଥାଉ ।

ଆଉ ତାଙ୍କୁ ଭାବିବାକୁ ସୁଯୋଗ ନଦେଇ ଦୋକାନୀ ବିରକ୍ତଭରା କଣ୍ଠରେ କହିଲା, "ନେବେ ଯଦି ନଅନ୍ତୁ ଆଜ୍ଞା...କଣ ପସନ୍ଦ ହେଉଛି...ଡେରି ହେଇଯାଉଚି ମୋ ।"

ନ ନେବାର ଆଉ ବାଟ ନାହିଁ—ଯେମିତି ହେଲେ ଖଣ୍ଡେ ନେବାକୁ ପଡ଼ିବ । ଦେଢ଼-ଇଞ୍ଚ ଚଉଡ଼ା କଳାଧଡ଼ିଥିବା ଧଳା ଶାଢି ଖଣ୍ଡେ ହାତରେ ଧରି ଉଠିପଡ଼ିଲେ ରାଜୁବାବୁ । ଶାଢିର ଦାମ୍ ଦେଇ ରିକ୍‌ସାରେ ବସି ଘରକୁ ଫେରିଲାବେଳକୁ ତାଙ୍କ ମନଭିତରେ ଝଡ଼ ବହୁଥିଲା ଯିମିତି । ଭୁଲ୍ କଲେ କି ଠିକ୍ କଲେ ? ଏ ଶାଢିଖଣ୍ଡକ ସ୍ମିତାକୁ ନଦେଇ ଚୁପ୍‌ଚାପ୍ ବାକ୍‌ସ ଭିତରେ ରଖିଦେଲେ ହେବ । ପୁଣି ମନ ଭିତରେ ନବଚେତନା ଉଦୟ ହୋଇ ଏ ଯୁଗର ଆଦର୍ଶ, ତାର ଦୃଷ୍ଟିଭଙ୍ଗୀ, ସମୀଚୀନତା ବାରମ୍ବାର ଯେପରି ସ୍ମରଣ କରାଇଦେଉଥିଲା । ଜର୍ଜ୍ ଆନାଙ୍କ କଥାଗୁଡ଼ାକ ଆସି ବାଜୁଥିଲା କାନରେ ।

ଘରର ପିଣ୍ଡା ଓ ବାରଣ୍ଡା ଅତିକ୍ରମ କରି ନିଜର କୋଠରିରେ ପାଦଦେଲା କ୍ଷଣି ଯାହାକୁ ସେ ଆଗରେ ଦେଖିଲେ, ସେ ହେଉଛି ସ୍ମିତା । ବାପାଙ୍କ ଲୁଗାପଟା ଆଲଣାରେ

ସଜାଡ଼ି ରଖୁଥିଲା ସେ । ପାଦଶବ୍ଦରେ ଚମକି ଚାହିଁଲାକ୍ଷଣି ଗୋଟାଏ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ହଠାତ୍ ଉଚ୍ଛ୍ୱସିତ ହୋଇ ରାଜୁବାବୁ କହିଉଠିଲେ, "ନେଲୁ ମା ଆଜି ଏ ଖଣ୍ଡିକ ତତେ ପିନ୍ଧିବାକୁ ହବ—ତୋର ଆଜି ଜନ୍ମଦିନ ।"

କଳାଧଡ଼ି ଶାଢି ଦେଖିଲାକ୍ଷଣି ସର୍ପାହତା ପରି ଚମକିପଡ଼ିଥିଲା ସ୍ମିତା । ନିମିଷକ-ମଧ୍ୟରେ ତା ଦେହର ଶେଷ ରକ୍ତବିନ୍ଦୁଟି ଯେପରି ନିଃଶେଷ ହୋଇଗଲା । ଶେତା ମୁହଁରେ, ବିସ୍ଫାରିତ ଚକ୍ଷୁରେ ସେ ଖାଲି ଚାହିଁରହିଲା । ଆଖିଡ଼ୋଳାଟି ମଧ୍ୟ ଯେପରି କଠିନ ପଥର ପାଲଟିଯାଇଥିଲା । କେଜାଣି କାହିଁକି ରାଜୁବାବୁ ଆଶା କରିଥିଲେ ଯେ ଶାଢିଟି ପାଇ ଟିକେ କୁଣ୍ଠିତ ଅନୁଭବ କଲେ ମଧ୍ୟ ସେ ଖୁସି ହେବ । କିନ୍ତୁ ସେ ଯେ ଇମିତି ବିବର୍ଣ୍ଣ ହୋଇ-ଯିବ, ଯା ଥିଲା ତାଙ୍କର ଧାରଣାତୀତ ।

ସ୍ମିତା ଭାବୁଥିଲା, ଆଜିର ବ୍ୟବହାରରେ କିମ୍ବା ନିଷ୍ଠାପାଳନରେ କେଉଁଠି ସେ କେବେ କିଛି ତ୍ରୁଟି କରିଦେଇଛି, ଯାହା ଫଳରେ ବାପା ଯା ଭାବିଲେ । ଲଜ ଆଉ ଦୁଃଖରେ ସେ ଅଧୀର ହୋଇପଡ଼ିଲା । ଆଖିର ଲୁହକୁ ଲୁଚାଇବାକୁ ମୁହଁଟିକୁ ତଳକୁ କରି-ଦେଲା ସେ ।

ଝିଅର ମନରେ ଆନନ୍ଦ ଦେବା ପରିବର୍ତ୍ତେ ଦୁଃଖ ଦେବା ଦେଖି ବାପା ଅନୁତପ୍ତ ହୋଇ ଉଠିଥିଲେ । ହଠାତ୍ ଏ ସମୟରେ ଯେପରି ଭଗବତ୍‌ପ୍ରେରିତ ଦୂତ ପରି ଜର୍ଜିଆନା ଆସି ପହଞ୍ଚିଲେ । ଇଂରାଜୀରେ ପ୍ରବନ୍ଧ ଗୁଡ଼ିକ ଲେଖିଲା ପରେ ସ୍ମିତା ନେଇ ଖାତାଟି ତାଙ୍କୁ ସଂଶୋଧନ କରିବାକୁ ଦେଇଥିଲା । ସେ ଆସିଥିଲେ ଖାତାଟି ଫେରାଇବାକୁ । ପ୍ରଥମେ ପିତା ବା କନ୍ୟା କେହି ତାଙ୍କର ଉପସ୍ଥିତି ଜାଣିପାରିନଥିଲେ, କାରଣ ଏ ଘରର ପ୍ରଥା ଅନୁଯାୟୀ ବାହାରେ ସେ ଜୋତା ରଖି ଆସିଛନ୍ତି ଆଜି । ମୁହୂର୍ତ୍ତେ ଅବସ୍ଥାଟା ଦେଖି-ନେଲା ପରେ ଘଟଣା ଯେ କଣ ବୁଝିବାକୁ ତାଙ୍କର ବିଳମ୍ବ ହୋଇନଥିଲା । ରାଜୁବାବୁଙ୍କ ମନର ପରିବର୍ତ୍ତନ ଦେଖି ଆନନ୍ଦରେ ଅଧୀର ହୋଇଉଠିଲେ ସେ । କହିଲେ, 'କୁସଂସ୍କାରର ଶୃଙ୍ଖଳ ଭାଙ୍ଗିବାକୁ ଯେଉଁ ମହତ୍ ଶକ୍ତି ଦରକାର, ଆପଣଙ୍କଠାରେ ସେ ଶକ୍ତି ଅଛି ରାଜୁ-ବାବୁ । ମୁଁ ଯେ କେତେ ଆନନ୍ଦ ଅନୁଭବ କରୁଛି !"

ତାଙ୍କ କଥାରେ ରାଜୁବାବୁଙ୍କର ଚମକ ଭାଙ୍ଗିଲା । ଖୁସିରେ ଝଲମଲ କରୁଥିବା ବୃଦ୍ଧାଙ୍କ ମୁହଁଟି ଆଡ଼କୁ ଚାହିଁ ସେ ଏତକ କେବଳ ଉଚ୍ଚାରଣ କରିପାରିଲେ, 'ଝିଅଟାର ମନରେ ବୃଥାରେ କଷ୍ଟ ଦେବାହିଁ ସାର ହେଲା, ବୁଝିଲେ ନା ?'

'କିଛି ନାହିଁ, ଆପଣ ଶାଢିଟା ରଖିଦେଇ ଯାଆନ୍ତୁ ତ, ମୁଁ ସ୍ମିତାକୁ ବୁଝାଇଦେଉଛି ।'

କିନ୍ତୁ ସ୍ମିତାକୁ ବୁଝାଇବାକୁ କମ୍ ସମୟ ଲାଗିଲା ନାହିଁ । ଯେଉଁ ସଂସ୍କାର ଭିତରେ ସେ ଆଜନ୍ମରୁ ପରିପାଳିତ, ଯାହାକୁ ପରିବାରର ଧର୍ମ ବୋଲି ସେ ଜାଣେ, ସେଇ ଧର୍ମକୁ ଅସ୍ୱୀକାର କରିବାକୁ ହୃଦୟ ତାର ଆଦୌ ପ୍ରସ୍ତୁତ ନଥିଲା । ତା ସଙ୍ଗେ ଅତୀତର ସହସ୍ର

ସ୍ମୃତି ଯେପରି ଏକା ସାଙ୍ଗରେ ଦଳ ବାନ୍ଧି ମାଡ଼ିଆସିଲେ ? ବୁଢ଼ୀ ଆଈଙ୍କ କୋମଳ କଣ୍ଠର ଉପଦେଶ ଶୁଣୁ ଶୁଣୁ ନୀରବ ପ୍ରତିବାଦ ପରି ଆଖିରୁ ଖାଲି ଝରିଯିବାକୁ ଲାଗିଲା ଲୁହର ଧାର। କିନ୍ତୁ ଶେଷରେ ବାଧ୍ୟ ହୋଇ ସିନ୍ଥି ଭାଙ୍ଗି ତାର ନଅ ବର୍ଷ ହେଲା ପରିତ୍ୟାଗ କରିଥିବା ଧଡ଼ିଥିବା ଶାଢ଼ି ପିନ୍ଧିବାକୁ ପଡ଼ିଲା। ସ୍ନେହମୟୀ ବୃଦ୍ଧାଙ୍କର ଏକାନ୍ତ ଅନୁରୋଧକୁ ଆଡେଇ ଦେଇପାରିଲାନି ସେ। ହେଲେ ଲୁଗାଟି ପିନ୍ଧିସାରିଲା ପରେ ଯେପରି ଅନୁଭବ କଲା ଏକାସାଙ୍ଗରେ ଅଜସ୍ର ଅପରାଧରେ ଅପରାଧିନୀ ସେ ହୋଇପଡ଼ିଛି। ମୁହଁ ଉଠାଇ ଯେ ବୃଦ୍ଧାଙ୍କ ମୁହଁକୁ ସିଧା କରି ଚାହିଁପାରିଲାନି ସୁଭା। କିନ୍ତୁ ତାଙ୍କର ଏକାନ୍ତ ଅନୁରୋଧରେ ନିତାନ୍ତ କୁଣ୍ଠିତ ଭାବରେ ସେ ବାପାଙ୍କ ପାଦତଳେ ପ୍ରଣାମ ମଧ୍ୟ କଲା।

"ସୌଭାଗ୍ୟବତୀ....ପୁତ୍ରବତୀ....ଏଁ" ଆତଙ୍କରେ ଚିତ୍କାର କରିଉଠି ରାଜୁବାବୁ ନିଜ ମୁହଁକୁ ନିଜ ହାତରେ ଚପି ଧରିପକାଇଲେ। ତାଙ୍କର ଅନ୍ୟମନସ୍କହେବାର ସୁଯୋଗ ନେଇ ଚିର-ଅଭ୍ୟାସଗତ ଆଶୀର୍ବାଣୀ ମୁହଁରୁ ବାହାରିଆସିଛି "ହେ ଭଗବାନ..." ଅବରୁଦ୍ଧ କଣ୍ଠ-ସ୍ୱରରେ ଯେପରି ଯନ୍ତ୍ରଣାହତ, ମୃତ୍ୟୁକାତର କୌଣସି ଜନ୍ତୁର ଆର୍ତ୍ତନାଦ। କନ୍ୟାର ଅଶ୍ରୁ-ସିକ୍ତ ଚିତ୍ରାର୍ପିତ ମୁହଁଟିକୁ ଚାହିଁଦେଇ ଦୁଇ ହାତରେ ନିଜର ମୁହଁକୁ ଘୋଡ଼ାଇପକାଇ କାନ୍ଦି-ଉଠିଲେ ରାଜୁବାବୁ ଗୋଟାଏ ଶ୍ରେଷ୍ଠ ଶିଶୁପରି, 'ମା ଆ ଲୋ, ଆଶୀର୍ବାଦ କରିବାକୁ ଆଉ ଯେ କିଛି ନାହିଁ ମୋ ପାଖରେ—ଆଉ କିଛି ନାହିଁ...କିଛି ନାହିଁ।'

ପିତାଙ୍କର ସେ କରୁଣ କଣ୍ଠ ସ୍ୱର ତାର ଆଖି ଆଗରେ ଯେପରି ସ୍ପଷ୍ଟ କଲା ଅନ୍ଧକାରର ଗୋଟାଏ ଆବର୍ତ୍ତ। ଅସ୍ଫୁଟ କଣ୍ଠରୁ ବାହାରି ଆସିଲା, 'ଉଃ...' ପରମୁହୂର୍ତ୍ତରେ ତାର ଚେତନାହରା ଦେହ ଲୋଟିପଡୁଥିଲାବେଳେ ଆଶ୍ରୟ ପାଇଲା ବସ୍ତ୍ରସ୍ତବସ୍ତ୍ର ଜର୍ଜିଆନାଙ୍କ ବାହୁ ଭିତରେ।

ମୂର୍ଚ୍ଛିତା କନ୍ୟାର ଅଶ୍ରୁସିକ୍ତ ବିବର୍ଣ୍ଣ ମୁହଁଟିରେ ପାଣି ସିଞ୍ଚୁ ସିଞ୍ଚୁ ରାଜୁବାବୁ ଅନ୍ଧ-ପରି ଖୋଜିବାକୁ ଲାଗିଲେ ନିଜ ପ୍ରଶ୍ନର ଉତ୍ତର, 'ଏ କଣ ଠିକ୍ ହେଲା ?'

ନିୟମର କଠିନ ଶୃଙ୍ଖଳ ଥରେ ଫାଟିଲେ, ଭାଙ୍ଗିବାକୁ ଆଉ ବେଶୀ ଡେରି ଲାଗେନା। ଯେଉଁଥିପାଇଁ ସାରାରାତି କାନ୍ଦିକାଟି କଟେଇଥିଲେ ମଧ୍ୟ ସକାଳୁ ଉଠିଲାକ୍ଷଣି ଆରହନ ତାର ମନେହେଲା ଯେପରି ଜୀବନଟା ବହୁତ ହାଲୁକା ହୋଇଯାଇଛି। କାଲି ପର୍ଯ୍ୟନ୍ତ ଯାହା ତାକୁ ବୋଝ ଭଳି ମାଡ଼ିଧରିଥିଲା, ସେଇଟା ପ୍ରକୃତରେ କୁସଂସ୍କାର। ଏ ପର୍ଯ୍ୟନ୍ତ ଯେଉଁ ଦୈନ୍ୟ ତାକୁ ବାନ୍ଧିରଖିଥିଲା ତାହା ଯେପରି ତାର ପୂର୍ବଜନ୍ମର; ଏ ହେଉଛି ନବ-ଜନ୍ମ...ସମ୍ପୂର୍ଣ୍ଣ ନୂତନ। ଶେଷରେ ପଡ଼ି ପଡ଼ି ସେ ଭାବିବାକୁ ଲାଗିଲା....ଜୀବନଟା ବଡ଼ ହାଲୁକା ହୋଇଯାଇଛି।

ବିଶ୍ୱାସ ପରେ କୋହଲ ହେଲେ ସମ୍ପୂର୍ଣ୍ଣ ଦୂର ହେବାକୁ ବେଶି ସମୟ ଲାଗେନାହିଁ । ଜଙ୍ଗିଆନାଙ୍କ ପ୍ରରୋଚନାରେ ସ୍ମିତାର ପୃଥିବୀ ବଦଳୁଥିଲା ଧୀରେ ଧୀରେ । ଦି'ପଟ ସୁନା-ଚୁଡ଼ି ସେ ହାତରେ ପିନ୍ଧିଲା । କାନରେ ଦିଟା ଗ୍ଳେଟ କାନଫୁଲ । ଆଜିକାଲି ଆଉ ଜଙ୍ଗିଆନାଙ୍କୁ ଛୁଇଁଲେ ଲୁଗା ବଦଳାଏନି ସ୍ମିତା । ମୁହଁରେ ତାର ଫେରିଆସିଛି ପୂର୍ବର ସେହି ସୁନ୍ଦର ହସ । ଘରର ପୂଜାରୀ ଆଉ ଚାକରାଣୀ, ବାହାରର କେତେ ଜଣ ଚପରାସୀ ପ୍ରଭୃତି ବେଳେବେଳେ ଚୁପ୍ ଚୁପ୍ କଣ୍ଠରେ ଏ ସବୁର ସମାଲୋଚନା କରିଥିଲେ—ସେତିକି । କ୍ଷେତ୍ରଟା ବେଶି ଦୂର ପ୍ରସାରିତ ହୋଇପାରିନଥିଲା, କାରଣ ରାଜୁବାବୁଙ୍କର ଚିହ୍ନାଜଣା ଲୋକ ସେଠି ପ୍ରାୟ ନଥିଲେ କେହି ।

ଆଇ. ଏ. ପରୀକ୍ଷା ଘରୋଇଭାବରେ ନିର୍ବିଘ୍ନରେ ଦେଲା ସ୍ମିତା । ଆଉ ଯେଉଁଦିନ ଫଳ ପ୍ରକାଶିତ ହେଲା ରାଜୁବାବୁ ଆନନ୍ଦରେ ଅଧୀର ହୋଇ ଜଙ୍ଗିଆନାଙ୍କ ହାତ ଦୁଇଟିକୁ ଧରିପକାଇ କହିଉଠିଲେ, 'ସବୁ ଆପଣଙ୍କଯୋଗୁ ମିସେସ୍ ହେଓ୍ୱାର୍ଥ···ସ୍ମିତା ପୁନର୍ଜନ୍ମ ପାଇଛି ଆପଣଙ୍କ ଲାଗି ।'

ଉତ୍କଳବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲା ସ୍ମିତା । ଏଥର ବି. ଏ. ପାଇଁ ସେ ପ୍ରସ୍ତୁତ ହେଲା । ଗଣିତ ଆଉ ଦର୍ଶନ ବାଛିନେଲା ବିଷୟବସ୍ତୁ ରୂପେ । ସେହି ବର୍ଷ କୃତିତ୍ୱର ସହିତ ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ସଚୀ । ରେଭେନ୍ସା କଲେଜରେ ତାକୁ ପଢ଼ାଇବାକୁ ମନସ୍ଥ କରି ରାଜୁ-ବାବୁ ସଚୀକୁ କଟକ ପଠାଇଲେ । ଛାତ୍ରାବାସରେ ସେ ରହିଲା । ଆଖିଲୁହରେ ସଚୀକୁ ବିଦାୟଦେଲା ସ୍ମିତା । କାଖରେ କୋଳରେ ସଚୀକୁ ମଣିଷ କରିଛି ସେ ନିଜେ । ଆଜି-ପର୍ଯ୍ୟନ୍ତ ପ୍ରତିକଥାରେ ନାନୀର ସାହାଯ୍ୟ ନପାଇଲେ ଚଳୁ ନଥିଲା ତାର, ସେ ପୁଣି ଯାଇ ଦୂରରେ ଏକୁଟିଆ ଚଳିବ କିପରି ? କିଏ ସେଠି ତାର ସୁବିଧା ଅସୁବିଧା କଥା ବୁଝିବ ? ଏ ସବୁ କଥା ଭାବି ପ୍ରଥମେ ଦୂରକୁ ଭାଇଟିକୁ ପଠାଇବାକୁ ଏକାନ୍ତ ଅନିଚ୍ଛୁକ ଥିଲା ସେ । କିନ୍ତୁ ବାପାଙ୍କର ଇଚ୍ଛା, ସଚୀ ଭଲ ଛାତ୍ର—ବିଦ୍ୟାଚର୍ଚ୍ଚାର ଭଲ କ୍ଷେତ୍ର ପାଇଲେ ଭବିଷ୍ୟତ ତାର ଉଜ୍ଜ୍ୱଳ ହେବ ।

ସଚୀର ଆଇ. ଏସ୍. ସି. ର ପ୍ରଥମବର୍ଷ ପରୀକ୍ଷା ସରିଲା । ସ୍ମିତା ତାର ବି. ଏ. ଫାଇନେଲ୍ ଦେଲା । ପରୀକ୍ଷା ଶେଷ ହେବାର ଦଶ ଦିନ ପରେ ନିର୍ଦ୍ଦେଶ ଆସିଲା ଯେ ରାଜୁବାବୁଙ୍କର ସୁନ୍ଦରଗଡ଼କୁ ବଦଳି ହୋଇଛି । ପରୀକ୍ଷାଟା ନିର୍ବିଘ୍ନରେ ସରିଥିବାରୁ ଭଗବାନଙ୍କୁ ଧନ୍ୟବାଦ ଦେଲା ସ୍ମିତା, କିନ୍ତୁ ଜଙ୍ଗିଆନାଙ୍କୁ ଛାଡ଼ି ଯିବା କଥା ମନେ-

ହେଲାକ୍ଷଣି ଦୁଃଖରେ ଅଧୀର ହୋଇପଡ଼ିଲ ସେ । ଗତ କେତେ ବର୍ଷରେ ସ୍ନେହର ବନ୍ଧନ ଦୃଢ ହୋଇପଡ଼ିଥିଲା । ମାତୃହୀନା ଜୀବନରେ ମା'ର ଆଦର ଯତ୍ନ ସବୁ ସେ ପାଇଥିଲା ଅଜ୍ଞାତରେ ତାଙ୍କଠାରୁ । ନିଜେ ଜର୍ଜିଆନା ବି କମ୍ ବ୍ୟସ୍ତ ହେଲେନି । ଆତ୍ମୀୟତାର ମୋହ ଯେତେ ଗମ୍ଭୀର, ବିଚ୍ଛେଦ ସେତେ ଦୁଃଖଦାୟକ । ସତୀ, ରାଜୁବାବୁ ସମସ୍ତଙ୍କ ମନ ବିଷାଦଗ୍ରସ୍ତ ହେଲ ଏକଥା ଭାବି । ଏପରି ଜଣେ ନିଃସ୍ୱାର୍ଥପର ବିଦେଶିନୀ ମହିଳାଙ୍କୁ ଜଣେ ମଙ୍ଗଳାକାଂକ୍ଷୀ ବନ୍ଧୁରୂପେ ପାଇବା ଯେ ଅସମ୍ଭବ । ବାଲେଶ୍ୱରର ସାଢ଼େ ଚାରି-ବର୍ଷର ନିବାସ ଉଠାଇ ପୁତ୍ରକନ୍ୟା ସହିତ ରାଜୁବାବୁ ସୁଦୂର ସୁନ୍ଦରଗଡ ଉଦ୍ଦେଶ୍ୟରେ ଯାତ୍ରାକଲେ । ଷ୍ଟେସନକୁ ବିଦାୟ ଦେବାକୁ ଆସିଥିଲେ ହେଓ୍ୱାର୍ଥ ଦମ୍ପତି । ସ୍ମିତାର ମନେ ହେଉଥିଲ ଯେପରି ଦ୍ୱିତୀୟଥର ପାଇଁ ସେ ମାତୃହରା ହେଲ । ତାର ଗୁରୁ, ତାର ବନ୍ଧୁ, ତାର ସବୁକିଛୁର ସ୍ଥାନ ଏ କେତେଟା ବର୍ଷ ଭିତରେ ଯେ ଅଧିକାର କରିଥିଲେ, ଯାହାଙ୍କ ବିଶ୍ୱପ୍ରେମର ଜ୍ୱଳନ୍ତ ଆଦର୍ଶ ଚିରଦିନ ଜାଗ୍ରତ ରଖିଥିବ ସ୍ମିତାର ଅନ୍ତର ଭିତରେ, ସେହି ମହୀୟସୀ ମାତୃରୂପିଣୀ ବିଦେଶିନୀଙ୍କ ଚରଣତଳେ ପ୍ରଣାମ କରି ଆଖିର ଲୁହ ପୋଛୁ ପୋଛୁ ଗାଡ଼ିରେ ଉଠିଲା ସ୍ମିତା । ଜୀବନର ଆଉଗୋଟାଏ ଅଧ୍ୟାୟ ଯେପରି ସମାପ୍ତି ଲଭିଲ ଏଇଠି ।

ଏକା ସଙ୍ଗେ ଦୁଇଦୁଇଟା ଅଭିନନ୍ଦନ ତାରବାର୍ତ୍ତା ପାଇଲ ଶୁଚିସ୍ମିତା । ଖବର କାଗଜ ପଢ଼ିହବାର ବହୁତ ପୂର୍ବରୁ ତାରରେ ଶୁଭସମ୍ବାଦ ଆସିଲ । ଏଥର ବି ବି. ଏ. ରେ ଦର୍ଶନଶାସ୍ତ୍ରରେ ପ୍ରଥମସ୍ଥାନ ଅଧିକାର କରି ସେ ଉତ୍ତୀର୍ଣ୍ଣ ହୋଇଛି । ତାରବାର୍ତ୍ତା ଦୁଇଟିରୁ ଗୋଟିଏ ସତୀ ପାଖରୁ ଓ ଅନ୍ୟଟି ଜର୍ଜିଆନାଙ୍କ ପାଖରୁ ଆସିଥିଲ । ରେଡ୍‌କ୍ରସ୍ ସୋସାଇଟିର ମିଟିଂ ପାଇଁ ସେ ଠିକ୍ ସେଇ ସମୟରେ ବାଲେଶ୍ୱରରୁ କଟକ ଯାଇ-ଥିଲେ ।

ଆନନ୍ଦ ଉତ୍ଫୁଲ୍ଲ ମନରେ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ସେ ଦୁହିଁଙ୍କ ଚିଠିର ଉତ୍ତର ଲେଖିବସିଲ ସ୍ମିତା । ଜର୍ଜିଆନାଙ୍କୁ ଜଣାଇଲ ତାର ଆନ୍ତରିକ କୃତଜ୍ଞତା, ଆଉ ମଧ୍ୟ ଜଣାଇଲ କିପରି ତାଙ୍କର ଆଦର୍ଶକୁ ମୂଳମନ୍ତ୍ର କରି ସେ ଏଠି ସମାଜ ମଙ୍ଗଳ କାମ ଆରମ୍ଭ କରିଛି । ଅନୁନ୍ନତ ବସ୍ତିର ଛୋଟ ଛୋଟ ଝିଅପୁଅ ଓ ବୟସ୍କା ରମଣୀମାନଙ୍କୁ ନେଇ ସେ ଘରେ ଗୋଟିଏ ସ୍କୁଲ ଆରମ୍ଭ କରିଛି । ଏତେ ଅଳ୍ପ ଦିନରେ ସେଠାରେ ସମସ୍ତେ ତାକୁ ଅତି ଆପଣାର କରିନେଇଛନ୍ତି । ଅକ୍ଷରଶିକ୍ଷା, ସୂତାକଟା ଆହୁରି କେତେ

କଣସବୁ ଗ୍ରେଟ ଗ୍ରେଟ କୁଟୀରଶିଳ୍ପ ଶିକ୍ଷା ଦେଇଛୁ ସେ....ଆହା, ଜର୍ଜ୍ଜିଆନା ଯଦି ସେଠାରେ ଥାଆନ୍ତେ ତାଙ୍କ ସହିତ ମିଶିଥିଲେ ସି୍ଂ ତା ଆହୁରି କେତେ କଣ କାମ କରିପାରିଥାନ୍ତା ।

ଚଠିଲେଖା ସାରି ବାପାଙ୍କ ପାଇଁ ଜଳଖିଆ ତିଆରି କରିବାରେ ନିଜକୁ ନିୟୋଜିତ କଲା ସେ । କାମତକ ସାରି ଠିକ୍ ଉଠୁଛି, ଏ ସମୟରେ ରାଜୁବାବୁଙ୍କର ଡାକ ଶୁଭିଲା । ତରବର ହୋଇ ତାରବାଡ଼ିଟା ଯୋଡ଼ିକ ହାତରେ ଧରି ସେ ଦୌଡ଼ିଗଲା ଦାଣ୍ଡଘରକୁ ।

"ବାପା, ଦେଖିଲ ଏ କଣ ! " ଉତ୍ଫୁଲ୍ଲ କଣ୍ଠରେ ଏତକ କହିବାକୁ ଯାଇଁ ହଠାତ୍ ତାର ସମସ୍ତ ଆଗ୍ରହ ଯେପରି ଦପ୍‌କିନା ଲିଭିଗଲା । ବାପାଙ୍କ ମୁହଁଟା ଅସୁସ୍ଥ ଆଉ ବିବର୍ଣ୍ଣ ଦିଶୁଛି । ବାଡ଼ିଦୁଇଟି ଉପରେ କୌଣସିମତେ ଆଖିବୁଲାଇଆଣି ରାଜୁବାବୁ ଚେଷ୍ଟାକଲେ ଖୁସିଭରା କଣ୍ଠରେ କହିବାକୁ, "ବାଃ..." ପରମୁହୂର୍ତ୍ତରେ କ୍ଳାନ୍ତଭାବରେ କହିଲେ, 'ଶେଯଟା ଝାଡ଼ି ଠିକ୍ କରି ଦେତ ମା" ।

'ଦେହ କଣ ଖରାପ ଲାଗୁଛି ବାପା ?' ଆତଙ୍କିତ ହୋଇ ପଚାରିଲା ସେ ।

'ହଁ ମା—ଶେଯଟା ପକେଇଦେଲୁ ।'

ତରତରରେ ବିଛଣା ଝାଡ଼ିଦେଲା ଷଣି ସେଇ ବାହାରର ପୋଷାକ ନ ବଦଳାଇ ଶେଯରେ ଶୋଇପଡ଼ିଲେ ରାଜୁବାବୁ ।

ଏ ହେଲା ଅସୁମାରମ୍ଭ । ନିଜର ଜ୍ଞାନ ହେଲାଠୁ ବାପାଙ୍କୁ କେବେ ଅସୁସ୍ଥ ଅବସ୍ଥାରେ ଦେଖିନଥିବା ସି୍ଂ ତା ଭୟରେ ବିହ୍ୱଳ ହୋଇପଡ଼ିଲା । ସେଠା ଡାକ୍ତରଙ୍କ ସଙ୍ଗେ ରାଜୁବାବୁଙ୍କର ବନ୍ଧୁତା ହୋଇଯାଇଥିଲା, ତେଣୁ ଚିକିତ୍ସା ସକାଶେ ବିଶେଷ ଅସୁବିଧା ହେଲାନାହିଁ । ଚପ୍ରାସି ଯାଇ ଖବର ଦେଲାକ୍ଷଣି ଅରବିନ୍ଦବାବୁ ଆସି ପହଞ୍ଚିଗଲେ । କିନ୍ତୁ ଅସୁସ୍ଥତା ଆରମ୍ଭ ହେଉ ହେଉ ବଙ୍କା ବାଟ ଧରିଲା । ଡାକ୍ତର ମତ.ପ୍ରକାଶ କଲେ ରକ୍ତଚାପ ବୃଦ୍ଧି ଘଟିଛି, ବିଶ୍ରାମ ଏକାନ୍ତ ପ୍ରୟୋଜନ । ଗ୍ରୀଷ୍ମଛୁଟି ହୋଇଥିଲେ ବି ପଢ଼ାର ସୁବିଧା ପାଇଁ ସଚୀ ଆସି ନଥିଲା । ଜରୁରୀ ତାରବାର୍ତ୍ତା ପଠାଇ ସଚୀକୁ ଡକାଇ ଆଣିଲା ସି୍ଂ ତା । ସଚୀକୁ ଦେଖିଲାକ୍ଷଣି ଅନେକ ଦମ୍ଭ ଆସିଗଲା ତାର । ସଚୀ ଆଉ ଏବେ ପିଲାଟିଏ ହୋଇ ରହିନ । ଦୂରକୁ ଗଲାପରେ ହଠାତ୍ ଯେପରି ବଡ ମଣିଷଟିଏ ହୋଇ ଯାଇଛି ସେ । ନିଜ ଉପରେ ନିର୍ଭର କରିବା ଶିଖିଛି । ଦୃଷ୍ଟିକୋଣ ପ୍ରସାରିତ ହୋଇ ଛି ଯଥେଷ୍ଟ; ଆଉ ଯେପରି କିଶୋରର କୈଶୋର ଭିତରଦେଇ ଫୁଟିଉଠିଛି ପୌରୁଷ । ସଚୀକୁ ପାଖରେ ପାଇ ଗୋଟାଏ ମୁହୂର୍ତ୍ତରେ ଯେପରି ସମସ୍ତ ଦୁର୍ଭାବନା ଦୂର ହୋଇଗଲା ତାର । ତାଠାରୁ ଦଶଟିବର୍ଷ ବୟସରେ ସାନ ହୋଇଥିବା ଭାଇଟି ଯିମିତି ତାଠାରୁ ଦଶ ବର୍ଷ ବଡ ହେଇଯାଇଛି —ଆଃ, ତା ଉପରେ ବର୍ତ୍ତମାନ ସେ ନିର୍ଭର କରିପାରିବ ନିଶ୍ଚିନ୍ତ ମନରେ ।

ଧୀରେ ଧୀରେ ସୁସ୍ଥ ହୋଇଉଠିଲେ ରାଜୁବାବୁ । କିନ୍ତୁ ସମ୍ପୂର୍ଣ୍ଣ ସୁସ୍ଥ ହୋଇଉଠିଥିଲେ ମଧ୍ୟ ଦୁର୍ବଳତାଟା ରହିଥିଲା ଏକାପରି । ବେଶି ପରିଶ୍ରମ ପଡ଼ିଗଲେ କିମ୍ବା ବେଶି ଭାବିଲେ ଅସୁସ୍ଥତାଟା ସାଙ୍ଗେ ସାଙ୍ଗେ ଦେଖାଦେଉଥିଲା ଏବଂ କେତେ ଦିନ ପାଇଁ ସମ୍ପୂର୍ଣ୍ଣ ଶଯ୍ୟାଶାୟୀ ହୋଇରହିବାକୁ ପଡୁଥିଲା । ବୟସ ହୋଇଗଲା··· ପ୍ରଥମଥର ପାଇଁ ରାଜୁବାବୁଙ୍କର ଖିଆଲ ହେଲା ଯେ ଜରା ତାର ପ୍ରଥମ ସ୍ପର୍ଶ ଦେଲାଣି ତାଙ୍କ ଦେହରେ, ଏଥର ସ୍ୱାସ୍ଥ୍ୟ ଭାଙ୍ଗିବ । ତାକୁ ବାଧାଦେବାକୁ ଆଉ କୌଣସି କ୍ଷମତା ନାହିଁ ତାଙ୍କଠି ।

ସେଇଥିପାଇଁ ତାପର ବର୍ଷ ସୁନ୍ଦରଗଡର ଶୀତୋତ୍ତାପର ଆତିଶଯ୍ୟ ଲକ୍ଷ୍ୟକରି ଅରବିନ୍ଦ ବାବୁ ପରାମର୍ଶ ଦେଲେ ତିନିମାସ ଛୁଟିନେଇ କୌଣସି ସ୍ୱାସ୍ଥ୍ୟକର ସ୍ଥାନକୁ ଯାଇ ବିଶ୍ରାମ ନେବାପାଇଁ । ପ୍ରଥମେ କଥାଟା ଶୁଣି ରାଜୁବାବୁ ଗ୍ରହଣ କରି ନଥିଲେ; କିନ୍ତୁ ପରେ ପ୍ରସ୍ତାବଟାର ବିଶେଷତ୍ୱ ଉପଲବ୍ଧି କରିପାରି ସେ ଛୁଟିପାଇଁ ଦରଖାସ୍ତ କଲେ ।

ସମ୍ପୂର୍ଣ୍ଣ ନୂତନ ପରିବେଶ । ନୂଆ ମାଟି ଆଉ ନୂଆ ପବନ, ସୂର୍ଯ୍ୟର ଆଲୁଅ ବି ନୂଆ ସେଇଠି । ଘନ ପାଇନ୍ ବଣ ପରିବେଷ୍ଟିତ ରମ୍ୟ ପାର୍ବତ୍ୟ ସ୍ଥାନ । ସମୟ ଅସମୟରେ ମେଘର ଶୀତଳ ଚୁମ୍ବନ ଯେପରି କ୍ଳାନ୍ତ ଅନୁଭବ କରିବାକୁ ଦିଏନା ମଣିଷକୁ । ସରୀସୃପ ପରି ବଙ୍କା ଗତିରେ ରାସ୍ତାଟା ଚାଲିଯାଇଛି ଉପରକୁ । ଘରଗୁଡ଼ିକ ଚମତ୍କାର । ଛୋଟ ଛୋଟ ପାହାଡ଼ର ସମତଳ ଶୀର୍ଷଦେଶରେ ବାଙ୍ଗଲୋ ପେଟର୍ଣ୍ଣର ନାଲି, ହଳଦିଆ, ଧଳା ରଙ୍ଗର ଘରସବୁ । ଦୂରରୁ ଦେଖିଲେ ପାହାଡ଼ର ସବୁଜ କୋଳରେ ବିଭିନ୍ନରଙ୍ଗର ଫୁଲ ସବୁ ଫୁଟିଲା ପରି ଦିଶେ । ପାର୍ବତ୍ୟପ୍ରଦେଶର ଗଡ଼ାଣିଆ ଜମି । ଘରର ବଗିଚାକୁ ଯଦି ଯିବାକୁ ପଡ଼ିବ ତାହେଲେ ବେଶ୍ କିଛିଦୂର ତଳକୁ ଓହ୍ଲାଇବାକୁ ପଡ଼ିବ ଆଉ ଏତେ ସୁନ୍ଦର ବଗିଚା···ଖାଲି ଗୋଲାପ ବଗିଚା, ନାଲି, ନେଳି, ହଳଦିଆ ? ଗୋଲାପୀ ଓ ଧଳା ରଙ୍ଗର ସୁବିସ୍ତୃତ ଗୋଲାପର ଶଯ୍ୟା କହିଲେ ଅତ୍ୟୁକ୍ତି ହେବନି । ଏ ସ୍ଥାନରେ ଗୋଲାପର ପ୍ରସିଦ୍ଧି ବହୁତ ବେଶି । ପାହାଡ଼ିଆ ଜମି ଆଉ ଶୀତୁଳିଆ ପାଗରେ ପ୍ରଚୁର ଗୋଲାପ ଫୁଟେ । ପ୍ରତ୍ୟେକ ଗୃହଅଙ୍ଗନରେ ଗୋଲାପର କୁଞ୍ଜ । କେଉଁଠି ଗୋଲାପ ଗଛ ନ ଥାଇ ନାହିଁ । ଦୀର୍ଘ ପାଇନ୍ ଗଛର ଗ୍ରୁସ୍ଥାସନ୍ନିବେଶିତ ସଂକୀର୍ଣ୍ଣ ପଥଟା ବିସ୍ତୃତ ରାଜପଥକୁ ଲମ୍ବି ଯାଇଛି ସର୍ପିଳ ଗତିରେ । ଘୁମନ୍ତ ରାଜକନ୍ୟାର ସ୍ୱପ୍ନ ଭଳି ସ୍ୱପ୍ନମୟ ରାଜ୍ୟ ଏ । ପ୍ରଥମ ଦିନରେ ଏ କଥା ମନେ ହେଉଥିଲା ସିନ୍ଧୁ ତାର । ଏଠାରେ ଆଲୁଅ ଆଉ ପବନର ପ୍ରତିଟି ଅଣୁରେ ଯେପରି ଭରିରହିଛି ପ୍ରାଣପ୍ରାଚୁର୍ଯ୍ୟ । ପ୍ରତିଟି ନିଃଶ୍ୱାସରେ ମନୁଷ୍ୟ ଏଠି ଗ୍ରହଣ କରିପାରେ ପ୍ରଚୁର

ଜୀବନ୍ତ ଶକ୍ତି । ଆନନ୍ଦରେ ଶ୍ରେଷ୍ଠ ଶିଶୁଟିଏ ପରି କୁରୁଳିଉଠିଲା ସ୍ମିତା, "ବାପା, କେଡ଼େ ସୁନ୍ଦର ଜାଗାଟା ସତେ…" କିନ୍ତୁ ଗୋଲାପର ସେହି ବିସ୍ତୃତ ଆଉ ବିଚିତ୍ର ବଣକୁ ଚାହିଁ-ଦେଇ ରଜୁବାବୁ ଯିମିତି ଅନୁଭବ କଲେ ତାଙ୍କ କଲିଜାରେ ହଠାତ୍ ଗୋଟାଏ ଗୋଲାପର କଣ୍ଟା ଭୁଷିଯାଇଛି । ସେଥିପାଇଁ ସଂକ୍ଷିପ୍ତ ଉତ୍ତରଟିଏ ଦେଲେ, "ହୁଁ…" । ଦୂର ଅତୀତର ସେହି ରକ୍ତରଙ୍ଗର ଗୋଲାପଗଛର ଛବିଭାସି ଉଠିଥିଲା ତାଙ୍କ ଆଖି ଆଗରେ ।

ଘରଟି ଛଅମାସ ପାଇଁ ଭଡ଼ା ନିଆଯାଇଛି । ଧରାବନ୍ଧା ନିୟମରେ ଚାଲୁଥିବା ଜୀବନର ଗତି ବଦଳିଲା…ନୂଆ ଜାଗା, ନୂଆ ଘର, ନୂଆ ଜୀବନ । ସ୍ମିତା, ନିତାନ୍ତ ଦରକାରୀ ଜିନିଷପତ୍ର ଯାହାକିଛି ସାଙ୍ଗରେ ଅଣାଯାଇଥିଲା ସେଗୁଡ଼ିକୁ ଚଟ୍‌ପଟ୍ ସଜାଡ଼ିବାରେ ଲାଗିଗଲା । ଠିକାରେ କାମକରି ଦେବାକୁ ନୂଆ ହିନ୍ଦୁସ୍ଥାନୀ ଚାକରାଣୀଟେ ନିଯୁକ୍ତ କରାଯାଇଛି—କାମରେ ସାହାଯ୍ୟ କରିବ ଆଉ ରଜୁବାବୁ ବାହାରକୁ ଗଲେ ସ୍ମିତା ପାଖରେ ଜଗିରହିବ । ତାର ଏ ନୂଆ ପରିଚାରିକାଟି ସହିତ କଥାବାର୍ତ୍ତା କରିବାକୁ କମ୍ କଷ୍ଟ ହେଉନ ସ୍ମିତାର । ଏକାବେଳେ ଗ୍ରାମ୍ୟ ହିନ୍ଦୁସ୍ଥାନୀ କହୁଥିଲା ସ୍ତ୍ରୀଲୋକଟି, ସେ ଭାଷାକୁ ସହଜରେ ବୁଝିପାରୁ ନଥିଲା ସ୍ମିତା; ଆଉ ସ୍ମିତା ଯେଉଁ ବହିପଢ଼ା ହିନ୍ଦୀ ଟିକେ ଅଧେ କହୁଥିଲା ତା ବୁଝିବାକୁ ପରିଚାରିକାର ବି କଷ୍ଟ ହେଉଥିଲା । କାହା କଥା କେହି ଯେତେବେଳେ ବୁଝିପାରୁ ନ ଥିଲେ ହସର ଲହରୀ ଛୁଟୁଥିଲା ଉଭୟ ପାଖରୁ ।

ଏହି ନୂତନ ପରିଚାରିକାଟିର ନାମ ଲଛମନିଆ । ବେଶ୍ ଭଲ ମଣିଷଟିଏ । ତାର ପାଚିଲାବାଳ ଆଉ ତା ଦେହର ବଳ ଭିତରେ ବହୁତ ପ୍ରଭେଦ । ବୟସ ହୋଇଯାଇଥିଲେ ବି ବେଶ୍ ଟାଣୁଆ ମାଇପିଟା ଲଛମନିଆ—ରୁଟି, ଡାଲି, ଖେଜୁର୍ ଆଉ ଗୁଡ଼ର ବହୁତ ତାକତ୍ ତା ଦେହରେ । ସେଦିନ ସତୀ ଓ ଜର୍ଜିଆନାଙ୍କ ପାଖକୁ ଯେଉ ଦୁଇଟା ଚିଠି ଦେଲା ସ୍ମିତା, ସେ ଚିଠିର ଅଧିକରୁ ବେଶି ଭାଗରେ ଲଛମନିଆର ବର୍ଣ୍ଣନା ଥିଲା ଖାଲି ।

ସେହି ନୂଆ ରୂପରାଜ୍ୟରେ ଦିନଗୁଡ଼ିକ କଟିଯିବାକୁ ଲାଗିଲା ବେଶ୍ ଭଲଭାବରେ. ତେବେ ବଡ଼ ନିଃସଙ୍ଗ ଭାବରେ । ସ୍ମିତା ଦିନ ଗଣୁଥିଲା, ସତୀଟାର ଗ୍ରୀଷ୍ମ ଛୁଟି କେବେ ହେବ, ସେ ଚାଲି ଆସିବ ଏଠାକୁ, ଦିନଗୁଡ଼ିକ କଟିବ ଚମତ୍କାର ।

ପ୍ରାତଃଭ୍ରମଣ ଉଦ୍ଦେଶରେ ପ୍ରତିଦିନ ଯିବା ପରି ସେଦିନ ସକାଳୁ ବି ରଜୁବାବୁ ବାହାରି ଯାଇଛନ୍ତି । ନିହାତି ଅସହ୍ୟ ହେଲେ କେବେ କମିତି ଗ୍ରୀଷ୍ମଟାବେଳେ ଅଳ୍ପ

ଦୂରରେ ଥିବା ଗୋଟିଏ ପର୍ବତ ଉପରସ୍ଥ ସୁରକ୍ଷିତ ଉଦ୍ୟାନକୁ ସେ ଯାଏ—ବରଫାବୃତ କାଞ୍ଚନଜଙ୍ଘାର କୋଳରେ ଅସ୍ତଗାମୀ ସୂର୍ଯ୍ୟରଶ୍ମି ଯେଉଁ ସ୍ୱର୍ଗୀୟ [illegible] ଜାଳେ ଟରେ ତା'କୁ ମନପ୍ରାଣ ଭରି ଦେଖେ ସେ । ସକାଳୁ ଯିବା ସମ୍ଭବ ହୁଏନି, [illegible] ରୋଷେଇ, ରନ୍ଧା'ବଢ଼ା କାମ···ସେ ସବୁ ଦାୟିତ୍ୱ ତ ଅଛି !

ବାପା ବା'ହାର ଯିବା ପରେ ସେ ଚୁଲି ଲଗାଇବାକୁ ଯାଇ ଦେଖିଲା ଜାଳେଣି କାଠ ପୂରା ସରଯାଇଛି ! କାଲି ଲଛମୀ ହାତରେ ବଜାରରୁ ଅଣାଇବାକୁ ଭୁଲିଯାଇଛି ସେ । ବଡ଼ ସମସ୍ୟାର କଥା । ଘଣ୍ଟାଏ ଦେଢ଼ଘଣ୍ଟା ପରେ ବାପା ଫେରିବେ । ସେ ଆସିଲା ପରେ ଲଛମୀକୁ ପଠାଇ କାଠ ଅଣାଇ ରନ୍ଧା ବସାଇଲା ବେଳକୁ ବେଳ ଗଡ଼ିଯିବ । ବଜାରଟା ବହୁତ ଦୂରରେ । ଅପରିଚିତ ଜାଗା, ସାହିପଡ଼ିଶା ବୋଲି କେହି ଆଖପାଖରେ ନାହାନ୍ତି । ଲଛମୀ ଏହିକ୍ଷଣି ବଜାରକୁ ଯଦି ଯିବ ତାହେଲେ ଘରେ ତାକୁ ଏକୁଟିଆ ରହିବାକୁ ପଡ଼ିବ । ଦୋଦୋପାଞ୍ଚ ହୋଇ ଶେଷକୁ ଲଛମୀକୁ ପଇସା ଦେଇ ପଠାଇଲା ସେ ବଜାରକୁ । ଭଲରୂପେ ଭିତରୁ କବାଟ ବନ୍ଦ କରିବାର ଉପଦେଶ ଓ ଅପରିଚିତ କାହାକୁ ଦୁଆର ନ ଖୋଲିବାର ଉପଦେଶ ଦେଇ ଲଛମୀ ଓହ୍ଲାଇଗଲା ତଳକୁ ।

ସଂପୂର୍ଣ୍ଣ ଏକାକୀ ଘର ଭିତରେ ରହିବା ସ୍ମିତା ପକ୍ଷରେ ଏକ ନୂତନ ଅଭିଜ୍ଞତା । ଜୀବନରେ ଆଜି ସେ ସଂପୂର୍ଣ୍ଣ ଏକୁଟିଆ ରହିଲା । ଦେହ ଓ ମନ କମିତ ଛମ୍ ଛମ୍ କରିଉଠିଲା ତାର । ସା'ଦ୍ୟ ବାନ୍ଧ ଶୋଇବାଘରର ଝରକା ଉପରେ ବସି ସେ ଦେଖିବାକୁ ଚେଷ୍ଟାକଲା ବଗିଚା ଆଡ଼କୁ । ଫୁଟନ୍ତା ଫୁଲର ସୌନ୍ଦର୍ଯ୍ୟ ସବୁବେଳେ ତାକୁ ମୁଗଧ କରିଛି, ନାନାପ୍ରକାର ଦୁଃଖରୁ ତା ମନକୁ ଭୁଲାଇ ଦେଇଛି । ସେହି ପୁଷ୍ପସମ୍ଭାରର ଶୋଭାରାଶି ଆଜି ମଧ୍ୟ ତାର ନିଃସଙ୍ଗତାକୁ ଦୂର କରିପାରିବ ।

କିନ୍ତୁ ଫଳ ହେଲା ଓଲଟା—ସେଦିନ ଫୁଲର ସେହି ପ୍ରସ୍ଫୁଟିତ ଶୋଭାକୁ ଚାହିଁଲାକ୍ଷଣି ହଠାତ୍ ଗୋଟାଏ ଜନ୍ମ ପରେ ମହେଶର କଥା ମନେପଡ଼ିଲା ତାର, ଆଉ ତା ସଙ୍ଗେ ମନେ ପଡ଼ିଲା ଯେ ସେ ମହେଶକୁ ଭୁଲିଛି । ଭୁଲିଯାଇଛି....ସଂପୂର୍ଣ୍ଣ ଭୁଲିଯାଇଛି । ମହେଶର କଥା ସଂପୂର୍ଣ୍ଣ ରୂପେ ପୋଛି ହୋଇଯାଇଛି ତା ମନରୁ । ବହୁତ ଦିନ ହେଲା, ବୋଧହୁଏ ବର୍ଷ ବର୍ଷ ବିତିଗଲାଣି ସ୍ୱା ଭିତରେ—ଦିନଟେ ସୁଦ୍ଧା ସେ ମନେପକାଇନାହିଁ ତା କଥା । ମହେଶର ଚେହେରାଟା ଅସ୍ପଷ୍ଟ ହୋଇଗଲାଣି । କପିରି ସେ ଦେଖିବାକୁ ଥିଲା, ଆଜି ତାହା ଚେଷ୍ଟାକରି ମଧ୍ୟ ସ୍ପଷ୍ଟ ମନେପକାଇପାରୁନି ସେ ।...ଆଚ୍ଛା, ନିର୍ଜ୍ଜନ ଘର ଭିତରେ ପଡ଼ି ଅଶରୀରୀ ପ୍ରେତାତ୍ମା ଦେଖାଦିଏ ? କଥାଟା ମନକୁ ଆସିଲାକ୍ଷଣି ଦେହ କଣ୍ଟକିତ ହୋଇ ଉଠିଲା ଭୟରେ । ସେ ଆଜି ଏକା, ଆଖପାଖରେ ଜନପ୍ରାଣୀର ଚିହ୍ନବର୍ଣ୍ଣ ନାହିଁ, ପାହାଡ଼ିଆ ଜାଗା....ଦେହଟା ଛମ୍ ଛମ୍ କଲା ସିମିତ । ଅକାରଣରେ ହୃତ୍‌ସ୍ପନ୍ଦନ ବହୁତ

ଜୋର୍‌ରେ ଜ... ...ମାଙ୍କୁ ଲାଗିଲା । ତାକୁ ଲାଗିଲା ସେ ମୂର୍ଚ୍ଛା ହୋଇପଡ଼ିବ, ନହେଲେ ତାର ହୃଦ୍‌ଯନ୍ତ୍ରର କ୍ରିୟା ଦୁଇହାତର ମୂଠାରେ ବନ୍ଦ ହୋଇଯିବ ତାର । ଝରକାର ରେଲିଂ ଦୁଇଟାକୁ ପ୍ରାଣପଣ ଜୋର୍‌ରେ ମୁଠାଇ ଧରିଲା ସେ । ତାକୁ ଲାଗିଲା କେତେ ଭିଡ଼ି ଧରିଲେ ବି ହାତମୂଠା ଦି'ଟା ଖାଲି ଆହୁରି ହୁଗୁଳା ହୋଇଗଲା ପରି ଲାଗୁଛି । ମୁହଁ ଫେରାଇ ସେ ନିଜର ପଛପଟକୁ ଚାହିଁ ପାରିଲା ନାହିଁ । କ୍ରମେ କ୍ରମେ ସେ ଅନୁଭବ କରିବାକୁ ଲାଗିଲା ତା ପାଖରେ ଗୋଟାଏ ଅଶରୀରୀ ଆତ୍ମାର ଅସ୍ତିତ୍ୱ, ଘରଟା ଭିତରେ ଯେପରି କାହାର ନିଃଶ୍ୱାସପ୍ରଶ୍ୱାସ ପଡ଼ୁଥିବାର ଶବ୍ଦ ସେ ଶୁଣିପାରୁଛି ସ୍ପଷ୍ଟଭାବରେ, ଅସ୍ପଷ୍ଟ ପାଦଶବ୍ଦ ମଧ୍ୟ ଯିମିତି ଶୁଭୁଛି । ଏଇକ୍ଷଣି...ହଁ ଏଇକ୍ଷଣି ମହେଶ୍ ତା ପାଖକୁ ଚାଲିଆସିବ, ତାର କଙ୍କାଳସାର ବଜ୍ରମୁଷ୍ଟିରେ ସ୍ମିତାର ହାତକୁ ଚିପିଧରି ବିକୃତ କଠିନ କଣ୍ଠରେ ମାଗିବ କୈଫିୟତ୍—ମୃତ ସ୍ୱାମୀଙ୍କର ସ୍ମୃତିକୁ ସମ୍ମାନ ଦେବାରେ ସେ ଅବହେଳା କରିଛି, ବିଧବାର ନିୟମ ପାଳିବାରେ ସେ ଅବହେଳା କରିଛି । ତା ବେଶକୁ ଚାହିଁ ମହେଶର କଙ୍କାଳ ଅଟ୍ଟହାସ୍ୟ କରିଉଠିବ...ସେଇ ଚକ୍ଷୁ କୋଟରର ଦୁଇଟିରେ ଯେପରି ପ୍ରସ୍ଫୁରକ ପରି ଦୁଇଟି ଅଗ୍ନିପିଣ୍ଡ ଜଳିଉଠିବ ହଠାତ୍...ବିକଟ କଣ୍ଠରେ ସେ ପଚାରିବ, "ମତେ ଭୁଲିଲ କାହିଁକି ? ଏ ଶାଢ଼ୀ ଏ ଚୁଡ଼ି ପିନ୍ଧିବା କି ଦରକାର ଥିଲା ତମର ? ଧର୍ମକୁ ଭୁଲିଯିବାର, ଏହିସବୁ ପାପ ଆଚରଣ କରିବାର ନିର୍ମମ ଶାସ୍ତି ମୁଁ ତମକୁ ଦେବ...ନିର୍ମମ ଶାସ୍ତି···"

ସ୍ମିତାର ସାରା ଶରୀର ଝିମ୍ ଝିମ୍ ହୋଇଗଲା । ଭୟରେ ଆଖି ଦୁଇଟା ବୁଜି ହୋଇଗଲା ତାର । ଖଟ୍, ଖଟ୍, ଖଟ୍...ପରିଷ୍କାର ଶବ୍ଦ ଶୁଣିପାରିଲା ସେ···କଙ୍କାଳର ପଦସଞ୍ଚାରର ଶବ୍ଦ ତାହା !···ସ୍ମିତା ପାଟିକରି କାହାକୁ ଡାକିବ ···ଦୌଡ଼ି ପଳାଇବ ...ହେଇଟି....ସେ ଶବ୍ଦ ଆଗେଇ ଆସୁଛି···ପାଖେଇ ଆସୁଛି । କଙ୍କାଳ ଲମ୍ବା ଲମ୍ବା ହାତ ଦିଟା ବଢ଼େଇ ସେ ଆଗେଇ ଆସୁଛି ! (ସ୍ମିତା ପିଲାଦିନେ ଶୁଣିଥିଲା ଯେ ପ୍ରେତାତ୍ମା ମଣିଷଙ୍କର ତଣ୍ଟି ଚିପିଦିଏ ।) ତେଣୁ ବର୍ତ୍ତମାନ ସେ ଅନୁଭବ କଲା ନିଃଶ୍ୱାସ ନେବାକୁ କଷ୍ଟ ହେଉଛି ତାକୁ କ··ଳରୁ ଝରିପଡ଼ୁଛି ବିନ୍ଦୁ ବିନ୍ଦୁ ଝାଳ, ଗୋଟାଏ ମୃତ୍ୟୁ ଶୀତଳ ହିମ ପ୍ରବାହ ଯେପରି ତାର ସମସ୍ତ ଚେତନାକୁ ଆଚ୍ଛନ୍ନକରି ରଖିଥିଲା, ଆଉ ହୃଦ୍‌ଯନ୍ତ୍ରର ଦ୍ରୁତଗତି ଯୋଗୁଁ ଶ୍ୱାସରୁଦ୍ଧ ବ୍ୟକ୍ତିର ସେ ସାଁ ସାଁ ହେଉଥିଲା ।

ହଠାତ୍ ଏ ସମୟରେ ଭୀଷଣ ଜୋରରେ ବାହାର ଦୁଆରର ଶିକୁଳି ଝଣଝଣ ହୋଇ ବାଜିଉଠିଲା, ଆଉ ସେ ଶବ୍ଦ ତାକୁ ଯିମିତି ଗୋଟାଏ ପବନହୀନ ଅନ୍ଧକୂପ ଭିତରୁ ଟାଣିଆଣିଲା ବାହାରକୁ । ଡାକିବା ବ୍ୟକ୍ତି କିଏ ହୋଇଥାଇପାରେ ସେ କଥା ସେ ପରିସ୍ଥିତିରେ ଭାବିବା ତା ପକ୍ଷରେ ସମ୍ଭବ ନ ଥିଲା । ଭଲମନ୍ଦ ବିଚାର କରିବାର ଚିନ୍ତାଶକ୍ତି ଲୋପ ପାଇଯାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୁଣମୁକ୍ତ ଶର ପରି ବିଦ୍ୟୁତ୍‌ବେଗରେ

ଦୌଡ଼ିଯାଇ କବାଟଟା ଧଡ଼ାସ୍ କରି ଠିଆମେଲି କରିଦେଲି ସ୍ମିତା । ତାପରେ ଆଗକୁ ବୁଲିଦେଇ ଖୋଲି ଦୁଆରବନ୍ଧ ଦୁଇଟାକୁ ଦୁଇହାତରେ ଚପିଧରି ଠିଆହୋଇପଡ଼ିଲି । ପାଦଠାରୁ ମୁଣ୍ଡପର୍ଯ୍ୟନ୍ତ ଥରଗଲା ଭୀଷଣଭାବରେ—ହଠାତ୍ ସିମିତ ମୃତ୍ୟୁ ଆଉ ଜୀବନ ଦୁଇଟାଯାକ ବଭୀଷିକା ହୋଇ ଆଗରେ ଠିଆହୋଇଛନ୍ତି । ବିଦ୍ୟୁତ୍‌ବେଗରେ ସ୍ମିତାର ମନ ଭିତରେ କେତେ କଥା ଖେଳିଗଲା...ଘରଆଡ଼ ଭୀଷଣ ନିର୍ଜନ ଆଉ ସେ ଏକା । ଦୁଆର କାହାକୁ ନ ଖୋଲିବାକୁ କହିଯାଇଥିଲା ଲଛମନସିଂ...ଏଠୁ ଡ଼ାକ ପକାଇଲେ କେହି ଶୁଣିବେନି...ଆଉ ସେ ଠିଆହୋଇପାରୁନି...ଓଃ ମୁଣ୍ଡ ଘୂରିଯାଉଛି...ଏଇକ୍ଷଣି ପଡ଼ିଯିବ... ପଡ଼ିଯିବ ।

ସ୍ୱାଭାବିକ ଅବସ୍ଥାରେ ଯଦି ସ୍ମିତା ଥାଆନ୍ତା ତାହେଲେ ସେ ଏତେ ଡରିଯାଇ ନଥାନ୍ତା ନିଶ୍ଚୟ, କାରଣ ଆଗନ୍ତୁକ ବ୍ୟକ୍ତିର ଚେହେରାରେ ଭୟ ପାଇଲା ଭଳି କିଛି ନଥିଲା । ବରଂ ବେଶ୍ ଭଦ୍ର ନମ୍ର ଚେହେରା । ସ୍ମିତାର ଅବସ୍ଥା ଦେଖି ଭୀଷଣ ବିଚଳିତ ହୋଇ-ପଡ଼ିଥିଲା ଯୁବକଟି । ଟିକିଏ ଇତସ୍ତତଃ ହେଲାପରେ କହିଲା, "ହେଇଟି...ମାନେ....ଘରେ ଆଉ କାହାକୁ କହିଦେବେ ଟିକେ ଦୟାକରି....ପୁରୁଷ ଲୋକ କିଏ ଯଦି ଥାଆନ୍ତି...କି ନ ହେଲେ..."

ଅନ୍ୟ ସମୟରେ ହୋଇଥିଲେ ଓଡ଼ିଶାଠୁ ସୁଦୂରରେ ଥିବା ଏହି ଅପରିଚିତ ସ୍ଥାନରେ ପରିଷ୍କାର ଓଡ଼ିଆ ଶୁଣି ସ୍ମିତା ଆଶ୍ଚର୍ଯ୍ୟ ହୋଇଯାଇଥାନ୍ତା, କିନ୍ତୁ ସେତେବେଳର ସେ ଅବସ୍ଥାରେ ତାର ଏସବୁ କିଛି ବୋଧଗମ୍ୟ ହୋଇ ପାରିଲା ନାହିଁ...ଖାଲି ବୋକାଙ୍କ ଭଳି ଚାହିଁ ରହିଲା ।

ନିରୁପାୟ ଭାବରେ ଯୁବକଟି କହିଲା, "ଘରେ କଣ ଆପଣ ଏକା ? ଆଉ କେହି ନାହାନ୍ତି ?"

ସନ୍ତ୍ରସ୍ତ ପରି ସ୍ମିତା ନିଜର ମୁଣ୍ଡଟାକୁ ହଲାଇ ସମ୍ମତି ଜଣାଇଲା । ଦେହର ଭାର ସିମିତ ଆଉ ସେ ସମ୍ଭାଳି ପାରୁନି । ପ୍ରାଣପଣ ଚେଷ୍ଟାରେ ମୁଠେଇ ଧରିଛି ଦୁଆରବନ୍ଧଟାକୁ । ହାତମୁଠା ଶିଥିଳ ହୋଇଯାଉଛି ଥରକୁଥର । ତାର ବିବର୍ଣ୍ଣ ମୁହଁଟିକୁ ଚାହିଁ ଢୋକ ଗିଳି ଯୁବକ ଏଥର କହିଲା, "ଏଇ ଦେଖନ୍ତୁ ତ....ବଡ଼ ହଇରାଣିଆ କଥା...ଆପଣ...ଆପଣ ବ୍ୟସ୍ତ ହେବେନି । ଇମିତି କିଛି ହେଇନି, ହେଲେ ଖବରଟା ଆପଣ ଜାଣିବା ଉଚିତ—ମାନେ ମଟର ଦୁର୍ଘଟଣା ହେଇ ରାଜକିଶୋରବାବୁଙ୍କର ...ଆରେ...ଆରେ..." ସେତିକିରେ ତାର କଥା ବନ୍ଦହୋଇରହିଲା ।

ହଠାତ୍ ସ୍ମିତାର ମସ୍ତିଷ୍କର ସମସ୍ତ ତନ୍ତ୍ରୀରେ କେବଳ ପ୍ରତିଧ୍ୱନିତ ହୋଇଥିଲା ସେ କଥାଟା ମଟର...ଦୁର୍ଘଟଣାରେ....ବାପାଙ୍କର.... । ପରକ୍ଷଣରେ ଅଦ୍ଭୁତ ଆଉ ବିଚିତ୍ର ପ୍ରକାର

ହୋ ହା ଧ୍ୱନି ଏକାସାଙ୍ଗରେ ଝଙ୍କୃତ ହୋଇଉଠିଲା ତାର ଚାରିଆଡ଼େ...ତାପରେ... ଅନ୍ଧାର... ଖାଲି ଅନ୍ଧାର । ହାତର ମୁଠା ଢିଲା ହୋଇଗଲାକ୍ଷଣି ଗଛକାଟିଲା ପରି ସେଇଠି ସେ ଦୁଆର ମୁହଁରେ ସ୍ମିତାର ଅଚେତ ଦେହଟା ଲୋଟି ପଡ଼ୁଥିବାବେଳେ ଧରିନେଲା ସୁବ୍ରତ ।

କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ କେତେମୁହୂର୍ତ୍ତ ବିତିଯିବାପରେ ଡାକ୍ତର ଭାବରେ ସୁବ୍ରତର କର୍ତ୍ତବ୍ୟ ଚେତନା ଉଦୟ ହେଲା । ମୂର୍ଚ୍ଛିତା ନାରୀଟିର ଶୁଶ୍ରୂଷା କରିବା ଦରକାର । ମୂର୍ଚ୍ଛିତାର ଶରୀରଟିକୁ ଯତ୍ନରେ ସେଠି ଶୁଆଇଦେଇ, ଜୋତା ଖୋଲି ବାହାରେ ରଖି, ଘର ଭିତରକୁ ପାଦ ବଢ଼ାଇଲା ସେ । ଘର ଭିତରେ ବୁଲି ଖୋଜି ପଙ୍ଖା, ପାଣି, ତଉଲିଆ ପ୍ରଭୃତି ଆଣି ସେଇଠି ଆଣ୍ଠୁମାଡ଼ି ବସି ସ୍ମିତାର ଚେତନା ଫେରାଇଆଣିବାକୁ ଚେଷ୍ଟାକଲା ସେ ।

କେତେ ସମୟ ପରେ ସ୍ମିତା ଆଖିମେଲି ଚାହିଁଲା । ତାକୁ ଲାଗିଲା ସେ ସ୍ୱପ୍ନ ଦେଖୁଛି ।

“ଆପଣ ସତରେ ଏଡ଼େ ନର୍ଭସ୍ ଲୋକ... ଦେହ ଅପେକ୍ଷାକୃତ ଭଲ ଲାଗୁଛି ତ ?” ସ୍ମିତାର ଚେତନା ଫେରିଆସିବାକ୍ଷଣି କୁଣ୍ଠିତ ହୋଇପଡ଼ିଲା ସୁବ୍ରତ । ନିଜର ସେ କୁଣ୍ଠିତ ଭାବଟାକୁ କଟାଇବାକୁ ଚେଷ୍ଟା କଲା ସେ ।

କାନରେ ସେ ସ୍ୱର ଶୁଣି ସ୍ମିତାର ମନେ ପଡ଼ିଲା—ଏ ସ୍ୱପ୍ନ ନୁହେଁ.... ଏକାବେଳେ ସତ୍ୟ । ସତରେ ତାହେଲେ ମଟର ଦୁର୍ଘଟଣା ହେଇ ବାପାଙ୍କର...

ସେ ଆଉ କିଛି ଭାବି ପାରିଲା ନାହିଁ । ହଠାତ୍ ସ୍ଥାନ କାଳ ପାତ୍ର ଭୁଲି ଶିଶୁଟିଏପରି ଚିତ୍କାରକରି କାନ୍ଦି ଉଠିଲା, “ବାପା... ମୋ ବାପା...”

“ଇସ୍, ଆପଣ ଇମିତ ଅଧୈର୍ଯ୍ୟ କାହିଁକି ହେଉଛନ୍ତି ଯେ ! ବାପା ଆପଣଙ୍କର ଭଲ ଅଛନ୍ତି.... ବିଶେଷ କିଛି ହେଇନି, ଭୟ କରିବାର କିଛି ନାହିଁ । ତାଙ୍କୁ ଡାକ୍ତରଖାନାକୁ ନିଆଯାଇଛି । ଉଠନ୍ତୁ ତ....ସେ ଆରାମଚୌକିଟା ପାଖକୁ ଯାଇ ପାରିବେ ? ଆଉଜି ବସିଲେ ଟିକେ ଭଲ ଲାଗିବ ।”

ଅପରିଚିତ ଲୋକଟି ଆଗରେ ସେ ଶୋଇରହିଛି ଭାବିଲାକ୍ଷଣି ଧଡ଼ପଡ଼ ହୋଇ ଉଠି ବସିଲା ସ୍ମିତା । କିନ୍ତୁ ତାର ଅବସନ୍ନ ଶରୀରରେ ଶକ୍ତି ନ ଥିଲା ଉଠି ଠିଆ ହେବାକୁ । କୌଣସିମତେ ଶରୀରଟାକୁ ଟାଣି ସେଇଠି ତଳେ କାନ୍ଥକୁ ଆଉଜି ବସିଲା ସେ । ପଙ୍ଖା ପ୍ରଭୃତି ଯଥା ସ୍ଥାନରେ ରଖି, ଶେଷରେ ଚୌକିଟାକୁ ସ୍ମିତା ପାଖକୁ ନେଇଆସି କହିଲା ସୁବ୍ରତ, “ଏଥର ବସନ୍ତୁ ତ... ।”

ସ୍ମିତାର ବିବର୍ଣ୍ଣ ମୁହଁରେ ଝଲକାଏ ରକ୍ତ ଯେପରି ଖେଳିଗଲା ମୁହୂର୍ତ୍ତକ ପାଇଁ ଅପରିଚିତ କୌଣସି ବ୍ୟକ୍ତି ସହିତ ଆଳାପ କରିବାରେ ସେ ଆଦୌ ଅଭ୍ୟସ୍ତ ନୁହେଁ ।

ପରିସ୍ଥିତି ଆଜି ତାକୁ ସମ୍ପୂର୍ଣ୍ଣ ଅପରିଚିତ ଏକ ବ୍ୟକ୍ତିର ଏକାନ୍ତ ନିକଟକୁ ଟାଣିଆଣିଛି । ପଙ୍ଖା, ତଉଲିଆ, ଜଳପାତ୍ର ସବୁ ଦେଖିଲାକ୍ଷଣି ଜାଣିଥିଲା ଯେ ଏହି ଅପରିଚିତ ଯୁବକଟିର ଶୁଶ୍ରୂଷାରେ ହିଁ ସେ ତାର ଚେତନା ଫେରିପାଇଛି । ଏହା ସବୁ ଭାବି ସିଧାସଳଖ ଆଉ ସେ ଚାହିଁ ପାରିଲାନି ସୁବ୍ରତର ମୁହଁକୁ ; କିନ୍ତୁ ତାର ଅନୁରୋଧ ରଖିଲା ସେ । ଆରାମଚୌକିଟି ଉପରେ ନ୍ୟସ୍ତ କଲା ନିଜର ଶ୍ରାନ୍ତ ଅବସନ୍ନ ତନୁଲତାକୁ ।

ଅନେକକ୍ଷଣ କଟିଗଲା ନୀରବତା ମଧ୍ୟ ଦେଇ । ଏ ନୀରବତା ଯେ ନିତାନ୍ତ ଅଶୋଭନୀୟ ହୋଇପଡ଼ୁଛି, ସେ କଥା ଜାଣି ସୁଦ୍ଧା କେହି କାହାକୁ କଥା ପଦେ କହି ପାରିଲେ ନାହିଁ । ବାପାଙ୍କର ପ୍ରକୃତ ଅବସ୍ଥା କଥା ଜାଣିବାକୁ ମନପ୍ରାଣ ବ୍ୟାକୁଳ ହେଉ ଥିଲେ ସୁଦ୍ଧା ଲଜ୍ଜା, ଭୟ, ଆଶଙ୍କାରେ ସ୍ମିତାର କଣ୍ଠସ୍ୱର ଫୁଟି ଉଠି ପାରିଲା ନାହିଁ ।

ପାହାଚ ଉପରେ ପାଦଶବ୍ଦ ଶୁଭିଲା, ଅଳ୍ପ ସମୟ ପରେ ଦ୍ରୁତଗତିରେ ଘର ଭିତରେ ପ୍ରବେଶକଲା ଲଛମୀ । ତଳେ ସୁବ୍ରତର ଗାଡ଼ିଟାକୁ ଦେଖି ମନେ ମନେ ଶଙ୍କିତ ହୋଇ ଉଠିଛି ସେ । ଘର ଭିତରେ ପାଦରଖି ସୁବ୍ରତକୁ ଦେଖିଲାକ୍ଷଣି କହିଉଠିଲା, "ଡାକ୍ତରବାବୁ, ଆପଣ !"

ଲଛମନିଆକୁ ଦେଖି ସୁବ୍ରତ ମଧ୍ୟ କେତେକାଂଶରେ ଆଶ୍ୱସ୍ତ ହେଲା । ଅପରିଚିତା, କୁଣ୍ଠିତା ତରୁଣୀଟି ଆଗରେ ମୂକଭଳି ବସି ରହିବାକୁ ସେ ବି କମ୍ ଅପ୍ରସ୍ତୁତ ଅନୁଭବ କରୁନଥିଲା ।

"କାଠ ରଖିଦେଇ ଆ ଲଛମୀ, କଥା ଅଛି ।" ପରିଷ୍କାର ହିନ୍ଦୁସ୍ଥାନୀରେ କହିଲା ସେ । ତାର ହିନ୍ଦୀ ଉଚ୍ଚାରଣ କରିବାର ସେହି ଚମତ୍କାରିତା ଲକ୍ଷ୍ୟକରି ବିସ୍ମୟରେ ଆଖି ଉଠାଇ ଚାହିଁଲା ସ୍ମିତା, ଆଉ ଲଛମୀ ଆଡ଼ୁ ମୁହଁ ଫେରାଇଲାକ୍ଷଣି ସେହି ବିସ୍ମିତ ଦୃଷ୍ଟି ସାଙ୍ଗରେ ମିଶିଗଲା ସୁବ୍ରତର ପରିପୂର୍ଣ୍ଣ ଦୃଷ୍ଟି । ଆରକ୍ତ ମୁହଁଟିକୁ ସାଙ୍ଗେ ସାଙ୍ଗେ ନୁଆଁଇ ଦେଲା ସ୍ମିତା ...ସୁବ୍ରତ ମଧ୍ୟ ଯେପରି ଅନୁଭବ କଲା ନିଜ ଦେହ ଭିତରେ ପୁଲକିତ ଏକ ଅପୂର୍ବ ଶିହରଣ । ସେ ବି ଆନତ କଲା ନିଜର ଦୃଷ୍ଟିକୁ । କାଠ ବୋଝଟା ଭିତରେ ରଖିଦେଇ ଫେରି ଆସିଲା ଲଛମୀ । ଏଥର ଗଳାକୁ ସଫାକରି ଟିକିଏ ଦ୍ୱିଧାଗ୍ରସ୍ତ ଭାବରେ ସ୍ମିତାକୁ ଚାହିଁ କହିଲା ସୁବ୍ରତ, "ଆପଣ ଯଦି ଦୟାକରି ଟିକେ ଭିତରକୁ ଯାଆନ୍ତେ "

ହଠାତ୍ ସୁବ୍ରତକୁ ବିସ୍ମିତ କରିଦେଇ ଦୃଢ଼କଣ୍ଠରେ କହି ଉଠିଲା ସ୍ମିତା, "ନାଇଁ, ଆପଣ କହନ୍ତୁ, ବାପାଙ୍କର କଣ ହୋଇଛି ? କିମିତି ଅଛନ୍ତି ସେ ? ମୁଁ ଯିବି ତାଙ୍କ ପାଖକୁ..."

"ବର୍ତ୍ତମାନ ବି ଅଚେତ ଅବସ୍ଥାରେ ଅଛନ୍ତି..."

"ଏଁ !"

"ଗୋଟାଏ ବୁଲଣି ପାଖରେ ଟ୍ରକ୍‌ଟାଏ ଅନ୍ୟଆଡ଼ୁ ଆସୁଥିଲା, ଧକ୍‌କା ଲଗିଛୁ । ତେବେ ଭଗବାନଙ୍କୁ ଅଶେଷ ଧନ୍ୟବାଦ, ଧକ୍‌କା ଫଳରେ ସେ ଟ୍ରକ୍ ଆଗରେ ପଡ଼ଯାଇ ନାହାନ୍ତି, ବରଂ ବାହାରପଟକୁ ଛିଟ୍‌କି ପଡ଼ଯାଇଥିଲେ । ଖଣ୍ଡିଆଖାବର ବିଶେଷ କିଛି ହେଉନି ଦେହରେ. ତେବେ ଜଣାପଡ଼ୁଛି ଗୋଟାଏ ହାତର ହାଡ ଜଖମ ହୋଇଯାଇଛି, ଆଉ ମୁଣ୍ଡଟା ଜୋର୍‌ରେ ପିଟିହୋଇଯିବାରୁ ଚେତା ବୁଡ଼ି ଯାଇଛି ..ଆଉ କେତେଘଣ୍ଟା ପରେ ଚେତା ଫେରିଆସିବ ।"

ଶୁଣୁ ଶୁଣୁ ସ୍ମିତାର ମୁହଁଟି ପାଂଶୁଳ ବର୍ଣ୍ଣ ଧାରଣ କଲା । ସେଇ ବିବର୍ଣ୍ଣତାକୁ ଲକ୍ଷ୍ୟ କରି ତର ତର ହୋଇ କହିଲା ସୁବ୍ରତ, "ଡରିବାର କିଛି ନାହିଁ...ଚେତା ଫେରିଆସିବ ଚଞ୍ଚଳ ।"

ଯେତେ ଚେଷ୍ଟା କଲେ ବି ଅସହାୟା ସ୍ମିତା ତାର ଆଖିର ଲୁହକୁ ଅଟକାଇ ପାରି ନଥିଲା । ମୁକ୍ତାବିନ୍ଦୁ ଭଳି ଝରିଯିବାକୁ ଲଗିଲା ଅମାନିଆ ଲୁହଧାର ।

"ଆହା...." ଲଛମୀ ବି ପୋଛିନେଲା ନିଜର ସଜଳ ଆଖିଦୁଇଟା, "ବାବୁଙ୍କୁ ଡାକ୍ତର-ଖାନାକୁ କିଏ ନେଲା ମୋ ? ସେଇ ଟ୍ରକ୍‌ବାଲା ?"

"ନା, ଟ୍ରକ୍‌ବାଲା ଟ୍ରକ୍ ଛାଡ଼ିଦେଇ ଅଦୃଶ୍ୟ ହୋଇଯାଇଛି । କେତେଜଣ ଭଦ୍ରଲୋକ ସେ ବାଟରେ ଆସୁଥିଲେ, ସେମାନେ ସବୁ ବ୍ୟବସ୍ଥା କଲେ । ତାଙ୍କ ଭିତରୁ ଜଣେ କିପରି ଜାଣିଥିଲେ ଯେ ରାଜୁବାବୁ ଏଇ ଘରେ ରହୁଛନ୍ତି ଆଉ ସେ ଓଡ଼ିଶାର ଲୋକ । ମୋ ପ୍ରଦେଶର ଲୋକ ଶୁଣି ମୋର ଆଗ୍ରହ ହେଲା, ସେ ଭଦ୍ରଲୋକଙ୍କୁ ପଠାଇବା ବଦଳରେ ମୁଁ ନିଜେ ଚାଲିଆସିଲି..."

କପାଳରେ ମୃଦୁ କରାଘାତ କରି କହିଲା ଲଛମୀ, "କି କପାଳ, ସବୁଦିନପରି ବୁଲିବାକୁ ତ ଯାଇଥିଲେ ଆଜି ତାଙ୍କ ଭାଗ୍ୟରେ ଏଇଆ ଘଟିବାକୁ ଥିଲା···ଏବେ କଣ ହେବ, କିପରି ହେବ, ଘରେ ତ ମରଦ ଆଉ କେହି ନାହାନ୍ତି, ପୁଅ ତାଙ୍କର ତାଙ୍କ ଦେଶରେ ପଢ଼ୁଛନ୍ତି···ନାନୀ ଏଠି ଏକା କଣ କରିବେ ।"

ସାନ୍ତ୍ୱନା ଦେଇ କହିଲା ସୁବ୍ରତ, "ପରର କଥା ପରେ ଚିନ୍ତା କରି ଦେଖିବା ଉଚିତ ଲଛମୀ !" ତାପରେ ସ୍ମିତାର ଅଶ୍ରୁସିକ୍ତ ମୁହଁକୁ ଚାହିଁ କହିଲା, "ଆପଣଙ୍କୁ ଧୈର୍ଯ୍ୟ ଧରିବାକୁ ପଡ଼ିବ...ଯାଆନ୍ତୁ ଚଞ୍ଚଳ କିଛି ଖାଇଦେଇ ଆସନ୍ତୁ ତ, ଡାକ୍ତରଖାନାକୁ ଯିବେ..."

ଆଖି ପୋଛି ସିକ୍ତ କଣ୍ଠରେ ସ୍ମିତା କହିଲା, "ଚାଲନ୍ତୁ, ମୁଁ ଆଗ ବାପାଙ୍କ ପାଖକୁ ଯିବି ।"

ଯେଉଁ ଲୁଗାରେ ଘରେ ଶୁଇ ଦେଇ ଲଛମୀ ସାଙ୍ଗରେ ଓହ୍ଲାଇ ଆସିଲା ସ୍ମିତା । ପୂର୍ବରୁ ଓହ୍ଲାଇଯାଇ ମଟର ପାଖରେ ଅପେକ୍ଷା କରୁଥିଲା ସୁବ୍ରତ । ଦୁହେଁଯାକ ଗାଡ଼ିରେ ଯାଇ ବସିଲେ ।

ଡାକ୍ତରଖାନାରେ ପିତାଙ୍କର ଅଚେତନ ଦେହଟା ଦେଖିଲାକ୍ଷଣି ପୁଣି କୋହ ଉଚ୍ଛୁଳି ଉଠିଲା ତାର । ଗୋଟେ ଶିଶୁ ଭଳି କାନ୍ଦି ଉଠିଲା ସେ । ଦୀର୍ଘ ଛ ଘଣ୍ଟାପରେ ରାଜକିଶୋର ବାବୁଙ୍କର ଚେତନା ଫେରି ଆସିଲା । ଆକୁଳ ଆଖିରେ ଗୋଟାଏ ଜାଗାରେ ବସି ସେ କେବଳ ଚାହିଁ ରହିଥିଲା ତାଙ୍କର ମୁହଁକୁ ଏଇ ଛଘଣ୍ଟାକାଳ । ପଥରର ଗୋଟାଏ ନିଖୁଣ ପ୍ରତିମାପରି ନୀରବ ନିଶ୍ଚଳ ହୋଇ.. ମୁହଁରେ ଟୋପାଏ ପାଣି ସୁଦ୍ଧା ଦେଇନି ସାରାଦିନ । ବାପାଙ୍କ ଚେତନା ଫେରିବାପରେ ଯେପରି ତାର ମୃତ ପିଣ୍ଡରେ ହେଲା ଜୀବନର ସଞ୍ଚାର । ଗତ ଛଘଣ୍ଟାକାଳ ସେ ଦେଖିଛି ତାର ନିରୁପାୟ ଅସହାୟ ଭବିଷ୍ୟତ୍‌ର ଭୟଙ୍କର ରୂପ । ତାର ବାପା, ଯାଙ୍କୁଇ ନିର୍ଭରକରି କୌଣସିମତେ ବଞ୍ଚି ରହିଛି ସେ । ଏ ବିରାଟ ଦୁନିଆରେ ତାର ଏକମାତ୍ର ଆଶ୍ରୟସ୍ଥଳ, ବାପା ତାକୁ ଗୋଟେ ଶିଶୁଟିଏ ଭଳି ଘୋଡ଼ାଇ ରଖିଛନ୍ତି ଦୁନିଆର ଯେତକ ଝଡ଼ ଝଞ୍ଜା କବଳରୁ ।

ଅପେକ୍ଷାକୃତ ସୁସ୍ଥ ହେଲାପରେ କନ୍ୟାର ସେହି ଅସହାୟ, ଅଶ୍ରୁସିକ୍ତ କରୁଣ ମୁହଁଟିରେ ସମଗ୍ର ପରିସ୍ଥିତିଟିର ଅସହାୟତାକୁ ଅତି ସ୍ପଷ୍ଟ ରୂପେ ଦେଖି ପାରିଲେ ରାଜକିଶୋରବାବୁ, ଓଃ, ମଣିଷ ଜୀବନରେ ସମୟସମୟରେ କି ଦାରୁଣ ମୁହୂର୍ତ୍ତ ଆସି ଉପସ୍ଥିତ ହୁଏ ! ଜୀବନର ସାବଲୀଳ ଧାରାକୁ ଓଲଟପାଲଟ କରିଦେଇ ନିୟତି କି ଆନନ୍ଦ ପାଏ କେଜାଣି ?

ସେ କହିବା ପୂର୍ବରୁ ସୁବ୍ରତ ଜଣାଇଲା ଯେ ସେ ସ୍ମିତାଠାରୁ ଟିକଣା ବୁଝି ସତୀକି ଆସିବାପାଇଁ ତାରବାର୍ତ୍ତା ପଠାଇ ଦେଇଛି । ଯୁବକଟିର ବୁଦ୍ଧିଦୀପ୍ତ ମୁହଁ, ତାର କର୍ମଦକ୍ଷତା, ନିକଟ ଆତ୍ମୀୟପରି ତାର ସ୍ନେହବୋଳା କଥାବାର୍ତ୍ତା ସବୁ ରାଜକିଶୋର ବାବୁଙ୍କୁ ମୁଗ୍ଧ କରିଥିଲା । କିନ୍ତୁ ନିହାତି ପରିଚିତପରି ସେ ଯେତେବେଳେ ସ୍ମିତା ସହିତ କଥାବାର୍ତ୍ତା କରୁଥିଲା ରାଜ୍‌ବାବୁଙ୍କ ମନ ଭିତରେ ଅସନ୍ତୋଷ ଦାନା ବାନ୍ଧୁଥିଲା । କିନ୍ତୁ କିଛି କହିବାର କି କରିବାର ଉପାୟ ନ ଥିଲା ସେ ପରିସ୍ଥିତିରେ । ବାଧ ହୋଇ ମୁହଁ ବନ୍ଦକରି ରହିଲେ ସେ । ଥରେ ଭାବିଲେ ସୁବ୍ରତକୁ କହିବେ ସତୀ ଆସିଲାଯାଏଁ ତାଙ୍କ ଘରେ ଜଣେ ଉପଯୁକ୍ତ ପହରାଦାର୍‌ର ବ୍ୟବସ୍ଥା କରିଦେବାକୁ, ପରମୁହୂର୍ତ୍ତରେ ଭାବିଲେ— ନା, ଥାଉ ।

ରାତି ସାଢ଼େ ନ'ଟା ବାଜିଲା ପରେ ଡାକ୍ତରଖାନାର ନିୟମ ଅନୁସାରେ ପୁରୁଷ ଓ୍ୱାର୍ଡ଼ରେ ସ୍ତ୍ରୀଲୋକଙ୍କର ରହିବାର ନିୟମ ନାହିଁ । ଜଣେ ସେବିକା ଆସି ଜଣାଇଦେଲା

ମେ କଥା । ବାଧ୍ୟ ହୋଇ ବାପାଙ୍କ ଶେଯ ପାଖରୁ ଉଠିଲା ସ୍ମିତା । ସୁବ୍ରତ ବି ଆସି ପହଞ୍ଚିଲା ସ୍ମିତା । ଓ ଲଛମୀକୁ ତାଙ୍କର ଗନ୍ତବ୍ୟ ସ୍ଥାନରେ ନେଇ ପହଞ୍ଚାଇ ଦେବ ସେ । ସେବିକାଙ୍କୁ ରଞ୍ଜୁବାବୁଙ୍କ ବିଷୟରେ କେତେକ ଉପଦେଶ ଦେଇ ରଞ୍ଜୁବାବୁଙ୍କୁ ଶଙ୍କାସ୍ପକ ସୁଲଭ ଅଭୟ ପ୍ରଦାନକରି ସ୍ମିତା ଓ ଲଛମୀକୁ ସାଙ୍ଗରେ ନେଇ ବାହାରିଗଲା ସେ ।

× × × ଆସି ପହଞ୍ଚିଲା ବେଳକୁ ଆଲୋକଶୂନ୍ୟ ଘରଟିକୁ ନିବିଡ଼ ଅନ୍ଧକାର ଘେରି ରହିଛି । ଉଚ୍ଚ ସ୍ଥାନରେ ଅବସ୍ଥିତ ସେହି ଘରଟିର ଗ୍ରସ୍ତାକୃତ ଦେଖିଲାକ୍ଷଣି ଭୟରେ ଶିହରି ଉଠିଲା ସ୍ମିତା । ଚାରିଆଡ଼େ ଯେପରି ଘେରି ରହିଛି ଅଶୁଭର ସୂଚନା । ଲଛମୀର କାନ୍ଧରେ ଭରାଦେଇ ଅବସନ୍ନ ଦେହ ଓ ମନ ନେଇ କୌଣସିମତେ ଉଠିଲା ସେ ଉପରକୁ । ଆଚ୍ଛନ୍ନ ହୋଇପଡ଼ୁଛି ସେ । ତାକୁ ଲାଗୁଛି ଯିମିତି ଏ ପର୍ଯ୍ୟନ୍ତ ସେ ଖାଲି ଦୁଃସ୍ୱପ୍ନ ଦେଖୁଛି... ଆଜି ଘଟିଥିବା ଘଟଣାଗୁଡ଼ିକ ନିହାତି ଅଭାବିତ...ଅବାସ୍ତବ !

ଚାବି ଖୋଲି ଲଛମୀ ଆଲୁଅ ଜଳାଇ ବନ୍ଦ ଥିବା ଝରକା ଖୋଲିଦେଲା । ଧପ୍‌କିନା ପାଖର ସେହି ଆରାମଚୌକିଟାରେ ବସିପଡ଼ିଲା ସ୍ମିତା... ଗୋଡ଼ ହାତ ସବୁ ଯିମିତି ନିର୍ଜୀବ ହୋଇଯାଇଛି ।

ତାର ସେ ଅବସ୍ଥା ଲକ୍ଷ୍ୟକରି ସୁବ୍ରତ କହିଲା, "ଲଛମୀ, ଯା ତ, ଆଗ କିଛି ତିଆରିକରି ତାଙ୍କୁ ଖାଇବାକୁ ଦେ...ସାରାଦିନ ଉପବାସରେ କଟିଛି ।"

ନିରୁପାୟ ଭାବରେ ପରିଚାରିକା କହିଲା, "କଣ କରିବି ଡାକ୍ତରବାବୁ ! ନାନୀ ତ ମୁଁ ରାନ୍ଧିଲେ କିଛି ଖାଇବେନି...ନହେଲେ ଜଳଖିଆ ଦି'ଖଣ୍ଡ କରିଦିଅନ୍ତୁ ।"

"ଖାଇବେନି ?" ବିସ୍ମୟର ସୀମା ରହିଲାନି ସୁବ୍ରତର ।

"ହଁ ଡାକ୍ତରବାବୁ ! ନାନୀ କଲେଜରେ ପାଠ ପଢ଼ିଛନ୍ତି, ହେଲେ ବି କଣ ହେବ...ତାଙ୍କର ଭାରି ନିଷ୍ଠା ।"

ଏଥର ସ୍ମିତା ଆଡ଼କୁ ଚାହିଁ ପ୍ରକୃତରେ ବିସ୍ମିତ କଣ୍ଠରେ କହିଲା ସୁବ୍ରତ, "ସତରେ ଆପଣ ଇମିତି ନିୟମ ମାନି ଚଳନ୍ତି ?"

ସ୍ମିତା କଣ କହିବ ଆଉ, ମୁଣ୍ଡଟାକୁ ତଳକୁ କରିଦେଲା ଖାଲି ।

"ଇସ୍, ଆପଣ ବିଂଶଶତାବ୍ଦୀର ଝିଅ, ଫେର୍ ଲଛମନିଆ କହୁଚି କୁଆଡ଼େ କଲେଜରେ ପଢ଼ିଛନ୍ତି...ଏସବୁ ପରେ ବି ଆପଣଙ୍କର ଏ ଧରଣ...ସତରେ ମୁଁ ନିଜ କାନକୁ ବିଶ୍ୱାସ କରିପାରୁନି । ହାଲୁକା ଭାବରେ ହସି ଉଠିଲା ସୁବ୍ରତ । ନିହାତି ଲଜ୍ଜିତା" ହୋଇପଡ଼ିଲା ସ୍ମିତା ।

"ଏକଥା ଜାଣିଥିଲେ ମୁଁ ମୋର ପୂଜାରୀ ହାତରେ ରନ୍ଧାଇ ନେଇ ଆସିଥାନ୍ତି... ନା ଆପଣ ହିନ୍ଦୁସ୍ଥାନୀ ପୂଜାରୀ ହାତରେ ମଧ୍ୟ ଖାଉ ନାହାନ୍ତି ?" କୌତୁକରେ ଝଲମଲ କରୁଥିଲା ସୁବ୍ରତର ମୁହଁ ।

ସିନ୍ଦୂର ଭଳି ଲାଲ୍ ପଡ଼ିଗଲା ସିତା ।

"ଆପଣଙ୍କର ଦେହର ଅବସ୍ଥା ତ ଏ ଭଳି, ଏଥିରେ ଉପାସରକ୍ଷା କରିବେ କେତେବେଳେ ଆଉ ? ଯଦି...ଯଦି କିଛି ନ ଭାବିବେ ତାହେଲେ ବରଂ ମୁଁ ଯାଏ, କେଉଁଠୁ ଫଳ ଆଉ ମିଠା କିଛି ନେଇଆସିବି !"

ସୁବ୍ରତର କଣ୍ଠରେ ଏକାବେଳେ ଗୋଟିଏ ଶିଶୁର କଣ୍ଠସ୍ୱର ଭଳି ନିର୍ଦ୍ଦୋଷ ଓ ଓ ସରଳ ଶୁଭୁଥିଲା । କିନ୍ତୁ ସିତା ତାର ଏ ଆତ୍ମୀୟତା ଦେଖି ଅବାକ୍ ହୋଇଗଲା ; ସାଙ୍ଗେ ସାଙ୍ଗେ ବାଧାଦେଲା ସେ, "ନା, ନା, କିଛି ଦରକାର ନାହିଁ, ଦିନଟେ ଉପାସ ରହିଗଲେ ମୋର ଏମିତି କିଛି ହେଇଯିବନି...ଉପାସ ମୋର..." 'ଅଭ୍ୟାସ' କହିବାକୁ ଯାଇ ଅଟକିଗଲା ସେ ।

ଲଛମୀ କହିଲା, "ନାହିଁ ନାନୀ, ଦିନତମାମ୍ କିମିତି ଉପାସରେ କଟେଇବ କହିଲ ? ଛିଃ, ଦେହକୁ ଇମିତି କଲେ ବାପାଙ୍କ ସେବା କରିବ କିପରି ?"

"ମୁଁ ଯାଏ ନେଇ ଆସେ..." ଉଠିବାକୁ ଉଦ୍ୟତ ହେଲା ସୁବ୍ରତ ।

କଣ୍ଠରେ ପ୍ରାଣପଣ ଜୋର୍ ଦେଇ କହିଉଠିଲା ସିତା, "ନା ନା, କିଛି ଦରକାର ନାହିଁ । ଚୁଡ଼ା କଦଳୀ ଯାହା ଅଛି ମୁଁ କଣ ଗଣ୍ଡେ ଖାଇଦେବି ।"

"ହେଲେ ଯାଆନ୍ତୁ...ମୁହଁ ହାତ ଧୋଇ ଆଗ ଖାଇ ଆସନ୍ତୁ ତ... ହେଇଟି, ମୁଁ ଏଠି ବସିଲି...ଆପଣ ଖାଇସାରିଲେ ଯିବି... ।"

ସତକୁ ସତ ବସିଲା ସୁବ୍ରତ । ତାର ଜିଦ୍ ଯୋଗୁ ନିହାତି ଉଠିବାକୁ ପଡ଼ିଲା ସିତାକୁ । ଖାଇବାକୁ ଆଦୌ ସ୍ପୃହା ନଥିଲା ତାର, କୌଣସିମତେ ବିଛଣାରେ ଆଶ୍ରୟ ନେବାକୁ ଚାହୁଁଥିଲା ତାର ମନପ୍ରାଣ । କିନ୍ତୁ ସୁବ୍ରତର କଥାରେ ବାଧ୍ୟ ହୋଇ ଉଠିଲା ସେ । ମୁହଁ ହାତ ଧୋଇ, ଲୁଗା ବଦଳାଇ, ଚୁଡ଼ା ଗଣ୍ଡେ ଖାଇ ପୁଣି ଆସିଲାବେଳକୁ ଘଡ଼ି ଏଗାର ଟା ପ୍ରାୟ ବାଜିବ ।

ସିତାର ଦୃଷ୍ଟି ଘଣ୍ଟା ଆଡ଼କୁ ପଡ଼ିବା ସଙ୍ଗେ ସଙ୍ଗେ ସୁବ୍ରତର ଦୃଷ୍ଟି ବି ସେଠି ଯାଇ ପଡ଼ିଲା । ଉଠି ଠିଆହୋଇ ଲଛମୀକୁ ଗଲାସେ ପାଣି ଆଣିବା ପାଇଁ କହି ଦୁଆର ଖୋଲି ବାରଣ୍ଡାକୁ ପାଦ ବଢ଼ାଇଲା ସେ ।

ଖୋଲା ଦ୍ୱାରବାଟେ ଘରଆଡ଼ର ପୁଞ୍ଜୀଭୂତ ଅନ୍ଧକାରକୁ ଥରଟିଏ ଚାହିଁଦେଇ ସ୍ତବ୍ଧ ହେଇଗଲା ସିତା । ହଠାତ୍ ଯେପରି ସକାଳର ସେହି ଅଶ୍ୱସ୍ତିକର ଭୟ ଗ୍ରାସ କଲା ତାକୁ । ଠିକ୍ ସେହିପରି ହିମ ଶୀତଳ ସ୍ରୋତ ଆଉଥରେ ତାର ସମସ୍ତ ଶିରାପ୍ରଶିରାରେ ବହିଚାଲି । ତାକୁ ଲାଗିଲା ସକାଳର ସେଇ ଭୟପୂର୍ଣ୍ଣ ପରିସ୍ଥିତି ଆଉଥରେ ଘନେଇ

ଆସୁଛ । କଣ୍ଟକିତ ହୋଇଗଲା ଦେହ । ଭୟକମ୍ପିତ ହୃଦୟରେ ଦ୍ୱାରଟାକୁ ମୁଠାଇ ଧରି ପଥର ଭଳି ଠିଆହୋଇ ରହିଲା ସେ ।

ବୁଦ୍ଧି ଝର୍ଚ୍ଚ କରି ସରବତ୍ତ ଗିଲାସେ ଆଣିଥିଲା ଲଛମନିୟା । ଏକା ନିଃଶ୍ୱାସକେ ସେତକ ଢକ୍ ଢକ୍ କରି ପିଇଦେଇ ତା ହାତକୁ ଖାଲି ଗିଲାସଟା ବଢ଼ାଇଦେଇ ଯିବାକୁ ଉଦ୍ୟତ ହେଲା ସୁବ୍ରତ— "କିନ୍ତୁ ବ୍ୟସ୍ତ ହେବେନି... ଟିକିଏ ସାବଧାନରେ ରହିଥିବେ... ନିଘୁଞ୍ଚିଆ ଜାଗାଟା ନା !"

ସୁବ୍ରତ ଏତିକି କହୁ କହୁ ଆତଙ୍କରେ ଚିତ୍କାରକରି ଉଠି ସ୍ମିତା ଗୋଟାଏ ନିହାତି ଅସ୍ୱାଭାବିକ କାଣ୍ଡ କରିପକାଇଲା । ସେତେବେଳକୁ ଭୟରେ ସେ ଜ୍ଞାନଶୂନ୍ୟ ହୋଇଯାଇଥିଲା କହିଲେ ଚଳେ । ହଠାତ୍ ଭୟଭୀତ କ୍ଷୁଦ୍ର ଶିଶୁଟିଏପରି ସୁବ୍ରତର ହାତଟାକୁ ନିଜର ଦୁଇ ହାତରେ ଧରିପକାଇ ଶ୍ୱାସରୁଦ୍ଧ ବ୍ୟକ୍ତି ପରି କହିଉଠିଲା ସେ, "ଆପଣ ଚାଲିଯାଆନ୍ତୁନି... ମତେ କାହିଁକି ଭାରି ଭୟ ଲାଗୁଛି ।"

ସୌଭାଗ୍ୟବଶତଃ ଲଛମୀ ଖାଲି ଗିଲାସଟାକୁ ରଖିଦେଇ ଆସିବାକୁ ଯାଇଥିଲା ଭିତରକୁ । ଭୟଭୀତ ସେହି ମୁହଁଟିକୁ ମୁହୂର୍ତ୍ତେ ଚାହିଁ ସ୍ନିଗ୍ଧ କଣ୍ଠରେ କହିଲା ସୁବ୍ରତ, "ବେଶ୍, ତାହେଲେ ମୁଁ ରହୁଛି...ପ୍ରକୃତରେ ବଡ଼ ନିଘୁଞ୍ଚିଆ ଜାଗାରେ ଘରଟା... ।" ଲଛମୀ ଫେରିବା ପୂର୍ବରୁ ସାବଧାନରେ ନିଜ ହାତଟାକୁ ଖସାଇଆଣିଲା ସେ ।

ସୁବ୍ରତ ନିଜ ହାତଟିକୁ ଟାଣିନେଲାକ୍ଷଣି ସ୍ମିତାର ସ୍ୱାଭାବିକ ଜ୍ଞାନ ଫେରିଆସିଲା । କଣ ଯେ ସେ କରିଛି ତାହା ଭାବି ମାଟିରେ ମିଶିଯିବାକୁ ଇଚ୍ଛା ହେଲା ତାର । ଛିଃ, ଛିଃ, ଛିଃ, ସୁବ୍ରତ କଣ ଭାବିଥିବ ତାର ବ୍ୟବହାର ଦେଖି ? ଏ କଣ କଲା ସେ ? ଧିକ୍କାରରେ, ଅନୁଶୋଚନାରେ ମନଟା ତାର ଚୂନା ହୋଇ ଯିବାକୁ ଲାଗିଲା ଯେପରି । ଲାଜରେ ମୁହଁ ଆଉ ଟେକି ପାରୁ ନଥିଲା ସ୍ମିତା ।

ମୁହୂର୍ତ୍ତିକ ପାଇଁ ସୁବ୍ରତ ବି ସ୍ତବ୍ଧ ହୋଇ ରହିଗଲା । କିନ୍ତୁ ଲଛମୀ ଆସିଲାକ୍ଷଣି ସ୍ୱାଭାବିକ କଣ୍ଠରେ କହିଲା, "ଲଛମୀ, ଏ ନିଘୁଞ୍ଚିଆ ଜାଗାରେ ଏକୁଟିଆ ତମେ ଦୁହେଁ ରହିବା ଠିକ୍ ହେବ ବୋଲି ମୁଁ ଭାବୁନି...ଦେଖିଲୁ ବାହାରେ କି ଅନ୍ଧାର....ରାତଟା ମୁଁ ଏଠି ରହିଯିବି ।"

କଥା ଛଡ଼େଇନେଇ କହିଲା ଲଛମୀ, "ସେଇୟା ତ ଘଡ଼ିଏହେଲା ଭାବୁଥିଲି, ଡାକ୍ତରବାବୁ । କେହି ଜଣେ ସାହାଭରସା ନାହିଁ, ଝିଅମାନଙ୍କୁ ଧରି ମୁଁ ଏକୁଟିଆ କେମିତି ରହିବି ଏଠି ? ଡାକ୍ତରବାବୁ, ବାବୁଙ୍କ ପୁଅ ଆସିଲାପର୍ଯ୍ୟନ୍ତ ତମେ ଟିକେ ସାହା ହୁଅ । "

"ଗାଡ଼ିଟାକୁ ମୁଁ ରଖିଦେଇ ଆସେ ତାହେଲେ ।"

"ନାହିଁ ଡାକ୍ତରବାବୁ, ଏ ଘରର ସେ ପଟକୁ ଗେରେଜ୍‌ଟାଏବି ଅଛି । ଚାବି ଚାବି ମୁଁ ଦେଉଛି । ଆପଣ ଗାଡ଼ିଟା ରଖି ତାଲା ବନ୍ଦ କରିଦେଇ ଆସନ୍ତୁ । ଝିଗେରେନ୍ ପଟର ଆଲୁଅଟା ମୁଁ ଜାଳିଦେଉଛି ।"

ସୁବ୍ରତ ଯତ୍ନ ଲଛମନଯ୍ୟାର ପରିଚୟ ବହୁତ ଦିନର । ମାସେ କାଳ ଯେତେବେଳେ ଡାକ୍ତରଖାନାରେ ପଡ଼ିଥିଲା ଲଛମନୟା, ଏହି ଦମ୍ପତିଙ୍କ ଡାକ୍ତରବାବୁଟି ତାର ଅନେକ କିଛି ସୁବିଧା ଯତ୍ନ କରିଦେଇଥିଲେ । ଦାମିକା ଔଷଧ ସବୁ ନିଜହାତରୁ କିଣିଥିଲା ସୁବ୍ରତ ତାର ପାଇଁ । ଖାଲି ଲଛମନୟା ନୁହେଁ, ସ୍ଥାନୀୟ ଅନେକ ଲୋକ ସୁବ୍ରତର ଦୟାପୂର୍ଣ୍ଣ, ନିଃସ୍ୱାର୍ଥପର ସେବାପାଇଁ ତା ପାଖରେ ଚିରକୃତଜ୍ଞ । ନିଜର କର୍ମଦକ୍ଷତା ଓ ନିର୍ମଳ ଚରିତ୍ର ପାଇଁ ଅଳ୍ପଦିନ ଭିତରେ ସମସ୍ତଙ୍କର ପ୍ରିୟପାତ୍ର ହୋଇଯାଇଥିଲା ସେ । ଏହିସବୁ କାରଣରୁ ଆଜି ଅକୁଣ୍ଠିତ ଚିତ୍ତରେ ଲଛମନୟା କହିପାରିଲା ସୁବ୍ରତକୁ ସେମାନଙ୍କର ସହାୟ ହେବାକୁ । ତାଲି ଓ ଗୁଡ଼ିନେଇ ସୁବ୍ରତ ଓହ୍ଲାଇଗଲା ତଳକୁ ।

"ବାପାଙ୍କ ଘରଟା ଖୋଲି ବିଛଣା କରିଦେବୁ ଲଛମୀ, ଆଉ ଯାହା ଦରକାର ତା ଦେବୁ...ମୁଁ ଠିଆହୋଇପାରୁନି, ମୋ ମୁଣ୍ଡ କଣ ହେଇଯାଉଛି...." ଲଛମନୟାକୁ କୌଣସିମତେ ଏତକ କହିଦେଇ ଦ୍ରୁତପାଦରେ ନିଜ କୋଠରୀରେ ପଶିଗଲା ସ୍ମିତା ।

ବିଛଣାରେ ଦେହଟାକୁ ଲେଟାଇଦେଇ ଗୋଟା ଦିନଟିର ଘଟଣା ଗୋଟି ଗୋଟି କରି ଭାବିଗଲା ସେ । ଏକଦିଗରେ ଲଜ୍ଜା, ଅନୁଶୋଚନା ଓ ଘୃଣା ତାର ମନଟାକୁ ବିକ୍ଷେପିତ କରିଦେଉଥିଲେ ମଧ୍ୟ ଅନ୍ୟଦିଗରେ ବେଶ୍ ଗୋଟାଏ ହାଲୁକା ନିରାପଦ ପରିସ୍ଥିତି ଭାବି ଯଥେଷ୍ଟ ସାନ୍ତ୍ୱନା ସେ ପାଇଲା । ଭୟ ନାହିଁ, ଡର ନାହିଁ ତାର, ଆଶ୍ରୟ ନିରାପଦ ହୋଇଛି ରାତି ପାଇଁ । ନିଶ୍ଚିନ୍ତରେ ସେ ଶୋଇପାରିବ । ନିଜ ଚିନ୍ତାରେ ସେ ଏତେ ବିଭୋର ହୋଇଗଲା ଯେ, ସୁବ୍ରତକୁ ରାତିଟା ଉପବାସରେ କଟାଇବାକୁ ପଡ଼ିବ ଏ କଥା ଥରେ-ହେଲେ ତା ମନକୁ ଆସିଲାନାହିଁ । ଚିନ୍ତାର ଗୁରୁତ୍ୱ ଉଭେଇଯିବାକ୍ଷଣି ନିଦମାଡ଼ିଆସିଲା ତା ଆଖିପତାରେ ।

ସୁବ୍ରତ ଗାଡ଼ି ରଖି ଫେରି ଆସିଲାବେଳକୁ ଗଭୀର ନିଦରେ ଶୋଇପଡ଼ିଥିଲା ସେ । ସୁବ୍ରତ ଫେରିଲା । ସ୍ମିତାକୁ ନ ଦେଖି ସେ କିଛି ଆଶ୍ଚର୍ଯ୍ୟ ହେଲାନାହିଁ, କାରଣ ସେଇୟା ସେ ଆଶା କରିଥିଲା । ଲଛମୀ ଯେତେବେଳେ ଝିଅପିଲା କଥା ପଚାରିଲା, ସେ କହିଲା, "ମୋ ପାଇଁ ଶୋଇବାକୁ ଆଗ ବିଛଣା କରିଦେ ଲଛମୀ, ଏତେ ରାତିରେ ଆଉ ମୁଁ କିଛି ଖାଇ ପାରିବନି...ଆଉ ଦେଖ୍, ଅସୁବିଧା ଯଦି ନ ହେବ ତାହେଲେ ବାବୁଙ୍କର ଲୁଗା ଖଣ୍ଡେ ଆଣିଦେ...ଏ କୋଟ୍ ପେଣ୍ଟ୍ ପିନ୍ଧି ଶୋଇଲାବେଳକୁ ଅସୁବିଧା ଲାଗିବ ।"

ଲୁଗା ପାଲଟି ବିଛଣାରେ ଶୋଇଲାକ୍ଷଣି ନିଦ କାନ୍ଥ ଛୁଟିଗଲା ତା ଆଖିରୁ । ହୃଦୟ ଭିତରେ ଏକ ନୂତନ ପ୍ରକାର ସ୍ପନ୍ଦନ ଅନୁଭବ କଲା ସେ । ସାରାଦେହରେ ତାର ଅଦ୍ଭୁତ ରକମର ଅନୁଭୂତି । ଆଖି ବୁଜିଲାକ୍ଷଣି ସ୍ମିତାର ମଳିନ କିନ୍ତୁ ସୁନ୍ଦର ମୁହଁଟି ଯେପରି ଗ୍ରାସ୍ୱାଚ୍ଛନ୍ଦ ଭଳି ଭାସିଉଠିଲା ଆଗରେ । ଆନନ୍ଦ ଓ ଆଶଙ୍କା ଦୁଇଟିଯାକ ଏକାଠି ମିଶି

ଘନୀଭୂତ ହୋଇଯାଇଛି ଯେପରି । ଏ କଣ···କଣ ଏ ? ତାର ସାରା ଜୀବନରେ କେବେ ଏ ପ୍ରକାର ଅନୁଭୂତିର ସମ୍ମୁଖୀନ ହୋଇନି ସେ । କାହିଁକି ଏ ଅଶାନ୍ତି ? ପୁଣି କାହିଁକି ଏ ଆନନ୍ଦ ? ...ହଠାତ୍ ବିଦ୍ୟୁତ୍‌ସ୍ପୃଷ୍ଟ ପରି ଚମକିପଡ଼ିଲା ସେ...ତେବେ ସ୍ନିଗ୍ଧା'ର ନାଁ କଣ ଭଲପାଇବା ? ଭଲ ପାଇବା ! ହଠାତ୍ ଏତେ ଅଳ୍ପ ସମୟ ଭିତରେ ସେ କିପରି ତାକୁ ଭଲପାଇବାକୁ ଆରମ୍ଭ କଲା ?

କଥାଟା ମନକୁ ଆସିବାକ୍ଷଣି ନିଜ ମୁଣ୍ଡ ଭିତରେ ଭୀଷଣ ଉତ୍ତେଜନା ଅନୁଭବ କରିବାକୁ ଲାଗିଲା ସୁବ୍ରତ । ବିଛଣା ଛାଡ଼ି ଉଠିପଡ଼ି ଘରଟା ଭିତରେ ବୁଲିବାକୁ ଲାଗିଲା ସେ । ଥରକୁ ଥର ନିଜର ସେ ହାତଟିକୁ ସେ ଚାହିଁଲା, ଯେଉଁ ହାତଟିକୁ ଭୟରେ ଜାବୁଡ଼ି ଧରିଥିଲା ସ୍ନିଗ୍ଧା···ଏବେ ମଧ୍ୟ ସେ ସ୍ପର୍ଶ ଯେମିତି ଲାଗି ରହିଛି...ଉଷ୍ମ ନୁହେଁ...ଏକାବେଳେ ବରଫ ଶୀତଳ ସ୍ପର୍ଶ...କିନ୍ତୁ ଶୀତଳ ହେଉ ପଛକେ ଏତେ ସୁନ୍ଦର ଆଉ ଏତେ ଆରାମପ୍ରଦ । ସେତେବେଳକାର ସେହି କୁଣ୍ଠିତ ଭୟଭୀତ ମୂର୍ତ୍ତି ତାର କି ଆଶ୍ଚର୍ଯ୍ୟ ସୁନ୍ଦର ଦିଶୁଥିଲା ସତେ ! ···ମନେପଡ଼ିଲାକ୍ଷଣି ହୃଦୟ ଭିତରେ ଆନନ୍ଦର ଉଚ୍ଛ୍ୱାସ ଅନୁଭବ କଲା ସୁବ୍ରତ । ହଠାତ୍ ଏକ ବିମଳ ଜ୍ୟୋତିରେ ଆଲୋକିତ ହୋଇଯାଇଛି ତାର ଅନ୍ତର । ଏତେ ସୁନ୍ଦର, ଏତେ ସ୍ନିଗ୍ଧ ସେ ଆଲୋକ—ସେ ହେଉଛି ପ୍ରେମ ।

ସୁବ୍ରତ ନୁହେଁ, ତାର ହୃଦୟ ତାର ସମ୍ପୂର୍ଣ୍ଣ ଅଜ୍ଞାତରେ ଯେପରି ନିଜର ଅଧିଷ୍ଠାତ୍ରୀକୁ ବରଣ କରିନେଇଛି ; ରଚନା କରିଛି ଏହି ପ୍ରେମ—ଏହି ଶାଶ୍ୱତ ଜ୍ୟୋତିର୍ମଣ୍ଡଳ ।

ସ୍ନିଗ୍ଧାକୁ ସେ ଭଲପାଇଛି । ବିଶ୍ୱାସ ବିସ୍ମୟକର ହେଲେ ମଧ୍ୟ ଏକାବେଳେ ଧ୍ରୁବ ସତ୍ୟ ଏ କଥା । କିନ୍ତୁ ଏ କଥା କିପରି ସମ୍ଭବ ହେଲା ? ତା ଜୀବନରେ ସ୍ନିଗ୍ଧା ଏକମାତ୍ର ନାରୀ ନୁହେଁ—ଛାତ୍ରଜୀବନରେ ଅନେକ ସହପାଠିନୀଙ୍କ ସହିତ ସେ ଚଳିଛି, ପୁଣି ଡାକ୍ତର ହେଲା ପରେ ବି ନାରୀସହକର୍ମିଣୀଙ୍କ ସାନ୍ନିଧ୍ୟରେ କାମ କରିଛି । ତେବେବି କୌଣସି ମୁହୂର୍ତ୍ତରେ କାହାକୁନେଇ ବିନ୍ଦୁଏ ମାତ୍ର ଦୁର୍ବଳତା ବା ଭାବପ୍ରବଣତା ସେ ଅନୁଭବ କରିନି ନିଜ ମନ ଭିତରେ । ତା ମନଠାରୁ ବହୁତ ଦୂରରେ ରହିଛନ୍ତି ସେମାନେ । ସେଥିପାଇଁ ନିଜ ଚରିତ୍ରର ଦୃଢ଼ତା କଥା ମନେକରି ଅନେକ ସମୟରେ ସେ ମନେ ମନେ ଅହଙ୍କାର କରିଛି, ନିଜର ନିଷ୍କଳଙ୍କ ବ୍ୟକ୍ତିତ୍ୱ ପାଇଁ ଯଥେଷ୍ଟ ଗର୍ବ ଅନୁଭବ କରିଛି ମଧ୍ୟ...କିନ୍ତୁ ଆଜି ଏ କଣ ହେଲା ? ଏହିପରି ଆକସ୍ମିକ ଭାବରେ ଜଣେ ସମ୍ପୂର୍ଣ୍ଣ ଅପରିଚିତା ତରୁଣୀ ପାଖରେ ତାର ସେହି ଉଦ୍ଧତ ବ୍ୟକ୍ତିତ୍ୱ ଏତେ ସହଜରେ ପରାଜୟ ସ୍ୱୀକାର କରିନେଲା ! ସେ ପରାଜିତ··· ଏତେ ଦିନ ପରେ ତାର ହୃଦୟ ପରାଜୟ ମାନିଛି । କିନ୍ତୁ ଏ ପରାଜୟରେ ଗ୍ଲାନି ନାହିଁ, ବରଂ ଅଛି ଅପୂର୍ବ ଆନନ୍ଦ । ମୂର୍ଚ୍ଛିତା ସ୍ନିଗ୍ଧାକୁ ଯେତେବେଳେ ସେ ସେବା କରୁଥିଲା ସେତେବେଳେ ଜଣେ ଡାକ୍ତରର କର୍ତ୍ତବ୍ୟବୋଧ ଛଡ଼ା ଆଉ କିଛି ମନେହୋଇନାହିଁ । ଆଜି ଦିନସାରା

ସବୁବେଳେ ପାଖରେ ଥିଲେ ମଧ୍ୟ ଆଦୌ ଭଲକରି ଲକ୍ଷ୍ୟକରି ଦେଖିନି ତାକୁ ସେ, କି ତାର ଅତୁଳନୀୟ ସୌନ୍ଦର୍ଯ୍ୟ କଥା ଆସିନି ତା ମନ ଭିତରକୁ । କିନ୍ତୁ ସେହି ମୁହୂର୍ତ୍ତରେ....ହଁ ସେହି ମୁହୂର୍ତ୍ତରେ ଯେତେବେଳେ ସ୍ମିତା ତାକୁ ରହିବାପାଇଁ ଅନୁରୋଧ କଲା....ତାର ସେହି ଭୀତତ୍ରସ୍ତ ଆଖିଦୁଇଟିକୁ ଚାହିଁଦେଇ ହଠାତ୍ ଏପ୍ରକାର ଅସ୍ୱସ୍ତି ଅନୁଭବ କଲା ସେ ।

ଝରକାପାଖରେ ଠିଆହୋଇ ବାହାରର ଅନ୍ଧକାରାଚ୍ଛନ୍ନ ରାତି ଆଡ଼କୁ ଚାହିଁ ସୁବ୍ରତ ମନେ ମନେ ବିଶ୍ଳେଷଣ କରିଚାଲିଲା । କ୍ରମେ ତାର ଆଖିଆଗରେ ଭୋର୍ ହୋଇ ଆସିଲା ଧୀରେ ଧୀରେ । ମନର ସେ ଉଚ୍ଛ୍ୱସିତ ନୂତନ ଆନନ୍ଦକୁ ଧରି ରୁଦ୍ଧ କୋଠରୀ ଭିତରେ ରହିବାକୁ ଆଉ ଇଚ୍ଛାହେଲାନି ତାର, ତେଣୁ ଚଟ୍‌ପଟ୍ ମୁହଁ ହାତ ଧୋଇ ଜାମାପଟା ପିନ୍ଧି ଘରୁ ବାହାରିଲାକ୍ଷଣି ଠିକ୍ ସେଇଲେ ନିଦରୁ ଉଠି ଆସୁଛି ଲଛମନିଆ । ତାକୁ ଅବାକ୍ କରିଦେଇ ସେ କିଛି କହିବାପୂର୍ବରୁ ବାହାର ଦୁଆର ଖୋଲି ଓହ୍ଲାଇଗଲା ସୁବ୍ରତ । ଏହିକ୍ଷଣି ଏ ମୁହୂର୍ତ୍ତରେ ସକାଳର ଶୀତଳ ମୁକ୍ତ ପବନରେ ମନର ଉଚ୍ଛ୍ୱସିତ ଆନନ୍ଦପରି ଉଚ୍ଛ୍ୱସିତ ଆବେଗରେ ଗାଡ଼ି ଛୁଟାଇଦେବାକୁ ଚାହେଁ ସେ ।

× × ×

ତିନୋଟି ଦିନ କଟିଛି । ଏ ତିନୋଟି ଦିନରେ ସୁବ୍ରତର ବ୍ୟବହାର ଦେଖି ଅତ୍ୟନ୍ତ ବିସ୍ମିତ ହୋଇଯାଇଛି ସ୍ମିତା । ସେଦିନ ରାତିର ସେ ବ୍ୟବହାର ମନେପକାଇ ନିଜେ ବି କୁଣ୍ଠିତ ସଙ୍କୁଚିତ ଅନୁଭବ କରିଛି । ସିଧାସଳଖ ଆଉ ଚାହିଁପାରିନି ସୁବ୍ରତର ଆଖିକୁ... ତାର ମୁହଁକୁ । ଆଉ ସୁବ୍ରତ ମଧ୍ୟ ଯେପରି ବଦଳିଛି । ଅବଶ୍ୟ ଠିକ୍ ସମୟରେ ସେ ଯିବା ଆସିବା କରିଛି । ସାଙ୍ଗରେ ସ୍ମିତାକୁ ନେଇ ଯାଉଛି ଡାକ୍ତରଖାନାକୁ । ସେଠୁ ଆଣି ଘରେ ପହଞ୍ଚାଇଦେଇଛି । ପୁଣି ରାତିରେ ଆସି ଶୋଇଛି । ସବୁ ଠିକ୍ ନିୟମିତ ଭାବରେ ତାର କର୍ତ୍ତବ୍ୟ କରିଯାଉଛି ସେ । ହେଲେ ବି...ହେଲେ ବି...କେଉଁଠି ଯେପରି କଣ ବଦଳିଛି ।

ଏକ୍‌ସରେ ହେଲାପରେ ପ୍ଲାଷ୍ଟର୍ କରାଗଲା ହାତଟିକୁ । ତା ପରଦିନ ଡାକ୍ତରଖାନାରୁ ଘରକୁ ଚାଲିଆସିବା କଥା ରଜୁବାବୁଙ୍କର । ଠିକ୍ ସେଦିନ ସନ୍ଧ୍ୟାରେ ଆସି ପହଞ୍ଚିଲା ସଚୀ । ସେତେବେଳକୁ ସୁବ୍ରତ ଆସି ବିଛଣା ପ୍ରଭୃତି ଠିକ୍ ଠାକ୍ କରି ରଖିବାକୁ ଉପଦେଶ ଦେଇ ଚାଲିଗଲାଣି ଡାକ୍ତରଖାନା ରଜୁବାବୁଙ୍କୁ ଆଣିବାପାଇଁ । ତେଣୁ ସଚୀ ଡ଼ାକ୍ତରଖାନାକୁ ଯିବାକୁ ଚାହିଁବାରୁ ତାକୁ ମନାକଲା ସ୍ମିତା । ହାତ ମୁହଁ ଧୋଇ ଜଳଖିଆ ଖାଇ ସଚୀ ଉଠିଲାବେଳକୁ ଭଲୁ ଶୁଭିଲା ସୁବ୍ରତର ମଟର ହର୍ଣ୍ଣ । ଭାଇ ଭଉଣୀ ଓ ଲଛମୀ ତିନିଜଣ-ଯାକ ଦୌଡ଼ିଗଲେ ତଳକୁ । ବାପାଙ୍କର ସେହି ଅବସ୍ଥା ଦେଖି ସଚୀର ଆଖିରୁ ଲୁହ ଝରିବାର ଉପକ୍ରମ କଲା । କୌଣସିମତେ ନିଜକୁ ସମ୍ଭାଳି ତାଙ୍କ ପାଦଛୁଇଁ ପ୍ରଣାମକଲା ସେ ।

"ଏ ହେଉଛନ୍ତି ଡାକ୍ତରବାବୁ..." ପରିଚୟ ଦେଲା ସ୍ମିତା । ସଚୀ ନମସ୍କାର କଲା ସୁବ୍ରତକୁ । ପ୍ରତିନମସ୍କାର କରି ହସିହସି କହିଲା ସୁବ୍ରତ, "ସନ୍ଧ୍ୟାନାଳ୍ପିରେ ଆସିଲ ନା... ମୁଁ ତ ସେଇଆ ଭାବୁଥିଲି..." ପରିଚୟ ଦେବାର ଆବଶ୍ୟକ ହେଉନାହିଁ । ସ୍ମିତାର ମୁହଁର ସାଦୃଶ୍ୟ ଚହ୍ନାଇଦେଉଛି ସଚୀକୁ ।

ସଚୀ ଓ ସୁବ୍ରତ ସାହାଯ୍ୟରେ ରାଜୁବାବୁ ଉଠିଲେ ଉପରକୁ । ସଚୀର ଆଗମନରେ ଘରଟି ପୁଣି ଜାଗି ଉଠିଛି ଯେପରି । ତାର କଲେଜ ଜୀବନର ପ୍ରତ୍ୟେକ ଟିକିନିଖି ବିବରଣୀ ଶୁଣି ଶୁଣି ସ୍ମିତାର କାନ ଅତଡ଼ା ପଡ଼ିଗଲାଣି । କଲେଜର ଗପଛଡ଼ା ବାକି ସମୟରେ ସଚୀ ମୁହଁରୁ ଯାହା ଶୁଣିବାକୁ ପାଉଛି ସ୍ମିତା...ତା ହେଉଛି ସୁବ୍ରତର ପ୍ରଶଂସା । ନବ ପରିଚିତ ତରୁଣ ଡାକ୍ତରଟିର କଥାବାର୍ତ୍ତା, ବ୍ୟବହାର, କାର୍ଯ୍ୟକୁଶଳତା ଅତି ଅଳ୍ପ ସମୟରେ ମୁଗ୍ଧ କରିଦେଇଛି ସଚୀକୁ ।

"ଜାଣିଛୁ ନାନି, ଡାକ୍ତରବାବୁଙ୍କର ବି ଅତି ପିଲାଦିନୁ ନିଜ ମା ମରିଯାଇଛନ୍ତି...ବାପା ରହୁଛନ୍ତି ସୋନପୁରରେ । ନୂଆ ମା ଅଛନ୍ତି, ଆଉ ତିନିଜଣ ଭାଇ ବି ଅଛନ୍ତି ।"

ସନ୍ଧ୍ୟା ହେବାକୁ ଡେରିଥିଲା । ବାପାଙ୍କୁ ଜଳଖିଆ ଦେଲା ପରେ ଆଉ ବିଶେଷ କିଛି କାମ ନଥିଲା ହାତରେ । ସେଇଥିପାଇଁ ସଚୀକୁ ସାଙ୍ଗରେ ନେଇ ବଗିଚା ଭିତରକୁ ଯାଇଥିଲା ସ୍ମିତା । ସିମେଣ୍ଟର ଗ୍ରେଟିଆ ବେଞ୍ଚଟିଏ, ତା ଉପରେ ବସିଥିଲେ ଦୁହେଁ— ସେମାନଙ୍କର ଚାରିଆଡ଼େ ଫୁଟିଛନ୍ତି ଗୋଲାପର କେତେ ବୈଚିତ୍ର୍ୟରେ ଭରା ସୁବାସିତ ଗୋଲାପ ବଗିଚା ।

ସଚୀ ସୁବ୍ରତର କଥା କହି ଚାଲିଥିଲା । ବିମାତାଙ୍କ ସେ ସଂସାରରେ ସୁବ୍ରତ ପ୍ରତି ସ୍ନେହ ଓ ମମତାର ଅଭାବ ହିଁ ତାକୁ ଠେଲିଦେଇଛି ଏତେ ଦୂରକୁ । ଇଚ୍ଛାକରି ସେ ନିଜ ଜନ୍ମଭୂମିକୁ ଛାଡ଼ି ଚାଲିଆସିଛି । ସଚୀର କଥା ଶୁଣିଶୁଣି ସୁବ୍ରତ ପ୍ରତି ସହାନୁଭୂତିରେ ଛଳ ଛଳ ହୋଇଉଠିଲା ସ୍ମିତାର ଆଖିଦୁଇଟା ।

"ବାଃ, ଭାଇଭଉଣୀ ଦୁହେଁ ମିଶି ବେଶ୍ ମଜା କରୁଛ ତ !" କହୁ କହୁ ଦ୍ରୁତଗତିରେ ଓହ୍ଲାଇଆସି ସେମାନଙ୍କ ନିକଟରେ ବସିପଡ଼ିଲା ସୁବ୍ରତ । ପୁଣି କହିଲା, "ସ୍ମିତା, ସଚୀ ଆସିଲା ପରଠୁ ତମର କଣ ଆଦୌ ଦେଖା ମିଳିବାକୁ ନାହିଁ । ଆଜି ଦେଖୁଛି ଭାଗ୍ୟଟା ମୋର ବଡ଼ ସୁପ୍ରସନ୍ନ...." ଉଚ୍ଛ୍ୱସିତ ଆନନ୍ଦରେ ହସିଉଠିଲା ସେ ।

ସ୍ମିତାର ଗୋରା ମୁହଁଟି ଲାଲ୍ ହୋଇଗଲା । ସୁବ୍ରତର କଣ୍ଠସ୍ୱରରେ ନିହିତ ଥିବା ଆତ୍ମୀୟତା ଓ ତାର ଆବେଗ ତାକୁ ବିସ୍ମିତ କଲା ଟିକିଏ । ସଚୀ ଆସିଲାପରଠୁ ସତରେ ସେ ଆଉ ସୁବ୍ରତ ଆଗକୁ ବାହାରିନି, ଦରକାର ବି ପଡ଼ିନି । ବାପାଙ୍କ ବିଷୟରେ ଯାହା ଜାଣିବା କଥା ସଚୀ ପଚାରି ବୁଝିଛି ।

ସ୍ମିତାର ଲଜ୍ଜା ରକ୍ତିମ ମୁହଁଟିକୁ ବିମୁଗ୍ଧ ଦୃଷ୍ଟିରେ ଚାହିଁ ଗୋଟିଏ ମୁହୂର୍ତ୍ତିରେ କେତେକଥା ଭାବିଗଲା ସୁବ୍ରତ । ପ୍ରଥମ ଦିନର ସାକ୍ଷାତ ମନେପଡ଼ିଲା, ମନେପଡ଼ିଲା ମୂର୍ଚ୍ଛିତା ସ୍ମିତା, ମନେପଡ଼ିଲା ଭୟଭୀତା ସ୍ମିତା, ତା ହାତର ସେ ସ୍ପର୍ଶ, ତାର ଭୟାତୁର ଆଖି ଦୁଇଟି, ନିବିଡ଼ କୃଷ୍ଣ ସଜଳ ଅନୁନୟଭରା ସେ ଚାହାଣୀ । ସେହି ଅଧ୍ୟାୟଟିକୁ ନିଜର ଅମୂଲ୍ୟ ସମ୍ପଦକରି ଗୋପନରେ ସେ ନିଜ ବୁକୁଭିତରେ ସାଇତି ରଖିଛି, ପ୍ରକାଶ କରିନି ସତୀ ଆଗରେ, କହିନି ରାଜ୍‌ବାବୁଙ୍କୁ । ଆଉ ସ୍ମିତ ବି ତା ଭଲ ଭଲପାଇବାର ସେହି ଅମୃତଭରା ଲଗ୍ନକୁ ସମସ୍ତଙ୍କଠାରୁ ଗୋପନ କରି ରଖିଛି, ସେ କଥା ସେ ଜାଣିଛି ସତୀ ଓ ରାଜୁବାବୁଙ୍କ ସହିତ କଥାବାର୍ତ୍ତା କରି । ନିର୍ଜ୍ଜନ ଅବସର ଟିକିଏ ଯଦି ମିଳନ୍ତା ତାହେଲେ ସ୍ମିତାକୁ ପରିହାସ କରିପାରିଥାନ୍ତା; ତାର ଏହି ରକ୍ତାଭ ମୁହଁଟିକୁ ଆହୁରି ଲାଲ୍ କରିଦେଇ ଥାନ୍ତା—ଉଜ୍ଜ୍ୱଳ ଲାଲ୍ ସିନ୍ଦୂର ଭଳି । ପ୍ରିୟତମାର ସେହି ଅପୂର୍ବ ସୁନ୍ଦର ମୁହଁଟିକୁ ଚାହିଁ ବୋଧହୁଏ ଯୁଗ ଯୁଗ କଟାଇ ଦେଇଥାନ୍ତା ସୁବ୍ରତ; କିନ୍ତୁ ସତୀର ପ୍ରଶ୍ନ ତାକୁ ଚମକାଇ ଦେଲା, "ଆପଣ ଆଜି ଏତେ ଚଞ୍ଚଳ କିପରି ଚାଲିଆସିଲେ ?"

"ଓ...ଆଜି ଅଫ୍ ଡେ...ଓପରଓଲିଟା ଏକଦମ୍ ଛୁଟି...."

"ଭଲକଥା ତ...ଚାଲନ୍ତୁ କୁଆଡ଼େ ଟିକିଏ ବୁଲିଯିବା ।"

"କାଞ୍ଚନଜଙ୍ଘା ଦେଖିବା ଚାଲ । ସୂର୍ଯ୍ୟାସ୍ତ ସମୟରେ କାଞ୍ଚନଜଙ୍ଘାର ସେ ଯେଉଁ ଅପୂର୍ବ ରୂପ....ସ୍ମିତା, ଚାଲ ପ୍ରସ୍ତୁତ ହୋଇଯାଅ ।"

ନିରାସକ୍ତ ଭାବରେ ଉତ୍ତର ଦେଲା ସ୍ମିତା, "ଆପଣ ସତୀକୁ ନେଇ ଯାଆନ୍ତୁ, ସେ ଦେଖିନି....ମୁଁ ବାପାଙ୍କ ସଙ୍ଗେ ଯାଇ କେତେଥର ଦେଖିଆସିଛି ।"

ସୁବ୍ରତ ଆହତ ହେଲା ମନେ ମନେ । କହିଲା, "ଧରୀ ଚାଲ୍ ତାହେଲେ ତମେ ଆଉ ମୁଁ ଯାଇ ବୁଲିଆସିବା । କିନ୍ତୁ ଏଠି ଏମିତି ସବୁ ଦର୍ଶନୀୟ ସ୍ଥାନ ଅଛି, ଯେଉଁଗୁଡ଼ିକୁ ନ ଦେଖିଲେ ଦାର୍ଜ୍ଜିଲିଙ୍ଗ୍ ଦେଖିବାଟା ଅପୂର୍ଣ୍ଣ ରହିଯିବ । କାଲି ରବିବାର, କାଲି ବି ମୋର ଛୁଟି, ଚାଲ ସମସ୍ତେ ଗୋଟାଏ ପିକ୍‌ନିକ୍‌ରେ ଯିବା ।"

ପ୍ରଶ୍ନଟା ସତୀ ଉଦ୍ଦେଶ୍ୟରେ ପଚାରି ସୁବ୍ରତ କିନ୍ତୁ ସ୍ମିତା ଆଡ଼କୁ ଚାହିଁଲା ଜିଜ୍ଞାସୁଭାବରେ । ସୁବ୍ରତ କଣ୍ଠରେ ସେହି ଉତ୍କଣ୍ଠା, ସେହି ଆତ୍ମୀୟତା । ସ୍ମିତା ଇତସ୍ତତଃକରି କହିଲା, "କିନ୍ତୁ ବାପା...."

"ବାପା ବି ତ ଯିବେ...ମୋ ଗାଡ଼ିରେ ସମସ୍ତେ ଯିବା । କିଛି ଅସୁବିଧା ହେବନି..."

ସ୍ମିତା କିଛି ଉତ୍ତର ଦେବାପୂର୍ବରୁ ସତୀ କହିଲା, "ତୁ ଆଉ ମନାକରନା ନାନୀ, ବାପାଙ୍କୁ ମୁଁ ରାଜିକରେଇବି । ଚାଲ୍ ଦିନଟେ ବୁଲାବୁଲିକରି ଚାଲିଆସିବା ।"

ବାଧ୍ୟ ହୋଇ ମୁହଁ ତଳକୁ କରି ନୀରବ ସମ୍ମତି ଜଣାଇଲା ସ୍ନିଗ୍ଧା । ସୁବ୍ରତର ମନର ମେଘ କୁଆଡ଼େ କଟିଗଲା । ପୁଣି ସେହି ନିର୍ମଳ ହସ ହସି ସେ କହିଲା, "ସ୍ନିଗ୍ଧା, ଏଥର ମୋର ଜିତାପଟ...ସଚୀ ମୋ ସପକ୍ଷରେ ଭୋଟ ଦେଇଛନ୍ତି ।"—କହିସାରି ସଚୀର ହାତଧରି ଟାଣିନେଇ ଚାଲିଗଲା ସେ ।

ସ୍ନିଗ୍ଧାର ଅନ୍ତର ଯେପରି ଗୋଟାଏ ଅଜଣା ଆଶଙ୍କାରେ ବିଚଳିତ ହୋଇଉଠିଲା । କିଂକର୍ତ୍ତବ୍ୟବିମୂଢ଼ ଭଳି ଚାହିଁରହିଲା ସେ ସେମାନଙ୍କ ଗତିପଥକୁ ।

ଆରଦିନ ଯଥା ସମୟରେ ସୁବ୍ରତର ଗାଡ଼ିରେ ବାହାରିଲେ ସମସ୍ତେ । ଯେଉଁ ସ୍ଥାନରେ ସୁବ୍ରତ ସେମାନଙ୍କୁ ନେଇ ଉପନୀତ କଲା, ତାହା ଦେଖି ସମସ୍ତଙ୍କ ମନରେ ଏକା ସମୟରେ ଏକଥା ଉଦୟ ହୋଇଥିଲା ଯେ ପ୍ରକୃତରେ ଏ ସ୍ଥାନଟି ଦେଖିବା କମ୍ ସୌଭାଗ୍ୟର କଥା ନୁହେଁ । ପାର୍ବତ୍ୟ ଝରଣାର କୁଳୁ କୁଳୁ ଧ୍ୱନି, ବନଫୁଲର କୋମଳ ସୁଗନ୍ଧରେ ଆମୋଦିତ ତାକୁ ଏକ ନନ୍ଦନକାନନ କୁହାଯାଇପାରେ । ପୁଷ୍ପଣବର୍ଣ୍ଣିତ ଅରଣ୍ୟ ସୁଷମାଭରା ଏକ ତପୋବନ ବି କୁହାଯାଇପାରେ । ପ୍ରାକୃତିକ ଦୃଶ୍ୟ ସମୂହର ଅଶେଷ ଶୋଭାରାଶିକୁ ଚାହିଁ, ସେହି ସୁଶୀତଳ ବନ୍ୟ ରୂପରେ ମଜ୍ଜିଯାଇ ସ୍ନିଗ୍ଧା ଭାବୁଥିଲା ଏଡ଼େ ସୁନ୍ଦର ସ୍ଥାନଟିକୁ ରାତ୍ରିର ନିଭୃତ ପ୍ରହରରେ ସ୍ୱର୍ଗକନ୍ୟାମାନେ ନିଶ୍ଚୟ ଓହ୍ଲାଇ ଆସୁଥିବେ, ସ୍ୱଚ୍ଛ ଝରଣାରେ ମେଲାଇ ଦେଉଥିବେ ସେମାନଙ୍କର ସ୍ୱର୍ଗୀୟ ଦେହଗୁଡ଼ିକ, ଅରଣ୍ୟର ମର୍ମର ସଙ୍ଗୀତ ସହିତ କଣ୍ଠ ମିଳାଇଦେଇ ତୋଳୁଥିବେ ଗୀତର ଲହରୀ । ଏ ନିଷ୍ଠୁର, ରୁକ୍ଷ ବାସ୍ତବ ପୃଥିବୀ ପାଇଁ ସ୍ଥାନଟି ଉପଯୁକ୍ତ ନୁହେଁ ଯେପରି—ଗୋଟିଏ ସ୍ୱପ୍ନଲୋକ ।

ଛାୟାସୁସ୍ନିଗ୍ଧ ବୃକ୍ଷତଳେ ବସି ସ୍ନିଗ୍ଧା ବିଭୋର ହୋଇପଡ଼ିଲା । ତାର ଭାବପ୍ରବଣ ମନ ଯେପରି ଉଚ୍ଛୁଳି ଉଠୁଥିଲା । ସେ ଜାଣିପାରିଲା ନାହିଁ ତାର ତପସ୍ୟାରତ ସେହି ମୂର୍ତ୍ତିର ସ୍ୱର୍ଗୀୟ ସୌନ୍ଦର୍ଯ୍ୟକୁ ଚାହିଁ ମୁଗ୍ଧ ହୋଇଯାଇଥିଲା ସୁବ୍ରତ—ପ୍ରାୟ ନିରାଭରଣ କହିଲେ ଚଳେ, ଦେହରେ ସରୁ ଧଡ଼ି ପଡ଼ିଥିବା ଧଳା ଖଦଡ଼ ଶାଢ଼ୀ ଖଣ୍ଡେ ଓ ଧଳା ବ୍ଲାଉଜ୍ । ହାତରେ ଦୁଇପଟ ସୁନା ଚୁଡ଼ି । ଅଳଙ୍କାର ସେତିକି । କିନ୍ତୁ ସେହି ଅତି ସାଧାରଣ ବେଶଭୂଷାରୁ ଯେପରି ବିଚ୍ଛୁରିତ ହୋଇପଡୁଛି ଅସାଧାରଣ ସୌନ୍ଦର୍ଯ୍ୟ । ସେ ବି ଯେମିତି ଏ ମର୍ତ୍ତ୍ୟର ନୁହେଁ ସ୍ୱର୍ଗର । ସ୍ୱର୍ଗ କନ୍ୟା ଶକୁନ୍ତଳା ଯେପରି ଆଉ ଥରେ ଶାପଗ୍ରସ୍ତ ହୋଇ ଲାଳିତ ହେଉଛନ୍ତି କଣ୍ୱ ମୁନିଙ୍କ ଆଶ୍ରମରେ । ଭଗବାନ୍ ଠିକ୍ ତାରି ପାଇଁ ଗଢିଛନ୍ତି ସ୍ନିଗ୍ଧାକୁ । ବୃଥା ଆଡ଼ମ୍ବରର ଲେଶ ମାତ୍ର ଚିହ୍ନ ନାହିଁ । ସୁବ୍ରତର ମନ ତ ଠିକ୍ ଏଇଆ ଚାହେଁ । ସେ ଚାହିଁନ ତାର ସ୍ତ୍ରୀ କୃତ୍ରିମ ସାଜସଜ୍ଜାର ସାହାଯ୍ୟ ନେଇ ନିଜକୁ ରୂପାନ୍ତରିତ କରୁ । ସେ ନିଜେ ବି ଖଦଡ଼ଭକ୍ତ, ସରଳ ଓ ନିରାଡ଼ମ୍ବର । ବିବାହ ପ୍ରସ୍ତାବ କିପରି ସେ ଉତ୍ଥାପନ

କରିବ, ସିଧାସଳଖ ରଜନୀବାବୁଙ୍କୁ କହିବ କି ନାହିଁ, ଭାବି କିଛି ସ୍ଥିର କରିପାରିଲା ନାହିଁ ସୁବ୍ରତ।”

× × ×

ସର୍ବରୀର ପରୀକ୍ଷା ନିହାତି ପାଖ ହେଲାଣି, ଏ ସମୟରେ ତାର ସମୟ ନଷ୍ଟ କରିବା ଅର୍ଥ ତାର ପଢ଼ା'ରେ ବହୁତ କ୍ଷତି ହେବ। ଟେଲିଗ୍ରାମ୍ ପାଇ ଏତେ ଅସ୍ତବ୍ୟସ୍ତ ହୋଇ ସେ ଚାଲିଆସିଛି ଯେ ନିଜର ଖଣ୍ଡେ ଖାତା ବହି ଆଣିପାରିନି । ସବୁକଥା ବିଚାରି ନିଜେ ରାଖୁବାବୁ ଚଞ୍ଚଳ ତାକୁ ଫେରିଯିବାକୁ କହିଲେ।

× × ×

ସର୍ବରୀ ଫେରିଯିବାର ପରଦିନ। ଶନିବାର। ଆଜି ଉପରଓଳି ସମ୍ପୂର୍ଣ୍ଣ ଛୁଟି । ଦିନ ବାରଟା ପରେ ଖାଇସାରି ଶୋଇବାକୁ ଚେଷ୍ଟାକଲା ସୁବ୍ରତ, କିନ୍ତୁ ବୃଥା। ବିଛଣାରେ ପଡ଼ି ରହି ନିଜର ଭବିଷ୍ୟତର ରଙ୍ଗୀନ ସିନାର ତୋଳିଲା—ଗୋଟିଏ ସ୍ୱପ୍ନଭରା, ସ୍ନେହଭରା ଶ୍ରେଷ୍ଠ ସଂସାର, ଯେଉଁଥିରେ ସେ ଆଉ ସିନ୍ଧୁ ତା ଖାଲି ଅଛନ୍ତି। ବାଲ୍ୟକାଳରୁ ସଣିଷ ହୃଦୟର ଅକୃତ୍ରିମ ସ୍ନେହରୁ ବଞ୍ଚିତ ହୃଦୟ ତାର ଯେପରି ହଠାତ୍ ସ୍ନେହ କାଙ୍ଗାଳ ହୋଇପଡ଼ିଛି। କାହାର ଆନ୍ତରିକ ସ୍ନେହ, କାହାର ସଂସ୍ପର୍ଶ, କାହାର କୋମଳ ଆଶ୍ରୟ ନ ପାଇଲେ ଆଉ ସେ ଯେପରି ଚଳିପାରିବ ନାହିଁ । ଏତେଦିନର ସୁଦୃଢ଼ ବ୍ୟକ୍ତିତ୍ୱ ହଠାତ୍ ଯେପରି ଶ୍ରେଷ୍ଠ ଶିଶୁଟିଏ ପରି ଆକୁଳ ହୋଇଉଠିଛି ଟିକିଏ ସ୍ନେହମୟ ଆଶ୍ରୟ ପାଇଁ। ଚଞ୍ଚଳ ସେ ତାର ଅଭିପ୍ରାୟ ଜଣାଇବ ରଜନୀବାବୁଙ୍କୁ। ଆଚ୍ଛା, ଆଜି ଏ ମୁହୂର୍ତ୍ତରେ ଜଣାଇଲେ କ୍ଷତି କଣ ? ବରଂ ଭଲ—ଏ ଅସ୍ଥିରତାର ଅବସାନ ହେବ। ଶେଷକୁ ଭାବିଚିନ୍ତି ସୁବ୍ରତ ରଜନୀବାବୁଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ଚିଠି ଲେଖିଲା । ସିନ୍ଧୁତାର ପାଣିଗ୍ରହଣର ପ୍ରସ୍ତାବ ଜଣାଇଲା ସେ ଚିଠିରେ। ମୌଖିକ କହିବାର ଅସ୍ୱସ୍ତିରୁ ରକ୍ଷାପାଇବା ପାଇଁ ସେ ଲିଖିତ ଭାବରେ ପ୍ରସ୍ତାବ ଦେଲା।

ଭଲପାଇବାଟା କୁଆଡ଼େ ମଣିଷକୁ ଅନ୍ଧ କରିଦିଏ। ତା ନହେଲେ ସୁବ୍ରତ ଭବିଷ୍ୟତଟାକୁ ଏତେ ନିଶ୍ଚିତ କରି ଗଢ଼ିନଥାନ୍ତା। ଥରେ ହେଲେ ତା ମନରେ ଆଶଙ୍କା ଦେଖାଦେଲାନି ଯେ ତାର ପ୍ରସ୍ତାବରେ କୌଣସି ରକମ ବାଧା ଆସିପାରେ—ହୁଏତ ରଜନୀବାବୁ ମନାକରିବେ, ନହେଲେ ସିନ୍ଧୁତା ମନାକରିବ, ସେ ପ୍ରକାର କଳ୍ପନା ଆଦୌ ତା ମୁଣ୍ଡରେ ପଶିଲାନି; ପିଲାଦିନରୁ ନିଜର ଇଚ୍ଛା, ନିଜର ନିର୍ବାଚନ କରିବାର ଶକ୍ତି ଉପରେ ସେ ଏତେଦୂର ସ୍ଥିର-ବିଶ୍ୱାସୀ ହୋଇଉଠିଥିଲା ଯେ କେବେ କିଏ ନିଜେ ସେ ନିଜ ଇଚ୍ଛାନୁଯାୟୀ କାର୍ଯ୍ୟ କରିପାରିବନି, ଏହା ଥିଲା ତାର ଏକଦମରେ କଳ୍ପନାର ଅତୀତ। ନିଜ ଦୃଷ୍ଟିରୁ ସେ ଆଗ ତଉଲିଛି ନିଜକୁ, ସବୁ ଦିଗରୁ ସେ ସୁପାତ୍ର। ତେଣୁ ରଜନୀବାବୁଙ୍କର ଅସ୍ୱୀକାର କରିବାର କୌଣସି ମାତ୍ର କାରଣ ଥାଇନପାରେ ବୋଲି ଭାବିଲା ସେ।

ଚିଠିଟି ନେଇ ଡାକବାକ୍ସରେ ପକାଇଦେଇ ଆସିଲା । ପୁଣି ଚେଷ୍ଟାକଲା ଶୋଇବାକୁ; କିନ୍ତୁ ସିତାର ମୁହଁର ଛବି ତାକୁ ବ୍ୟତିବ୍ୟସ୍ତ କରିବାକୁ ଲାଗିଲା ଖାଲି । ଚିଠିର ଉତ୍ତର ପାଇବାକୁ ଦୀର୍ଘ ଦୁଇଦିନ ଅପେକ୍ଷା କରିବାକୁ ପଡ଼ିବ । ଏ ଦୀର୍ଘ ଦୁଇଦିନ ସିତାକୁ ନ ଦେଖି ରହିପାରିବ ? ନା, ସିତା ବିନା ଗୋଟିଏ ମୁହୂର୍ତ୍ତ ବି ଅସହ୍ୟ ହୋଇପଡ଼ୁଛି ତା ପକ୍ଷରେ । ଭଲମନ୍ଦ କିଛି ନ ବିଚାରି ଗାଡ଼ିଧରି ସେ ସେଇ ଦିପହରଟାରେ ବାହାରିଲା ସିତା ଘରକୁ ଯିବାକୁ ।

ଏକାଦଶୀ । ସିତାର ନିର୍ଜଳ ଉପବାସ ଆଜି । ଉପବାସକଷ୍ଟ ଆଖିକୁ ଯେତେ ଚେଷ୍ଟାକଲେ ବି ନିଦ ଆସିଲାନି । ବାପା ତାଙ୍କଘରେ ଗାଢ଼ ନିଦରେ ଶୋଇଛନ୍ତି । ପଚୀ ଆସି ଚାଲିଯିବାପରେ ଘରଟା ଯିମିତି ଆହୁରି ବେଶି ନିର୍ଜନ ହୋଇପଡ଼ିଛି । ପୂର୍ବପରି ଲଛମୀ ଆସି ଦୁଇବେଳା ଟିକା କାମ କରିଦେଇଯାଏ, ସୁତରାଂ ସେ ବି ନାହିଁ । ନିଜ ଘରଟାରେ ଛଟପଟହୋଇ ବିଛଣାରେ ଏପଟ ସେପଟ କିଛି ସମୟ ହେଲା ପରେ, ସିତା ବାହାରଘର ଉଦ୍ଦେଶ୍ୟରେ ଉଠିଲା । ଇଚ୍ଛା, ବହିଗୁଡ଼ିକ ଟିକିଏ ଦେଖିବ ।

କୋଠରୀଟି ଟିକିଏ କରିଛଡ଼ା ରହିଛି ଗୋଟାଏ କୋଣରେ । ପଚୀ ଆସିଥିଲାବେଳେ ସିତା ତା ନିଜ ଖଟଟିକୁ ଏ ଘରକୁ ନେଇଆସି ନିଜେ ତଳେ ବିଛଣା ପାରି ଶୋଉଥିଲା । ବହି ଖଣ୍ଡେ ବାଛି, ସେଇଠି ଖଟ ଉପରେ ଶୋଇ ସେ ପଢ଼ାରେ ମନଦେଲା । ଘରର ସବୁ କୋଠରୀଠୁ ଏ କୋଠରୀଟି ଭଲ, ଭାରି ସୁନ୍ଦର । ବେଶ୍ ବଡ଼ ବଡ଼ ଲମ୍ବା ଝରକା । ଝରକା-ବାଟେ ଚାହିଁଲେ ଚାରିଆଡ଼ର ନୟନାଭିରାମ ପ୍ରାକୃତିକ ଦୃଶ୍ୟ ଦେଖିହୁଏ । ଖୋଲାପବନ ସିର୍ ସିର୍ ହୋଇ ପଶିଆସୁଛି ଘର ଭିତରକୁ । ପ୍ରଥମ ପୃଷ୍ଠାଟି ପଢ଼ି ଓଲଟାଇବାକୁ ଯାଉଛି ସେ ହଠାତ୍ ପାଦଶବ୍ଦରେ ଚମକିପଡ଼ିଲା । ମୁହଁ ଫେରାଇ ଦ୍ୱାର ନିକଟରେ ସୁବ୍ରତକୁ ଦେଖି ସେ ଏତେ ଆଶ୍ଚର୍ଯ୍ୟ ହୋଇଗଲା ଯେ, ଉଠି ବସିବା କଥା ଏକାବେଳେ ଭୁଲିଗଲା । ଆଉ ସୁବ୍ରତ—ସ୍ତବ୍ଧହୋଇ ଠିଆହୋଇପଡ଼ିଲା ମୁହୂର୍ତ୍ତିକ ପାଇଁ । ଏତେ ସୁନ୍ଦର ହୋଇ ସିତା କେବେ ସ୍ୱା ଆଗରୁ ତା ଆଖିକି ଦିଶିନି । ସେଦିନ ମୁଣ୍ଡ ଧୋଇଥିଲା ସିତା, ଖୋଲା ବାଳଗୁଡ଼ିକ ଛଞ୍ଚି ହୋଇ ପଡ଼ିଥିଲା ତା ପିଠି ଉପରେ, ବାହୁ ଉପରେ ।

ଦୁଇଜଣଯାକ ବିଭିନ୍ନ ଭାବାବେଗରେ ସ୍ତବ୍ଧହୋଇ ରହିଲେ କିଛି କ୍ଷଣ । ହଠାତ୍ ସଜାଗହୋଇ ପ୍ରଥମେ ସୁବ୍ରତ ହିଁ କଥା ଆରମ୍ଭକଲା, "କଣ ପଢୁଛ ସିତା ? ବଦ୍ୱାର ଦୁଆରଟା ଖୋଲା ରଖିଛ ଯେ ?" ଲଛମୀ ଗଲାପରେ ଦୁଆରଟାକୁ ବନ୍ଦ କରିବାକୁ ନିଶ୍ଚୟ ସେ ଭୁଲିଯାଇଛି ।

ଖଟପାଖରେ ଖଣ୍ଡେ ଚଉକି ପଡ଼ିଥିଲା, ତା ଉପରେ ଯାଇ ବସିଲା ସୁବ୍ରତ । ଏଥର ଧଡ଼ପଡ଼ହୋଇ ଉଠିବସିଲା ସିତା । ଏପରି ନିର୍ଜନ ସମୟରେ ସୁବ୍ରତ ସଙ୍ଗେ କଥାକହିବା

ଯେ ଆଦୌ ତା ପକ୍ଷରେ ଶୋଭନୀୟ ନୁହେଁ, ସେ କଥା ସାଙ୍ଗେ ସାଙ୍ଗେ ଖିଆଲ ହେଲା ତାର । ସେଥିପାଇଁ ସେ କହିଲା, "ବାପାଙ୍କୁ ଯାଇ ନିଦରୁ ଉଠାଇଦିଏ, ଆପଣ କଥାବାର୍ତ୍ତା କରିବେ ।"

"ନା ନା, ଦରକାର ନାହିଁ । ସେ ଶୋଇଛନ୍ତି....ଶୋଇଁଥାନ୍ତୁ । ତମର ଯଦି କିଛି ଅସୁବିଧା ନହେବ ତାହେଲେ ତମସଙ୍ଗେ ଗପ କରିବି..."

ଏ କଥାର ଉତ୍ତର ସ୍ମିତା ଆଉ କଣ ଦେବ ? ଫାଷ୍ଟ୍ର ଭଲି ଖଟ ଉପରେ ବସିରହିଲା ସେ । ସୁବ୍ରତର କଣ୍ଠସ୍ୱରରେ ଏପରି କିଛି ନୂତନତା ଥିଲା ଯାହାକି ରୋମାଞ୍ଚିତ କରିଦେଲା ସ୍ମିତାର ହୃଦୟକୁ ।

"କି ବହି ପଢ଼ୁଥିଲ ?"

"ବିବେକାନନ୍ଦଙ୍କ ଜୀବନୀ...."

"ତମର ଟେଷ୍ଟ୍ ଖୁବ୍ ଭଲ ସ୍ମିତା !" ସପ୍ରଶଂସ ଦୃଷ୍ଟିରେ ସ୍ମିତା ଆଡ଼କୁ ଚାହିଁ କହି ଚାଲିଲା ସୁବ୍ରତ, "ସତରେ ପ୍ରଥମେ ତୁମକୁ ଦେଖି ଅବାକ୍ ହୋଇଗଲି ମୁଁ । ଏତେ ସାଧାରଣ ତମର ଚାଲିଚଳଣି, ଏତେ ସାଧାରଣ ଲୁଗାପଟା ତୁମେ ପିନ୍ଧ, କିଛି ଜାକ୍ ଜମକ ନାହିଁ, ଟିକିଏ ହେଲେ ଆଡ଼ମ୍ବର ନାହିଁ । ସରୀକୁ ପଚାରି ବୁଝିଛି, ତମେ ବିଏ ପାସ୍ କରିଛ । ପ୍ରକୃତରେ ଆମ ଦେଶର ଝିଅମାନେ ତମ ପରି ସରଳ ଆଉ ନିରାଡ଼ମ୍ବର ହେବା ଉଚିତ । ମୁହଁରେ ଗୁଡ଼ିଏ ସ୍ନୋ ପାଉଡ଼ର ମାଖି, ସିଲ୍କ୍ ଜର୍ଜେଟ୍ ଶାଢ଼ୀ ପିନ୍ଧି ବାହାରନ୍ତି ଯେତେବେଳେ, ମନେହୁଏ ଭାରତୀୟ ନାରୀର ଯେଉଁ ଅତୀତ ଗୌରବ ଥିଲା ତାର ମୃତ୍ୟୁ ହୋଇଯାଇଛି । ମୁଁ ତା କଦାପି ସହ୍ୟ କରିପାରେନି ସତରେ । ବୈଦିକ ଯୁଗର ବିଦୂଷୀ ଭାରତୀୟ ନାରୀଙ୍କ କଥା ଭାବିଲି—କେଡ଼େ ଅସାଧାରଣ ଜ୍ଞାନୀ ସେମାନେ ଥିଲେ । ଜ୍ଞାନଚର୍ଚ୍ଚା ଧର୍ମ ଚର୍ଚ୍ଚାରେ ସେମାନେ ଦିନ କଟାଉଥିଲେ । ଆଉ ଆଜିକାଲି ହେଲା କଣ ? ଖାଲି ରୂପ ଚର୍ଚ୍ଚା ଆଉ ପରଚର୍ଚ୍ଚା ଏହାହିଁ ସାଧାରଣ ଗୃହିଣୀର ନିତ୍ୟ ନୈମିତ୍ତିକ କାର୍ଯ୍ୟ ହୋଇପଡ଼ିଲାଣି ।"

ସଙ୍କୁଚିତ ହୋଇପଡ଼ିଲା ସ୍ମିତା, ମୁହଁ ତାର ବିବର୍ଣ୍ଣ ହୋଇଗଲା ମୁହୂର୍ତ୍ତିକରେ । ବେଶଭୂଷା କଥା ସୁବ୍ରତ କହିଲାକ୍ଷଣି ତାର ମନେପଡ଼ିଗଲା ଯେ ସେ ବିଧବା ! ସୁବ୍ରତ ଯେଉଁକଥା ଜାଣେନି, ସୁବ୍ରତ ଜାଣେନି ଯେ କାହିଁକି ସେ ଏ ବୈରାଗିଣୀ ବେଶ ଧରିଛି । ଆଜି ସେ ତାକୁ ପ୍ରଶଂସା କରିଚାଲିଛି, କିନ୍ତୁ କେବେ ଯଦି ପ୍ରକୃତ କଥା ସେ ଜାଣେ ତାହେଲେ ସ୍ମିତାକୁ ଆନ୍ତରିକ ଘୃଣା କରିବ । ବିଧବା ହୋଇ ବିଧବାର ଉପଯୁକ୍ତ ବେଶକୁ ତ୍ୟାଗ କରିଛି ସ୍ମିତା । କଥାଟା କଣ୍ଟା ପରି ଗଳିଗଲା ତା ମନ ଭିତରେ । ମୁହଁଟି ତଳକୁ ପୋତି ସେ ନିଜ ଚିନ୍ତାରେ ଏତେ ବିଭୋର

ହୋଇପଡ଼ିଲା ଯେ ଏହା ଭିତରେ ବକ୍ତୃତା ଦେଇସାରି ସୁବ୍ରତ ଗାନ୍ଧିଜୀଙ୍କ ଆଦର୍ଶ, ସମାଜ ସେବା, ରାଜନୀତିରେ ନାରୀର ସ୍ଥାନ ବିଷୟରେ କେତେ କଣ କହିଗଲେ ସୁଦ୍ଧା ସେ ନିଜ କାନରେ କିଛି ଶୁଣିପାରିନଥିଲା ।

ସ୍ନିଗ୍ଧାର ମନର ପ୍ରକୃତ ଅବସ୍ଥା ବୁଝିବା ସୁବ୍ରତ ପକ୍ଷରେ ନିହାତି ଅସମ୍ଭବ । ଉଚ୍ଛ୍ୱସିତ ତଟିନୀପରି ଉଚ୍ଛଳି ଉଠୁଛି ତାର ହୃଦୟ । ସେ ଚାହେଁ ପରିବ୍ୟାପ୍ତି, ଆବଦ୍ଧହୋଇ ଆଉ ସେ ରହିପାରିବନି । ତେଣୁ ହଠାତ୍ କଥାର ସୁଅ ବଦଳାଇ କିଛିମାତ୍ର ଭୂମିକା ନକରି କହି ବସିଲା, "ଆଜି ମୁଁ କଣ କରି ଆସିଛି ଜାଣିଛ ?"

ସେ ସ୍ୱରରେ ଏପରି କିଛି ରହିଥିଲା ଯାହା ଶୁଣି ଚମକି ମୁହଁ ଟେକି ଚାହିଁଲା ସ୍ନିଗ୍ଧା । ସୁବ୍ରତର ଆଖିରେ ମୁହଁରେ ଉଚ୍ଛ୍ୱସିତ ଆବେଗ । ଗୁରୁଚକ୍ଷୁ ଏକ ହେବାକ୍ଷଣି ଆବେଗପୂର୍ଣ୍ଣ କଣ୍ଠରେ ସେ କହିଲା, "ବାପାଙ୍କ ପାଖକୁ ....ମାନେ···ରାଜୁବାବୁଙ୍କ ପାଖକୁ···ଖଣ୍ଡେ ଚିଠି ଲେଖି ଡାକରେ ଦେଇଆସିଛି··· "

ସ୍ନିଗ୍ଧାର ବିସ୍ମିତ କଣ୍ଠରୁ ବାହାରିଲା,"ବାପାଙ୍କ ପାଖକୁ···ଚିଠି···ଡାକରେ···!" ସେ କିଛି ବୁଝିପାରିଲାନି ।

ଆଉ ମୁହୂର୍ତ୍ତେ ମାତ୍ର ଅପେକ୍ଷା ନକରି ସୁବ୍ରତ ପରିପୂର୍ଣ୍ଣ ଦୃଷ୍ଟିରେ ତାକୁ ଚାହିଁ କହିଲା, "ହଁ, ମୁଁ ତୁମକୁ ବିବାହ କରିବାକୁ ଚାହେଁ···ଆଉ ସେ କଥା···ଚିଠିରେ ଜଣେଇ···"

ତା କଥା ସେତିକିରେ ରହିଲା । ହଠାତ୍ ସ୍ନିଗ୍ଧାର ଆଖି ଆଗରେ ଦିନର ସମସ୍ତ ଆଲୁଅ ଯେମିତି ଏକାସାଙ୍ଗରେ ଲିଭିଗଲା । ପ୍ରକାଣ୍ଡ ଝଡ଼ର ଆବର୍ତ୍ତରେ ପଡ଼ି ଶୁଖିଲା ପତ୍ରଟିଏ ଘୂରିଲା ପରି ତାର ଦେହ ମୁଣ୍ଡ ସବୁ ଯେମିତି ଘୂରିଯିବାକୁ ଲାଗିଲା । ଆଖି ଆଗରେ ଖାଲି ଅନ୍ଧାର ଛଡ଼ା ଆଉ କିଛି ନାହିଁ ।

ତକିଆଟାରେ ମୁହଁ ଲୁଚାଇଦେଇ ଶେଯ ଉପରେ ଲୋଟିପଡ଼ିଲା ସେ । ସୁବ୍ରତ ପକ୍ଷରେ ଏ ଅବସ୍ଥା ନିହାତି ଅପ୍ରତ୍ୟାଶିତ । ସ୍ନିଗ୍ଧାକୁ ସେହିପରି ପଡ଼ିଯିବା ଦେଖି ହଠାତ୍ ତାର ଖିଆଲ ହେଲା, ପ୍ରଥମଦିନ ସ୍ନିଗ୍ଧାର ଅଚେତହୋଇ ପଡ଼ିଯିବା କଥା । ଶଙ୍କିତ ଭାବରେ ସେ ଉଠିଆସିଲା ତା ପାଖକୁ, କିନ୍ତୁ ଦେହର ସ୍ପନ୍ଦନ ଦେଖି ତାର ଆଶଙ୍କା ଦୂର ହୋଇଗଲା । ସେ ବୋଧହୁଏ ମୁହାଁମୁହିଁ ଏକଥା ସ୍ନିଗ୍ଧାକୁ କହି ଭୁଲ କରିଛି...ହୁଏତ ସ୍ନିଗ୍ଧା ଲାଜରେ ମୁହଁ ଲୁଚାଇ ଦେଇଛି... ବୁଝିଛିଯାକ କଥା ଭାବି ଶେଷ କଥାଟିକୁ ନିଶ୍ଚୟବୋଲି ଧରିନେଲା ସେ । ଆନନ୍ଦରେ ହୃଦୟ ତାର ଉଦ୍‌ବେଳିତ ହୋଇଉଠିଲା । ସେ କହିଲା, "ଦେଖ ସ୍ନିଗ୍ଧା, ପିଲାଟିଦିନରୁ କାହାର ସ୍ନେହ ମୁଁ କେବେ ପାଇନି । ବୋଉ କେବେ ମରିଯାଇଥିଲେ ସେକଥା ବି ମନେନାହିଁ । ପିଲାଟିଦିନରୁ ମୁଁ ଖାପଛଡ଼ା ଏକା । ମନରେ ଦୁଃଖ ହେଲେ ନିଜକୁ ନିଜେ ସାନ୍ତ୍ୱନା ଦେଇଛି । ଏକୁଟିଆ ବଢ଼ି ଇମିତି ଅଭ୍ୟାସ ହୋଇଗଲା ଯେ ପାଠ-

ପଢିଲାବେଳେ କାହା ସହିତ ବେଶି ମିଶିପାରିଲିନି । ଆଜିପର୍ଯ୍ୟନ୍ତ ସଭରେ କେହି ଜଣେ ବନ୍ଧୁ ବି ମୋର ହୋଇପାରିନାହାନ୍ତି । କିନ୍ତୁ ତମକୁ ଦେଖିବାପରଠୁ ମୋର କାହିଁକି ମନେହେଲା ମୁଁ ତମକୁ...ପାଇବି, ନିଶ୍ଚେ ପାଇବି । ତମେ ଜାଣନା, ଜାଣିପାରିବନି ମୁଁ ତମକୁ କେତେ ସ୍ନେହକରେ । ଏ କେତେଦିନ ହେଲା ତମ ଛଡ଼ା ଅନ୍ୟ କିଛି ଭାବିନି... ଭାବିପାରିନି । ଦିନରାତି ଖାଲି ତମରି କଥା ଭାବୁଚି । ଆଉ ଅପେକ୍ଷା କରିପାରିଲିନି, ତମ ବାପାଙ୍କର ଅନୁମତି ପାଇବା ପାଇଁ ତାଙ୍କ ପାଖକୁ ଲେଖିଦେଇଚି...ତମେ ଉଠ... ମୁହଁଖୋଲି କୁହ ।"

ପରମ ସ୍ନେହରେ ସ୍ମିତାର ଅଲୁଲାୟିତ କେଶଗୁଚ୍ଛ ଉପରେ ନିଜର ହାତ ବୁଲାଇ ଆଣିଲା ସୁବ୍ରତ । ଯାହାକୁ ସେ ଏକାନ୍ତ ଆପଣାର ବୋଲି ଭାବିନେଇଚି ତାକୁ ସ୍ପର୍ଶ କରିବାରେ ଯେ କୌଣସି ପାପ ଥାଇପାରେ ଏକଥା ତା ମନରେ ଉଦୟ ହୋଇନି ।

କିନ୍ତୁ ପାପ ? ହଁ ପାପ ! ପାପ ଯେପରି ମୂର୍ତ୍ତିମନ୍ତ ହୋଇ ଖଲ ଖଲ କରି ହସୁଚି ସ୍ମିତାର କାନ ପାଖରେ । ସୁବ୍ରତ ତାର ଏକାନ୍ତ ନିକଟରେ ବସିଚି···ତା ମଥା ଉପରେ ହାତ ବୁଲାଉଚି, ସେ ସ୍ପର୍ଶରେ ଆବିଳତା ଟିକେ ମାତ୍ର ନ ଥିଲା । କିନ୍ତୁ ସେ ସ୍ପର୍ଶରେ ସ୍ମିତାର ଦେହର ପ୍ରତ୍ୟେକ ଅଣୁ ଯେପରି ଅପବିତ୍ର ହୋଇଗଲା । କ୍ରୋଧ, ଘୃଣା, କ୍ଷୋଭରେ ତାର ସର୍ବାଙ୍ଗ ଥରୁଥିଲା । ଉଠିପଡ଼ି ସୁବ୍ରତର ହାତକୁ ଝିଟିଦେଇ ଏ ଘର ଛାଡ଼ି ଦୌଡ଼ି ଚାଲି-ଯିବାକୁ ସେ ଚାହେଁ, କିନ୍ତୁ ଦେହ ତାର ଉଠୁନି, ପଥରହୋଇଚି ଜଡପଦାର୍ଥ ଭଳି । ଉପବାସ-କ୍ଳିଷ୍ଟ ଦେହ—ଏହିପରି ନିହାତି ଅଭାବିତ ଘଟଣାରେ ତାର ସମସ୍ତ କାର୍ଯ୍ୟ କ୍ଷମତା ଯେପରି ହଜାଇଦେଇଚି ।

କେତୋଟି ମୁହୂର୍ତ୍ତ ଚାଲିଗଲା···ହଠାତ୍ କଣ୍ଠ ସ୍ୱରରେ ସମସ୍ତ ଶକ୍ତି ଢାଳି କରି ଚିତ୍କାର କରିଉଠିଲା ସ୍ମିତା, "ଆପଣ ଏଠୁ ଯାଆନ୍ତୁ ।"

ଆକାଶ-ଚୁମ୍ବୀ ସ୍ୱପ୍ନ-ସୌଧ ଯେପରି ହଠାତ୍ ଖଣ୍ଡ ବିଖଣ୍ଡିତ ହୋଇ ମାଟିରେ ମିଶି-ଗଲା । ସେ ଚିତ୍କାରରେ ଚମକିପଡ଼ିଲା ସୁବ୍ରତ । ଯନ୍ତ୍ରଚାଳିତ ପରି ସେ ଉଠି ଠିଆ ହୋଇ ପଡ଼ିଲା । ଅକସ୍ମାତ୍ ତାର ହୃଦସ୍ପନ୍ଦନକୁ କିଏ ଯେପରି ଜୋର୍‌ରେ ଚାପି ଧରିଚି । ବିସ୍ମୟ ସ୍ତବ୍ଧ କଣ୍ଠରେ ସେ କହିଲା, "ସ୍ମି···ତା !"

ସେହିପରି ତକିଆରେ ମୁହଁ ଚାପି ଧରି ପୁଣି ସ୍ମିତା କହିଲା, "ଚାଲିଯାନ୍ତୁ ଏ ଘରୁ··· ଏଇକ୍ଷଣି··· "

ହଠାତ୍ କଠିନ ହୋଇଗଲା ସୁବ୍ରତର ବ୍ୟକ୍ତିତ୍ୱ । ସେ ବି କଠିନ କଣ୍ଠରେ କହିଲା, "ମତେ ଏଭଳି ଅପମାନିତ କରିବାର ଉଦ୍ଦେଶ୍ୟ କଣ ସ୍ମିତା ?"

"ଆପଣ ମତେ ଅପମାନ ଦେଇଛନ୍ତି··· ।"

"ମୁଁ !"

"ହଁ...ଏବେଲେ ଆପଣ ଯାଆନ୍ତୁ..."

କ୍ଷିପ୍ରକଣ୍ଠରେ ସୁବ୍ରତ କହିଲା, "ଥରକୁ ଥର ବୃଲଯିବା ବଥା କହନ୍ତ, ତମେ ଆଗ ମୋ ପ୍ରଶ୍ନର ଉତ୍ତର ଦିଅ..."

"ମୁଁ ଦେଇପାରିବିନି ।"

"ତମକୁ ଦବାକୁ ହିଁ ପଡ଼ିବ..."

ସତେ ଯେପରି ବିଦ୍ୟୁତ୍ ଷ୍ଫୁଲିଙ୍ଗ ପରି ଜଳି ଉଠିଲା ସ୍ମିତା । ଉତ୍ତେଜିତବେଗରେ ସେ ଉଠି ବସିଲା । କିନ୍ତୁ ସୁବ୍ରତର ସେହି ବ୍ୟଥା ପାଣ୍ଡୁର ମୁହଁଟିକୁ ଥରେ ଗ୍ଧହିଦେଇ ସ୍ତବ୍ଧ ହୋଇଗଲା ସେ । ଏଭଳି ବେଦନାହତ ମୁହଁ ସେ କେବେ ଦେଖିନି । ମଣିଷର ମୁହଁ ଏତେ ଶୋଚା ଦଶିପାରେ ତାହା ତାର କଳ୍ପନାତୀତ । କି ଆଶ୍ଚର୍ଯ୍ୟ ମଣିଷର ମନ ଆଉ ଆଶ୍ଚର୍ଯ୍ୟ ତାର ଦୁର୍ବଳତା ! ଯେଉଁ ମୁହୂର୍ତ୍ତରେ କ୍ରୋଧରେ କ୍ଷୋଭରେ ସ୍ମିତା ଅଧୀର ହୋଇ ଉଠିଥିଲା ଠିକ୍ ସେହି ମୁହୂର୍ତ୍ତରେ ସହାନୁଭୂତି ଜାତ ହେଲା ତା ମନ ଭିତରେ...ଠିକ୍ ସହାନୁଭୂତି ବି କହିହେବନି...ବୋଧହୁଏ ସ୍ନେହ ! ନହେଲେ ଅପଣାର କାହାକୁ ଯେପରି ସେ ଆଘାତ ଦେଇଛି, ସେହିଭଳି ବେଦନା ସେ ଅନୁଭବ କଲା ନିଜ ହୃଦୟ ଭିତରେ । ଆଖି ଦୁଇଟି ତାର ଆନତ ହୋଇ ପଡ଼ିଲେ । କ୍ରୋଧଦୀପ୍ତ ମୁହଁଟି ସ୍ମିତାର ମୁହୂର୍ତ୍ତକରେ ନିଷ୍ପ୍ରଭ ହୋଇଗଲା ।

ତାର ସେ ଭାବ ପରିବର୍ତ୍ତନ ଦେଖି ସୁବ୍ରତର ବିସ୍ମୟର ସୀମା ରହିଲା ନାହିଁ । ବ୍ୟଥିତ କଣ୍ଠରେ ସେ କହିଲା, "ସ୍ମିତା, ମୁଁ କଣ ପ୍ରକୃତରେ ତମର ଏତେ ଅଯୋଗ୍ୟ ? ତମେ ଜାଣନି...ତମେ ଜାଣିପାରିବନି ମୁଁ କେତେ ଭଲପାଏ ତମକୁ । ତମକୁ ନ ପାଇଲେ ମୋ ଜୀବନ ଏକବାରେ ବ୍ୟର୍ଥ ହୋଇଯିବ...ଏକ୍‌ବାରେ ବ୍ୟର୍ଥ ହୋଇଯିବ, ତେବେବି ତମର ମତାମତ ହିଁ ବଡ଼ । ମତେ ସେଇ ପଡକ ଜଣେଇ ଦିଅ..." ଅଶ୍ରୁରେ ରୁଦ୍ଧ ହୋଇଗଲା ସୁବ୍ରତର କଣ୍ଠସ୍ୱର ।

ସେ କଣ୍ଠସ୍ୱର ସ୍ମିତାର ହୃଦୟରେ ତୁମୁଳ ଆଲୋଡ଼ନ ସୃଷ୍ଟି କଲା, କିନ୍ତୁ ପାଟି ଫିଟାଇ ଏ ପ୍ରଶ୍ନର କଣ ବା ଉତ୍ତର ଦେବ ? ସେ ବିଧବା, ଏ କଥା ସୁବ୍ରତକୁ ତାର ଜଣାଇଦେବା ଉଚିତ...ନହେଲେ ଉଚିତ । ଓଃ, ଆଗରୁ ସେ ସେକଥା ଜଣାଇଲା ନାହିଁ କାହିଁକି ? ସେକଥା ଆଗରୁ ଜଣାଇଦେଇଥିଲେ ତା ଜୀବନରେ ଏହିପରି ମର୍ମାନ୍ତିକ ପରିଣତି ସେ ଦେଖିନଥାନ୍ତା ଆଜି । ଏହିକ୍ଷଣି ସେ କଥାଟା କହିବାକୁ ଆପ୍ରାଣ ଚେଷ୍ଟାକଲେ ମଧ୍ୟ କିଏ ଯେପରି ତାର ଗଳାଟାକୁ ଚିପିଧରୁଛି । ସତକଥା ଶୁଣିଲାପରେ ସୁବ୍ରତର ମୁହଁରୁ ଭଲ ପାଇବାର ସେହି ସ୍ୱର୍ଗୀୟ ଆଲୋକ ଟିକକ ଲିଭିଯାଇ ଦେଖାଦେବ ଅସୀମ ଘୃଣା । ଘୃଣାରେ ବିକୃତ ହୋଇ-

ଯିବ ତାର ସୁଗଠିତ ମୁହଁ । ଘୃଣାରେ ଶିହରିଉଠି ସେ ଧିକ୍କାର ଦେବ ସିପ୍ରା ତାକୁ.... ପଗ୍ଭରିବ ଏଭଳି ଛଳନାର ଆବଶ୍ୟକତା କଣ ଥିଲା ? ସେତେବେଳେ କଣ କହିବ ସିପ୍ରା, କି ଉତ୍ତର ଦେବ । ସୁବ୍ରତ ତାକୁ କ୍ଷମା କରିବନି, କ୍ଷମା କରିପାରିବନି । ଦୁଇହାତରେ ମୁହଁଟାକୁ ଘୋଡ଼ାଇଦେଇ କ୍ରନ୍ଦନର ଉଚ୍ଛ୍ୱସିତ ଆବେଗକୁ ରୁଦ୍ଧ କରିବାର ଚେଷ୍ଟା କରୁକରୁ ଅଶ୍ରୁବିକୃତ କଣ୍ଠରେ ସେ କେବଳ ଏତିକି କହିଲା, "ଆପଣ ଗ୍ଭଲିଯାଆନ୍ତୁ....ଗ୍ଭଲିଯାଆନ୍ତୁ ଚଞ୍ଚଳ....ଓଃ...."

ଶରବିଦ୍ଧ ପକ୍ଷୀପରି ଛଟପଟ ହେଉଥିବା ସିପ୍ରା ଆଡ଼କୁ ହତବାକ୍‌ପରି ଘଡ଼ିଏ ଗ୍ଭହିଁ ରହିଲା ସୁବ୍ରତ । ଏହି ପ୍ରକାର ପ୍ରତ୍ୟାଖ୍ୟାନ ତାହା ତାର ବୋଧଶକ୍ତିର ବାହାରେ । ଅଳ୍ପକ୍ଷଣ ପରେ ସ୍ୱପ୍ନୋତ୍ଥିତ ବ୍ୟକ୍ତିପରି ଆସ୍ତେ ଆସ୍ତେ କହିଲା ସେ, "ବେଶ୍, ମୁଁ ଗ୍ଭଲିଯାଉଛି ସିପ୍ରା, ଆଉ ଥରଟିଏ ବି ତମ ଚଲବାଟ ଆଗକୁ ଆସିବିନି । ମତେ ତମେ କ୍ଷମାକର । ମୋର ବଡ଼ ଦୁଃଖ ରହିଗଲା ଯେ ତମକୁ ଏତେ ଦୁଃଖ ଦେଇଗଲି । କାରଣ ବି କିଛି ଜାଣି ପାରିଲିନି । ନିଜର ଅଜାଣତରେ ତମ ମନରେ ଦାରୁଣ କଷ୍ଟ ଦେଇଛି ମୁଁ, ସେଥିପାଇଁ ମତେ କ୍ଷମା କରିବ ସିପ୍ରା । ମୁଁ ଯାଉଛି..." ତାର ଅନ୍ତରତମ ପ୍ରଦେଶରୁ ବ୍ୟଥାର ଯେଉଁ ଗଭୀର ଦୀର୍ଘଶ୍ୱାସ ତାର ବକ୍ଷକୁ ଥରାଇଦେଇ ବାହାରି ଆସିଲା, ସେହି ନିଃଶ୍ୱାସ-ପତନ ଶବ୍ଦରେ ଚମକିପଡ଼ି ମୁହଁ ଉପରୁ ହାତକାଢ଼ି ଗ୍ଭହିଁଲା ସିପ୍ରା—ସେତେବେଳକୁ ଦ୍ୱାର ପାଖକୁ ଆଗେଇଗଲାଣି ସୁବ୍ରତ । ଆଖିଆଗରୁ ସେ ଅଦୃଶ୍ୟ ହୋଇଯିବାକ୍ଷଣି ବ୍ୟାଧହତା ହରିଣୀପରି ଶେଯ ଉପରେ ଲେଟିପଡ଼ିଲା ସିପ୍ରା । ହୃଦୟର ଅକଥନୀୟ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା । ଆଉ ଆଶଙ୍କା କରିବାର କିଛି ନଥିଲା, ଆଉ ଲୁଗ୍ଭଇବାର କିଛି ବି ନଥିଲା । କିଛିକ୍ଷଣ ପୂର୍ବରୁ ନିଜେ ଯେଉଁ ଲୋକଟିକୁ ଜୋର୍‌କରି ବିଦାୟ ଦେଇଦେଇଛି, ଜୀବନରେ ଆଉ ଥରଟିଏ ମଧ୍ୟ ଯାହାକୁ ଆଖିଆଗରେ ନ ଦେଖିବାର ବ୍ୟବସ୍ଥା କରିଛି, ସେହି ଲୋକଟିକୁ ....ହଁ ସେ ଭଲପାଏ ! ସୁବ୍ରତକୁ ସେ ଭଲପାଏ । ଏ କରୁଣ ମୁହୂର୍ତ୍ତରେ ସେହି ପରମ ସତ୍ୟ ଟିକକ ଆତ୍ମପ୍ରକାଶକରି ତାର ଯନ୍ତ୍ରଣାହତ ହୃଦୟକୁ ଯେପରି ଦଗ୍‌ଧ କରି ଦେବାକୁ ଲାଗିଲା । ଏକ ବିଧବା ପକ୍ଷରେ ଯାହା ଅମାର୍ଜ୍ଜନୀୟ ଅପରାଧ, ସେହି ଅପରାଧରେ ସେ ଅପରାଧିନୀ । ସମସ୍ତେ ଯେପରି ତା ଆଡ଼କୁ ଆଙ୍ଗୁଠି ଦେଖାଇ ଗର୍ଜ୍ଜନ କରୁଛନ୍ତି—ସେ କଳଙ୍କିନୀ । ଖାଲି ବାହାରର ତାଡ଼ନା ନୁହେଁ, ବିବେକ ମଧ୍ୟ ଧିକ୍କାର କରୁଛି କଠୋର କଣ୍ଠରେ—ଏତେବର୍ଷ ଧରି ଯେଉଁ କଠିନ ତପସ୍ୟା ସେ କରିଆସିଥିଲା....କାହିଁ ତାର ଫଳ ? ଧିକ୍ ଧିକ୍ ଶତଧିକ୍ ତାକୁ । ସେ ନୀତିରୁ ବିଚ୍ୟୁତ ହୋଇଛି, ଆଦର୍ଶରୁ ବିଚ୍ୟୁତ ହୋଇଛି, ବିଚ୍ୟୁତ ହୋଇଛି ନିଜ ଧର୍ମରୁ । କାମନା ବାସନା ଭରା ଗୋଟିଏ ଦୁର୍ବଳ ହୃଦୟ ଧରି ବାହାରେ ସେ ଖାଲି ଏତେଦିନହେଲା ପ୍ରତାରଣା କରିଆସିଛି ସମାଜକୁ, ନିଜ ପିତାଙ୍କୁ, ଆଉ—ହଁ ନିଜକୁ !

ବର୍ତ୍ତମାନ ସେହି ନିଜତ୍ୱ ପାଖରୁ ଯେପରି ତାର ଆଉ ମୁକ୍ତି ନାହିଁ । ଦୁଇଟି ଚିନ୍ତା ଏକାସଙ୍ଗେ ପ୍ରବାହିତ ହୋଇ ଯେପରି ତାକୁ ନିକ୍ଷେପିତ କରିଦେବାକୁ ଲାଗିଲେ । ସୁବ୍ରତ ଚାଲିଯାଇଛି, ଆଉ ସେ ଫେରିବନି, କେବେ ନୁହେଁ । ଏତେଦିନର ପରିଚୟରୁ ସେ ଠିକ୍ ଚିହ୍ନିଛି ତାକୁ—ନିଜକଥାର ଖିଲାପ ସେ କେବେ କରିବନି । ତେଣୁ ସ୍ମିତାର ଜୀବନରେ ସୁବ୍ରତର ସମାପ୍ତି ହୋଇଯାଇଛି । ସେ ତାକୁ ଦେଖିପାରିବନି ଆଉ...ହଁ ଏକପ୍ରକାର ଭଲହୋଇଛି....ଏ ମର୍ମାନ୍ତିକର ସମାପ୍ତି ଚଞ୍ଚଳ ଘଟି ଭଲହୋଇଛି । ଯାହା ଅସମ୍ଭବ.... ତାହା ଅସମ୍ଭବ ।

ସ୍ମିତା କାନ୍ଦିଲା ମନପ୍ରାଣ ଖୋଲି କାନ୍ଦିବାକୁ ଲାଗିଲା । ସର୍ବସ୍ୱ ହରାଇଦେଇ ସର୍ବହରାର ହୃଦୟଧରି କାନ୍ଦିବା ଛଡ଼ା ଆଉ ଅନ୍ୟଉପାୟ କିଛି ନଥିଲା ତାର । ବେଳ ଗଡ଼ିଯିବାକୁ ଲାଗିଲା ସ୍ୱାଭାବିକଭାବରେ । କିନ୍ତୁ ଏତେଦୁଃଖରେ ବି ନିଦ କିପରି ଆସିଯାଇଥିଲା କେଜାଣି, ତାର ମନେହେଲା ସେ ବେଶ୍ କିଛି ସମୟ ଶୋଇଯାଇଥିଲା ଆଉ ସେ ନିଦ ଭାଙ୍ଗିଗଲା ବାପାଙ୍କର ଚିତ୍କାରରେ । ଧଡ଼ପଡ଼ହୋଇ ଉଠି ପ୍ରକୃତ ଅବସ୍ଥା ବୁଝିବାକୁ ବେଶ୍ କିଛିମୁହୂର୍ତ୍ତ ଲାଗିଲା ତାକୁ । ରାଗରେ ଥରୁଥିଲେ ରାଜୁବାବୁ । ହାତରେ ଧରିଥିବା ଖୋଲାଚିଠି ଖଣ୍ଡିକ ମଧ୍ୟ ଥରୁଥିଲା ତାଙ୍କ ହାତ ସହିତ । ସ୍ମିତା, ଏ ଚିଠିର ଅର୍ଥ କଣ ? ଏ ଚିଠି.... ଏ ଚିଠି···ସୁବ୍ରତ ! ରାଗରେ ଘୃଣାରେ ଆଉ କିଛି କହିପାରିଲେନି ରାଜୁବାବୁ । ବିଦ୍ୟୁତର ଚମକପରି ସବୁକଥା ଯେପରି ଗୋଟିଏ ମୁହୂର୍ତ୍ତରେ ଖେଳିଗଲା ମନଭିତରେ—ହଁ, ସୁବ୍ରତଠାରୁ ଚିଠି କଥା ଶୁଣିଥିଲା ସେ । ଆଶ୍ଚର୍ଯ୍ୟ କଥା—ଚିନ୍ତାରେ ନିମଗ୍ନହୋଇ ଏତେବଡ଼ କଥାଟି ସେ ଭୁଲିଯାଇଛି ଏକାବେଳେ ।

ସ୍ମିତାର ଅସ୍ତବ୍ୟସ୍ତ କେଶରାଜି, କାନ୍ଦି କାନ୍ଦି ଫୁଲିଯାଇଥିବା ରକ୍ତିମ ଆଖିଦୁଇଟିକୁ ଚାହିଁ ରାଜୁବାବୁଙ୍କ ମନରେ ସନ୍ଦେହ ଯେପରି ଦୃଢ଼ୀଭୂତ ହେଲା । "ସ୍ମିତା, ଚୁପ୍ ରହିଲୁ କାହିଁକି ? ଜବାବ ଦେ..." ରାଜୁବାବୁଙ୍କ ସ୍ୱରର କଠିନତାରେ ଚମକିଗଲା ସ୍ମିତାର ଅନ୍ତର ! ଜ୍ଞାନ ହେଲାଦିନୁ କେବେହେଲେ ବାପାଙ୍କୁ ରାଗିବା ଦେଖିନଥିଲା ସେ ··କଠିନ କଥା ଶୁଣିବାତ ଦୂରର କଥା । ସଦା ସ୍ନେହମୟ ପିତା ଯେ ଏହିପରି କଠୋରହୋଇ ପାରନ୍ତି, ଏକଥା ତାର କଳ୍ପନାର ବାହାରେ । ଭୟକମ୍ପିତ ହୃଦୟରେ ସେ ଭାବିଲା—ଏ ଚିଠି ସହିତ ତାର କୌଣସି ସମ୍ପର୍କ ନଥିଲା, ସେ ଦୋଷୀନୁହେଁ, ଏକଥା କହିବ ସେ ବାପାଙ୍କୁ—କିନ୍ତୁ, ତାହେଲେ ସୁବ୍ରତର ପ୍ରେମକୁ ଅସ୍ୱୀକାର କରିବାକୁ ପଡ଼ିବ । ମୁହଁଖୋଲି, ଦମ୍ଭଧରି ଏ ମିଥ୍ୟାକୁ ସେ କିପରି ପିତାଙ୍କ ସମ୍ମୁଖରେ ଉଚ୍ଚାରଣ କରିବ ? ନା—ଏକଥା ସେ କରିପାରିବନି । ଯେଉଁ ହୃଦୟ ତାର ଅପବିତ୍ର ହୋଇସାରିଛି ସେ ହୃଦୟ

ମିଛ ବୋଲି ପ୍ରବଞ୍ଚନା କରିବା ସାହସ, ବିଶେଷତଃ ପିତାଙ୍କ ସମ୍ମୁଖରେ, ତାର ନାହିଁ। କିନ୍ତୁ ସତ୍ୟକୁ ମାନିନେବା ସାହସ ବି କଣ ତାର ଅଛି ?

ମୁଣ୍ଡ ତଳକୁକରି ଠିଆହୋଇରହିଲା ସେ। କୌଣସି କଥା କହିପାରିଲାନାହିଁ।

"ସୁବ୍ରତ ଆସିଥିଲେ ବୋଧହୁଏ ?"

ବାପାଙ୍କ ପ୍ରଶ୍ନରେ ମୁଣ୍ଡ ହଲାଇ ନୀରବ ସମ୍ମତି ଜ୍ଞାପନକଲା ସ୍ମିତା।

"ଓ—ତାହେଲେ କଥା ବହୁତଦୂର ଆଗେଇଯାଇଛି ଦେଖୁଛି···" ଘୃଣାରେ ବିକୃତ ହୋଇଗଲା ରଜନୀବାବୁଙ୍କ ମୁହଁଟା। "ତୁ ତାହେଲେ ମୋ ପାଖକୁ ଏ ଚିଠି ଲେଖିବା ପରିକଳ୍ପନା ତାକୁ ଦେଇଛୁ ନା ? ଛିଃ···ଏସବୁ କଥା କରିବା ଆଗରୁ ତୁ ମରିଯାଇ ପାରିଲୁନି ?"

ପିତାଙ୍କର ସେହି କ୍ରୋଧୋନ୍ମତ୍ତ କଣ୍ଠସ୍ୱର ଶୁଣି ଭୟରେ ଜଡ଼ପାଲଟିଗଲା ସ୍ମିତାର ଅଙ୍ଗପ୍ରତ୍ୟଙ୍ଗ। ସମସ୍ତ ବାକ୍ଶକ୍ତି ହଜାଇଦେଲା ସେ। ଆଗରେ ଠିଆହୋଇଥିବା ନାରୀଟି ଯଦି ଆଉ କେତେବର୍ଷ ଛୋଟ ହୋଇଥାନ୍ତା ବୟସରେ, ତାକୁ କଠିନ ପ୍ରହାରରେ ଜର୍ଜ୍ଜରିତ କରିଦେବାକୁ ରଜନୀବାବୁ ଆଦୌ କୁଣ୍ଠିତ ହୋଇନଥାନ୍ତେ। ଅତିକଷ୍ଟରେ ସେ ସେହି ଇଚ୍ଛା ଦମନକଲେ; ମୁଣ୍ଡଭିତରେ ତାଙ୍କର ଯେପରି ନିଆଁ ଜଳୁଛି। ଆଖିର ଚାହାଣୀ ଭିତର-ଦେଇ ସେ ନିଆଁ ଛିଟିକିପଡ଼ି ଜାଳିଦେବାକୁ ଚାହୁଁଛି ସ୍ମିତାକୁ।

"ମୁଁ ବିଶ୍ୱାସ କରିପାରୁନି···ସତରେ ବିଶ୍ୱାସ କରିପାରୁନି। ଠିକ୍ ଏଇଥିପାଇଁ ମୁଁ ତତେ ଅଧିକ ପାଠ ପଢ଼େଇବାକୁ ଚାହିଁନଥିଲି। ଅଧିକ ଜ୍ଞାନ ହେଲାରୁ ବୋଧହୁଏ ଏ ବୁଦ୍ଧି ତତେ ଦିଶିଲା ? ଛିଃ...ଛିଃ...ଛିଃ କି ଘୃଣାର କଥା, ଲୋକଙ୍କ ପାଖରେ ମୁହଁ ଦେଖାଇବା ବାଟ ରହିବନି ମୋର....ଧର୍ମ ଛାଡ଼ିଦେଲୁ...ବିଧବା ହେଇ...."

ସ୍ମିତାର ଆର୍ତ୍ତକଣ୍ଠରୁ ଫୁଟିଉଠିଲା, 'ବା....ପା...'

ଆଗ୍ନେୟଗିରିପରି କ୍ରୋଧରେ ଫାଟିପଡ଼ି କହିଲେ ରଜନୀବାବୁ—"ଯା ମୋ ସାମନାରୁ ଦୂରହୁଅ, ତୋ ମୁହଁ ଦେଖିବା ବି ପାପ। ଓଃ ! କି ଅଶୁଭବେଳାରେ ମୋର ଝିଅହେଇ ଜନ୍ମହେଇଥିଲୁ...ମୋ ବଂଶର ମାନସମ୍ମାନ ସବୁ ନାଶ କରିଦେଲୁ...."

ରଜନୀବାବୁଙ୍କର ସେହି ଭୟଙ୍କର ଗର୍ଜ୍ଜନ ଶୁଣି ହାତର କାମ ଛାଡ଼ିଦେଇ ଧାଇଁଆସିଲା ଲଛମନିଆ। ତା ଆଡ଼କୁ ଚାହିଁ ଲାଜରେ ସଙ୍କୋଚରେ ସ୍ମିତାର ମନଚାହିଁଲା ମାଟିରେ ମିଶିଯିବାକୁ। ଅଶ୍ରୁରୁଦ୍ଧ ଅସହାୟ କଣ୍ଠରେ ପୁଣି ସେ ଡାକିଲା, 'ବା...ପା...'

କ୍ରୋଧକୁ ଅପେକ୍ଷାକୃତ ସଂଯତ କରିଥିଲେ ମଧ୍ୟ ନିଷ୍ଠୁର କଥାଗୁଡ଼ିକ ଉଚ୍ଚାରଣ କରି-ବାକୁ ଛାଡ଼ିଲେନି ରଜନୀବାବୁ, "ଏ ମୁହଁ ଦେଖାଇବାକୁ ତତେ ଲାଜମାଡ଼ିବା ଉଚିତ ସ୍ମିତା,

ତୁ ଗଲୁ ଆଗ ମୋ ସାମନାରୁ....ଯା...ହଁ ଶୁଣ୍, ଜନଷ୍ଟପଙ୍କ ଯାହାସବୁ ଏ ଘର ଭିତରେ ବନ୍ଧାବନ୍ଧିକରି କାଲିସକାଳୁ ଟ୍ରେନ୍‌ରେ ଫେରିଯିବାକୁ ହେବ।"

ଆଖିର ଲୁହରେ ପଳାଇଯିବାକୁ ବାଟପାଉନଥିଲା ସ୍ମିତା। ରାଗ, ଦୁଃଖ, ଅଭିମାନ ସବୁ ଏକାସଙ୍ଗେ ମିଶି ତା ହୃଦୟ ଭିତରେ ଯେପରି ଝଡ଼ ବୁହାଇଦେଉଥିଲେ। ଆଶ୍ଚର୍ଯ୍ୟ ହୋଇ ଚାହିଁରହିଥିଲା ଲଛମନସ୍ତା।

× × ନିଜ କୋଠରୀକୁ ଫେରିଆସି ଅନେକବେଳ କାନ୍ଦିବାପରେ ଦୁଃଖଟା ଯେପରି ଆପେ ଆପେ ଲାଘବ ହୋଇଗଲା ସ୍ମିତାର। ବେଶ୍ ଅନ୍ଧାର ଘୋଟିଗଲାଣି ଚାରିଆଡେ। କାମ ସାରିଦେଇ ଲଛମନସ୍ତା ଚାଲିଗଲାଣି କେତେବେଳୁ। ବାପା ବୋଧହୁଏ ସେଇଠି ସେଇ ବାହାରଘରେ ବସି ନିଜର ଅଦୃଷ୍ଟକୁ ଅଭିଶାପ ଦେଉଛନ୍ତି। ତାଙ୍କ କଥା ମନେପଡ଼ିଲାକ୍ଷଣି ଆଉଥରେ କୋହ ଉଚ୍ଛୁଳି ଉଠିଲା। ନିମ୍ମଦର ଜ ବଚନ ପରିହାସ—ତାର ଭଙ୍ଗା ଅଦୃଷ୍ଟକୁ ବିଧାତା ଚରମ ବିଦ୍ରୂପ କରିବାକୁ ଭୁଲିନାହିଁ। 'ପୁରୁଷକୁ ସେ ଭଲପାଏ' ଏକଥା ଏକ ଅଭୂତ ଶିହରଣ ଆଣିଦେଲା ତା ଅନ୍ତରରେ। ନିଜକୁ ନିଜେ ସେ ପଚାରିଲା, "ଭଲପାଇବା କଣ ଗୋଟାଏ ଅକ୍ଷମଣୀୟ ଅପରାଧ ?" ବିଧବାର ଭଲପାଇବା ଅଧିକାର ନାହିଁ। ତାର ପ୍ରେମ ସମାଜ ଚକ୍ଷୁରେ ଗୋଟାଏ କୁତ୍ସିତ କଳଙ୍କ।

ମନେପଡ଼ିଲା ତାର ଜର୍ଜିଆନାଙ୍କ କଥାଗୁଡ଼ିକ। ପୁରୁଷ ଯେତେବେଳେ ଦ୍ଵିତୀୟ-ଥର ପାଇଁ ବିବାହ କରେ, ସମୟ ବିଶେଷରେ ତୃତୀୟଥର ବି ହୋଇପାରେ, ତା ବି ସ୍ତ୍ରୀ ବର୍ତ୍ତମାନରେ ହେଉ ବା ଅବର୍ତ୍ତମାନରେ ହେଉ, ସେଥିରେ କଳଙ୍କ ନାହିଁ। ଯାହା ପୁରୁଷ ପକ୍ଷରେ ଅପରାଧ ନୁହେଁ ତାହା ସ୍ତ୍ରୀ ପକ୍ଷରେ କାହିଁକି ବା ଅପରାଧ ବୋଲି ପରିଗଣିତ ହେବ ? ଆଉମଧ ଭଲପାଇବା ଟାକୁ ମଣିଷ କିଛି ଚେଷ୍ଟାଚରିତକରି ଜାତକରାଏ ନାହିଁ··· ନିର୍ମଳ ପ୍ରେମ ଯେ ଆପେଆପେ ସୃଷ୍ଟି ହୁଏ ·· ତାକୁ ବାଧାଦେବାକୁ ମଣିଷର ଶକ୍ତି କାହିଁ ?

ଆଖିବୁଜିଦେଇ ବନ୍ଦକରି ସେ ଭାବିବସିଲା···କିଛି ସମୟ ପୂର୍ବେ ହୃଦୟ ଭିତରେ ସ୍ନେହର ଯେଉଁ ଅଙ୍କୁରଟି ଜନ୍ମଲାଭ କରିଥିଲା ବର୍ତ୍ତମାନ ଶାଖାପ୍ରଶାଖା ମେଲି ସେ ଯେପରି ତାର ସାରା ହୃଦୟକୁ ଆଚ୍ଛନ୍ନ କରିଦେଲାଣି। ପ୍ରେମର ବିମଳ ଆଲୋକରେ ଆଲୋକିତ ହୋଇଯାଇଛି ତାର ଅନ୍ତଃସ୍ଥଳ। ବହୁବର୍ଷର ସଞ୍ଚିତ ବେଦନା ଯେପରି ଅପସରି ଯାଉଛି ଧୀରେ ଧୀରେ। ହଁ, ସେ ତାକୁ ସ୍ନେହକରେ।

ହଠାତ୍ ଯେପରି ସ୍ମିତାର ହୃଦୟ ବିଦ୍ରୋହ କରିଉଠିଲା। ଏହି ପ୍ରେମକୁ ବାଧାଦେବାର ଶକ୍ତି ତାର କାହିଁ ? ଆଉ କାହିଁକି ବା ତାକୁ ସେ ଅବରୁଦ୍ଧ କରିବ ? କେଉଁ ଥିପାଇଁ ? ଗୋଟାଏ ତୁଚ୍ଛ ଅନ୍ଧ କୁସଂସ୍କାର ଲାଗି···ଯାହାକି ଯୁଗଯୁଗଧରି ଦଂଶନକରି ଆସୁଛି ଏ ଜାତିର ମେରୁଦଣ୍ଡରେ ଗୋଟାଏ ପ୍ରଚ୍ଛନ୍ନ କୀଟପରି।

ପ୍ରେମକୁ ଅସ୍ୱୀକାର କରିବା ଅସମ୍ଭବ—ସତ୍ୟକୁ ଯେପରି ଅସ୍ୱୀକାର କରିହୋଇ-ପାରେନା । ସୁବ୍ରତର କଥାଗୁଡ଼ିକ ଯେପରି ସ୍ୱର୍ଗର ଅମୃତଧାରା ପରି ମନେହେବାକୁ ଲାଗିଲା ତାର । ତାର ସେ ସ୍ନିଗ୍ଧ କଣ୍ଠସ୍ୱର···ତାର ଉଜ୍ଜ୍ୱଳ ମୁହଁ ....ତା ସହିତ ପରିଚିତ ହେବା ଦିନଠାରୁ ଏ ପର୍ଯ୍ୟନ୍ତ ଯେତେସବୁ ଶ୍ରେଷ୍ଠବଡ଼ ଘଟନା ଘଟିଯାଇଛି, ସବୁ ଗୋଟିଗୋଟି ହୋଇ ସ୍ମିତାର ମନେପଡ଼ିଲା । ହୁଏତ ଦେଖିବା ଦିନଠାରୁ ସେ ତାକୁ ଭଲପାଇଛି; କିନ୍ତୁ ଏପର୍ଯ୍ୟନ୍ତ ସେକଥା ପ୍ରଚ୍ଛନ୍ନହୋଇ ରହିଥିଲା ତାର ଅବଚେତନ ମନ ଭିତରେ ।

ସୁବ୍ରତକୁ ସେ ବିବାହ କରିବ ?—ନା, ସେକଥା ଅସମ୍ଭବ । 'ସେ ବିଧବା' ଏକଥା ସୁବ୍ରତ ଜାଣିଲା ପରେ ସ୍ମିତାକୁ କଣ ସେ ଘୃଣା କରିବ ? ତା ନହୋଇପାରେ ମଧ୍ୟ । କିନ୍ତୁ ତା ନିଜର ହୃଦୟ କଣ ସମର୍ଥନ କରିବ କି ? ତା ଦେହଭିତରେ ଥିବା ରକ୍ତର ପ୍ରତିଟି କଣା ଯେ ଗଢ଼ିଉଠିଛି ସେହି ପୁରାତନ ସଂସ୍କାରକୁ ନେଇ । ପିଲାଦିନୁ ଯେଉଁ ସଂସ୍କାର, ସଂସ୍କୃତି, ଆଚାର ବ୍ୟବହାର ଭିତରେ ବଢ଼ିଉଠିଆସିଛି ସେ, ସେହି କାରାଗାର ଭିତରୁ ଏକାଦିନକେ ମୁକ୍ତି ପାଇବା ତା ପକ୍ଷରେ ଏକାବେଳକେ ଅସମ୍ଭବ । ଏ ବିବାହକୁ ତାର ହୃଦୟ ଆଦୌ ସମର୍ଥନ କରିବନାହିଁ । 'ବିଧବା-ବିବାହ' କଥାଟା ମନେପଡ଼ିଲାକ୍ଷଣି ଘୃଣାରେ ମନଟା ତାର ଯେପରି ଆପେ ଆପେ ସଙ୍କୁଚିତ ହୋଇଗଲା ।

ହଠାତ୍ ମନେପଡ଼ିଲା—ଜିନିଷପତ୍ର ବାନ୍ଧିବାକୁ ପଡ଼ିବ, କାଲି ସକାଳୁ ଏ ସ୍ଥାନ ଛାଡ଼ି ଚାଲିଯିବାକୁ ପଡ଼ିବ । ମନେପଡ଼ିଲା ବାପାଙ୍କର କଠୋର ଆଦେଶ । କି ଘୃଣା ଫୁଟିଉଠୁଥିଲା ତାଙ୍କ କଣ୍ଠସ୍ୱରରେ, "ତା ଆଗରୁ ତୁ ମରିପାରିଲୁନି ?—ଯା, ମୋ ସାମନାରୁ ଯା...ତୋର ଏ ମୁହଁ ମତେ ଦେଖାଇବା ତୋ ପକ୍ଷରେ ଉଚିତ ନୁହେଁ...." ଓଃ ! କଥାଗୁଡ଼ାକ କି ଜ୍ୱାଲାମୟ....କି ନିଷ୍ଠୁର କଥାଗୁଡ଼ାକ କହିଗଲେ ବାପା—ତା ମୁହଁ ଦେଖିବା ପାପ, ତା ମୁହଁ ଦେଖିବାକୁ ବାପାଙ୍କୁ ଘୃଣା ଲାଗୁଛି । ତେଣୁ ସେ ତାର ମୃତ୍ୟୁ କାମନା କରନ୍ତି ! ଓଃ କି ନିଷ୍ଠୁର କଥା !

ମରିବ ସେ—ସମସ୍ତ ଯନ୍ତ୍ରଣାର ଅବସାନ ହୋଇଯିବ, ସବୁପ୍ରକାର କଷ୍ଟରୁ ମୁକ୍ତି ପାଇବ । ସେହିଆ ବରଂ ଭଲ । କିନ୍ତୁ....କିନ୍ତୁ ଆତ୍ମହତ୍ୟା ଯେ ମହାପାପ....ସେ ପାପରୁ ଆଉ ନିସ୍ତାର ନାହିଁ ।

ଏତେ ସମୟ ହେଲା ଯେଉଁ ଲୁହଧାର ଶୁଖିଯାଇଥିଲା ହଠାତ୍ ଆଉଥରେ ଯେପରି ବାହାରି ତାହା ଉଚ୍ଛୁଳିପଡ଼ିଲା । ଆଉଥରେ ଫେରିଆସିଲା ପୂର୍ବର ରାଗ, ଅଭିମାନ । ସବୁ ଆସି ଯେପରି ଜମାଟ ହୋଇଗଲା ମନଭିତରେ ।

ବିଦ୍ୟୁତ୍‌ଗତିରେ ଗୋଟିଏ ଚିନ୍ତା ତା ମୁଣ୍ଡଭିତରେ ଝଟକିଗଲା....ସେ ଯଦି...ସେ ଯଦି ଏଠୁ ଛାଡ଼ି ଏ ମୁହୂର୍ତ୍ତରେ ଚାଲିଯାଇ ପାରନ୍ତା ? ବାପାଙ୍କ ସଙ୍ଗେ ଯାଇ ଲାଭ କଣ ?

ପ୍ରତି ମୁହୂର୍ତ୍ତରେ ତାର ଉପସ୍ଥିତି ତାଙ୍କୁ ଯନ୍ତ୍ରଣା ଦେବ ଆଉ ସେହି ଯନ୍ତ୍ରଣାର ଫଳସ୍ୱରୂପ ତାଙ୍କର ବ୍ୟବହାର, ତାଙ୍କର କଥାବାର୍ତ୍ତା ରୁକ୍ଷ ହୋଇପଡ଼ିବ । ତାର ପ୍ରେମକୁ ସେ ଅସ୍ୱୀକାର କରିପାରିବେନାହିଁ ଆଉ ସେଥିପାଇଁ ମୁହଁଟେକି ସିଧାସଳଖ ଚାହିଁପାରିବେନି ବାପାଙ୍କ ମୁହଁକୁ । ଭୀଷଣ ଅପରାଧରେ ଅପରାଧୀମାପରି ଚାଲିବାକୁ ପଡ଼ିବ ସବୁବେଳେ । ହୁଏତ ତାର ଯନ୍ତ୍ରଣାମୟ ଉପସ୍ଥିତି ଆଉଥରେ ବାପାଙ୍କର ରକ୍ତଚାପ ବୃଦ୍ଧିର କାରଣ ହେବ, ମାନସିକ ଅଶାନ୍ତି ଆଣିଦେବ ।

ତେଣୁ ସ୍ମିତାର ବଳୁଟି କାଶୀ ଶ୍ରେୟ ନୁହେଁ ? ଏଠାକୁ ଆସିବାବେଳେ ବାଟରେ ସେ ଦେଖିଛି ଅନେକ ଝିଅ ଏକା ଏକା ଯିବାଆସିବା କରୁଛନ୍ତି । ଦୁନିଆଁ ବହୁତ ବଦଳିଗଲଣି ଏ କେତେଟା ବର୍ଷ ଭିତରେ । କୌଣସିମତେ ସେ ଯଦି କଲିକତା ଯାଇପାରନ୍ତା ··ସେଇଠି ଶାନ୍ତିନିକେତନରେ ଆଶ୍ରୟ ନଅନ୍ତା । ରବୀନ୍ଦ୍ରନାଥଙ୍କ ଜୀବନୀ ପଢ଼ିଲାବେଳେ ଏହି ଅନୁଷ୍ଠାନ-ଟିକୁ ଦେଖିବାର ପ୍ରବଳ ଇଚ୍ଛା ଜାତ ହୋଇଥିଲା ତାର ମନଭିତରେ । ସେ ଶିକ୍ଷିତା, ଚାକିରି ପାଇଁ କିଛି ଅନୁପଯୁକ୍ତା ନୁହେଁ । ଯଦି ଚେଷ୍ଟାକରି ନିଜର ଜୀବିକା ଅର୍ଜ୍ଜନର ପନ୍ଥା କିଛି ବାଛିନେଇପାରନ୍ତା···ଉତ୍ତେଜନାରେ ଦପ୍‌ଦପ୍ କରିବାକୁ ଲାଗିଲା ତା' ମୁଣ୍ଡର ଶିରାଗୁଡ଼ାକ । ନିର୍ଜ୍ଜଳ ଉପବାସରେ କ୍ଳିଷ୍ଟ ଦେହ ଭିତରେ ହଠାତ୍ ଯେପରି ସେ ଅନୁଭବ କଲା ଏକପ୍ରକାର ଅଦ୍ଭୁତ ଶକ୍ତି । ନିଦ୍ରାଭିଭୂତ ବ୍ୟକ୍ତିପରି ସେ ତାର ଛୋଟିଆ ବାକ୍ସଟି ସଜାଡ଼ିବସିଲା ।

× × × ସ୍ମିତା ଟଳିଟଳି ଆଖିଆଗରୁ ଚାଲିଯିବାପରେ ଲଚ୍ଛମୀକୁ ଚାଲିଯିବାପାଇଁ ଆଦେଶଦେଇ ରାଜୁବାବୁ ବସିପଡ଼ିଲେ ଚୌକିଟା ଉପରେ । ତାଙ୍କର ଚତୁର୍ଦ୍ଦିଗ ଯେପରି ଘୂରୁଥିଲା । ଏ କି ବିପ୍ଳବ ଦେଖାଦେଲା ତାଙ୍କ ଜୀବନରେ । କି ବିପ୍ଳବ ? ଆକାଶରେ ଲଞ୍ଜାତାରା ଦେଖାଦେଲା ଭଳି ଯେ ଏକ ବିପଦର ଅଶୁଭ ସଙ୍କେତ । କାହାକୁ ଅଟକାଇବେ ? କିପରି ଅଟକାଇବେ ? ସ୍ମିତାକୁ ନେଇ ଏଠୁ ଚାଲିଯିବେ ସତ; କିନ୍ତୁ ତାର ମନକୁ ତ ନୁହେଁ । ବ୍ରହ୍ମଚାରିଣୀ ସ୍ମିତା ମରିଛି ତାଙ୍କ ଆଖିଆଗରେ । ଆଉ ସେ ପୂର୍ବର ମୂଲ୍ୟ ବା ଗୌରବ ଫେରିପାଇବନାହିଁ । ଆଖିଆଗରେ ରହି କେବଳ ଗୋଟିଏ କଣ୍ଟାଭଳି ଭୁଙ୍କିବ ମନଭିତରେ । ଏତେ ଧୈର୍ଯ୍ୟ, ଏତେ ନିଷ୍ଠା, ସଦାଚରଣ ସବୁ ଶିକ୍ଷାଦେବାର ପରିଣତି ଏଇୟା ହେଲା ଶେଷକୁ । ସ୍ମିତାକୁ ନିଷ୍ଠାପରାୟଣା କରିବାକୁ ଯାଇ ସେ ନିଜେ କମ୍ ତ୍ୟାଗ କରିନାହାନ୍ତି । ଖାଇବାପିଇବା, ଅନ୍ୟର ବ୍ୟବହାର ସବୁଥିରେ ସଂଯମ ଆଚରଣ କରି ଆସୁଛନ୍ତି । ଦେହ ଖରାପ ହେବାର ପୂର୍ବପର୍ଯ୍ୟନ୍ତ ଏକାଦଶୀ ପାଳିଆସୁଥିଲେ ସ୍ମିତା ସଙ୍ଗେ । ତାର ଜିଦ୍ ଯୋଗୁଁ ସେ ଉପବାସ ଛାଡ଼ିବାକୁ ବାଧ୍ୟ ହୋଇଛନ୍ତି ଏଇ କେତେଦିନ ହେଲା ।

ବସିବସି ଆକାଶ-ପାତାଳ ଚିନ୍ତା କରିବାକୁ ଲାଗିଲେ ରାଜୁବାବୁ । ଧର୍ମ ଓ ସଂସ୍କାର-ପରାୟଣ ମନ ତାଙ୍କର ଏକ ଅବ୍ୟକ୍ତ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା ଖାଲି । ନିଜ

ଉପରେ ଆକ୍ଷେପ ଲାଗିହେଲା । ଏହି ଅଘଟଣ ପାଇଁ ନିଜେ ସେ ଦାୟୀ । ଜର୍ଜିଆନାଙ୍କ ପ୍ରରୋଚନାରେ ପଡ଼ି ନିୟମନିଷ୍ଠାର ବନ୍ଧନକୁ ନିଜେ ସେ ଆଗ ହୁଗୁଳା କରିଦେଇଛନ୍ତି । ପତଙ୍ଗ ଆଗରେ ନିଜେ ଜାଳି ରଖିଦେଇଛନ୍ତି ଦୀପଶିଖାକୁ । ବାହାର ଦୁନିଆର ପରିବେଶ ଭିତରକୁ ସ୍ମିତାକୁ ଟାଣିଆଣି କି ଭୀଷଣ ଭୁଲ୍ କରିଛନ୍ତି ସେ ! ବର୍ତ୍ତମାନ ଉପାୟ କଣ ?

ଘରକୁ ଯାଉଥିବା କଥା ଉପରଉପର ଜଣାଇ ଶୁଖିଲାମୁହଁରେ ଲଛମୀ ବିଦାୟନେଲାଣି କେତେବେଳୁଁ । ଛିଃ ସେ କଣ ଭାବିଥିବ ? ମନେପଡ଼ିଲା ସ୍ମିତାକୁ କହିଥିବା ନିଷ୍ଠୁର କଥାଗୁଡ଼ିକ । ଆଜିପର୍ଯ୍ୟନ୍ତ ଭୁଲରେ ବି ପିଲାଙ୍କୁ କଡ଼ାକଥା କେବେ କହିନଥିଲେ ସେ । ଓଃ, ଏତେ ପାଟିକରି ଇମିତି ଧମକାଇ କହିବାଟା କି ଅସୁନ୍ଦର ଦିଶିଥିବ···ସ୍ମିତା ବି କେତେ କଷ୍ଟ ପାଇଥିବ । ହତଭାଗିନୀ ଶୋଇଶୋଇ ନିଜର ଅଦୃଷ୍ଟକୁ ସୁମରି କାନ୍ଦୁଛି ବୋଧହୁଏ, କାରଣ କୌଣସି କୋଠରୀରେ ଆଲୁଅ ଜଳିନି । ସନ୍ଧ୍ୟାର ଅନ୍ଧକାର ନିବିଡ଼ରୁ ନିବିଡ଼ତର ହୋଇଉଠୁଛି । ନିଜେ ଉଠି ଆଲୁଅ ଜଳାଇବାକୁ ଇଚ୍ଛା ହେଲାନି ତାଙ୍କର । ହ୍ଲାର୍ଣ୍ଣୁଘରେ ବସିରହି ସେ ଭାବିବାକୁ ଲାଗିଲେ ଭବିଷ୍ୟତ କଥା × × × ଦିବାନିଦ୍ରା ଭାଙ୍ଗିବା ପରେ ପରେ ସନ୍ଧ୍ୟା ଡାକରେ ଆସିଥିବା ଷ୍ଟାମ୍ପ ଚିଠିଟି ସେତେବେଳେ ଡାକବାଲା ବଢ଼ାଇ ଦେଇଥିଲା । ଚିଠିଟି ପଢ଼ିଲାକ୍ଷଣି ବଜ୍ରାହତ ଭଳି ମନେହୋଇଥିଲା ନିଜକୁ । ଭୁଲରେ ସୁଦ୍ଧା କେଉଁଦିନ ଏ ପ୍ରକାର ଆଶଙ୍କା ଦେଖାଦେଇନି ତାଙ୍କ ମନରେ । ନିଜର ବ୍ୟକ୍ତିତ୍ୱ ଉପରେ ତାଙ୍କର ଯେପରି ଅଟଳ ବିଶ୍ୱାସ ଥିଲା, ନିଜ ସନ୍ତାନମାନଙ୍କ ବିଷୟରେ ମଧ୍ୟ ଥିଲା ସେହିପରି ଅଟଳ ବିଶ୍ୱାସ । ସ୍ମିତା···ତାଙ୍କର ନିଜହାତରେ ଗଢ଼ା ମଣିଷ ସେ, ସେ କିପରି ପାଦ ବଢ଼ାଇପାରିଲା ଏ ନୀଚବାଟ ଆଡ଼କୁ ? ମନେପଡ଼ିଲା···ତାଙ୍କ ଘରର କୁଳୀନତା । ମା ତାଙ୍କର କି ନିଷ୍ଠାପରାୟଣା ଥିଲେ । ତାପରେ ତାଙ୍କ ସ୍ତ୍ରୀ, ସେ ବି ମନପ୍ରାଣରେ ଗ୍ରହଣ କରିଥିଲେ ସେହି ସଂସ୍କାରକୁ । ଆହା, ସେ ଯଦି ଥାଆନ୍ତେ ଆଜି, ଏ ଅସହାୟ ଅବସ୍ଥାରେ କିଛି ହେଲେ ଉପାୟ ବତାଇଥାଆନ୍ତେ, ସାନ୍ତ୍ୱନା ଦେଇଥାଆନ୍ତେ । ଅନେକ ଦିନ ପରେ ରାଜୁବାବୁଙ୍କ ଆଖିରୁ ଝରିପଡ଼ିଲା ଦୁଇଧାର ଲୁହ ।

ସ୍ମିତା ପାଖରୁ ଫେରିଲା ପରେ ଲକ୍ଷ୍ୟହୀନ ଭାବରେ ନିଜ ଗାଡ଼ିଟିକୁ ଧରି ସୁବ୍ରତ ଏ ରାସ୍ତାରେ ସେ ରାସ୍ତାରେ ଚଲାଇବାକୁ ଲାଗିଲା । ମନ ଭିତରେ ତାର ଆହତ ପୌରୁଷ ଯେପରି ଗର୍ଜିଉଠୁଥିଲା ରୁଦ୍ରକଣ୍ଠରେ । ତା ଜୀବନରେ ଏ ହେଉଛି ସର୍ବପ୍ରଥମ ପରାଜୟ । ନିଜର ଶକ୍ତି, ନିଜର ଯୋଗ୍ୟତା ବିଷୟରେ ଏଇ ପ୍ରଥମ ଯେପରି ଦେଖାଦେଲା ପ୍ରଶ୍ନ । କିପରି ସେ ଅନୁପଯୁକ୍ତ ହୋଇପାରିଲା ଆଉ କାହିଁକି ? ତାକୁ ଏପରି ନିଷ୍ଠୁରଭାବରେ ସ୍ମିତା ପ୍ରତ୍ୟାଖ୍ୟାନ କଲା କାହିଁକି ? ଏତେ ଦିନ ଭିତରେ ସେ କଣ ଜାଣିପାରିନଥିଲା ଯେ ସୁବ୍ରତ

ତା ପ୍ରତି ଆକୃଷ୍ଟ ? ତାହେଲେ ପ୍ରଥମରୁ କାହିଁକି ସେ ବାଧାଦେଇନଥିଲା ? ଏ ପ୍ରକାର ପ୍ରତ୍ୟାଖ୍ୟାନର କାରଣ କଣ ? ହଠାତ୍ ବିଦ୍ୟୁତ୍‌ପରି ଏତେବେଳକୁ ଗୋଟିଏ କଥା ମାନ ଭିତରେ ଖେଳିଗଲା ତାର···ହୁଏତ...ହୁଏତ ସ୍ମିତା ଅନ୍ୟ କାହାକୁ ସ୍ନେହକରେ...ହୁଏତ କାହାର ବାଗ୍‌ଦତ୍ତା ସେ ! ତା ନହୋଇଥିଲେ ଏଭଳି ଘଟଣା ଘଟିନଥାନ୍ତା କେବେ । ସୁବ୍ରତ ବିଚାରିଲା ··ସତରେ କି ମୂର୍ଖ ସେ···ଝିଅଟିର ଅତୀତ, ବର୍ତ୍ତମାନ, ଭବିଷ୍ୟତ୍ କିଛି ନଜାଣି ତାକୁ ବିବାହକରିବାର ଆଶା ସେ ପୋଷଣ କରିପାରିଲା କିପରି ? ଆଉ ମଧ୍ୟ ଅଧିକ ମୂର୍ଖାମି କଲା କିଛି ନଜାଣି ନିଜେ ଯାଚହୋଇ ବିବାହ ପ୍ରସ୍ତାବ ଦେବାରେ ।

ହଠାତ୍ ମନେପଡ଼ିଲା—ଖାଲି ସ୍ମିତା ପାଖରେ ନୁହେଁ, ରାଜୁବାବୁଙ୍କ ପାଖକୁ ମଧ୍ୟ ଚିଠିରେ ସେ ସେକଥା ଲେଖିଦେଇଛି । କଥାଟା ମନେପଡ଼ିଲାକ୍ଷଣି ତାର ହୃଦ୍‌ସ୍ପନ୍ଦ ଯେପରି ଚମକିପଡ଼ିଲା । ସେ ଅନୁଭବ କଲା ଦାରୁଣ ଲଜ୍ଜା ଓ ଅପମାନରେ ତା ମୁହଁଟା କଳା ପଡ଼ିଯାଇଛି । ଛିଃ···ଛିଃ···ଛିଃ···ଚିଠିଟା ପଢି ରାଜୁବାବୁ ଭାବିଥିବେ କଣ ? ସତେ ତ, ସେ ଏ ପ୍ରକାର ଚିଠି ଲେଖିଦେଇ ସ୍ମିତାକୁ ମଧ୍ୟ ବିପଦ ଭିତରେ ପକାଇଛି । ସେ ଲେଖିଥିଲା—ସ୍ମିତା ସହିତ ତାର ବିବାହ ଏକବାରକେ ଠିକ୍, ଖାଲି ରାଜୁବାବୁ ଅନୁମତି ଦିଅନ୍ତୁ ।

ଏ ପ୍ରକାର ଚିଠି ପାଇ ରାଜୁବାବୁ ଥକ୍କା ହୋଇଯାଇଥିବେ ନିଶ୍ଚୟ...ସ୍ମିତା ବିଷୟରେ କଣ ଧାରଣା କରିଥିବେ ? ଛିଃ...ସେ କଣ କଲା ? ସ୍ମିତା ଅବଶ୍ୟ ଘଟଣାଟିକୁ ପ୍ରାଞ୍ଜଳ-ଭାବରେ ବୁଝାଇଥିବ···ତାଙ୍କର ଧାରଣା ବଦଳିଥିବ...କିନ୍ତୁ ସ୍ମିତା କଥାରେ ଯଦି ସେ ଅବିଶ୍ୱାସ କରିଥିବେ ?....ମନଶ୍ଚକ୍ଷୁରେ ଭାସିଉଠିଲା ସ୍ମିତାର ଅଶ୍ରୁପ୍ଳାବିତ ମୁହଁଟି । ସ୍ମିତା କାନ୍ଦିଲା କାହିଁକି ? ସିଧାସଳଖ ଜଣାଇଦେଲାନି ଯେ ସେ ଅନ୍ୟର ବାଗ୍‌ଦତ୍ତା ? ଏଥିରେ ଇତସ୍ତତଃ କରିବାର ଥିଲା କଣ ? ସୁବ୍ରତ ଖାଲି ଭାବିପିବାକୁ ଲାଗିଲା । ଭାବି ଭାବି କୌଣସି ପ୍ରଶ୍ନର କୂଳକିନାରା ମିଳିଲାନାହିଁ ତାକୁ । ଅବଶେଷରେ ଯେତେବେଳେ ଆସି ସେ ଘରେ ପହଞ୍ଚିଲା ଆଉ କିଛି ସ୍ଥିର ନକରିଥିଲେ ବି ଏକଥା ସେ ସ୍ଥିର କରିପାରିଥିଲା ଯେ ଦୀର୍ଘଦିନ ଛୁଟିପାଇଁ ଦରଖାସ୍ତ କରି ଆଜି ରାତି ଗାଡ଼ିରେ ହିଁ ସେ ଏ ସ୍ଥାନ ଛାଡ଼ିବ, ଛୁଟିମଞ୍ଜୁର ହେଉ ବା ନହେଉ ତାର ସେଥିରେ କିଛି ଯାଏଆସେନି; କିନ୍ତୁ ସ୍ମିତା ସହିତ ଏକା ସହରରେ ସେ ରହିପାରିବନି ଆଉ । ତାର ଛୁଟି ସରିଆସିଲାବେଳକୁ ରାଜ୍‌ବାବୁ ନିଶ୍ଚେ ଏଠାରୁ ଚାଲି ଯାଇଥିବେ । ତେଣୁ ସ୍ମିତା ସହିତ ତାର ଦେଖାହେବା ଆଉ ସମ୍ଭବ ହେବନାହିଁ ।

ଘରକୁ ଫେରିଲାପରେ ଭୃତ୍ୟକୁ ଚାହା କରିବାକୁ ଆଦେଶଦେଇ ଗାଧୁଆଘରେ ପଶିଲା ସୁବ୍ରତ । ଭଲାରୂପେ ଗାଧୁଆପାଧୁଆ କରି ସେ ଯେତେବେଳେ ବାହାରକୁ ବାହାରି ଆସିଲା ନିଜକୁ ଅନେକ ସୁସ୍ଥ ମନେହେଲା ତାର । ପରେ ପରେ ଦୁଇକପ୍ ଚାହା ଖାଇ ବେଶ୍ ଧୀରସ୍ଥିର ଭାବରେ ନିଜର ଆବଶ୍ୟକୀୟ ଜିନିଷପତ୍ର ସଜାଡ଼ିନେଲା ସେ । ତାପରେ ଗଲା

ଡାକ୍ତରଖାନା ଉଦ୍ଦେଶ୍ୟରେ—ତା ନିଜ ବିଭାଗ ଅଧୀନରେ ଥିବା ରୋଗୀମାନଙ୍କ ବିଷୟରେ ନିହାତି ଜରୁରୀ କେତେକ ପରାମର୍ଶ ଦେଇଯିବାକୁ ପଡ଼ିବ ସହକର୍ମୀମାନଙ୍କୁ ।

ଡାକ୍ତରଖାନାରୁ ବାହାରିଲାପରେ ତାର ମନେପଡ଼ିଲା ଯେ ରାଜୁବାବୁଙ୍କୁ ତାଙ୍କ ହାତ ବିଷୟରେ କିଛି ପରାମର୍ଶ ଦେଇଯିବା ନିହାତି କର୍ତ୍ତବ୍ୟ ତାର । କିନ୍ତୁ ତାଙ୍କ ଘରକୁ ଯିବାକଥା ଭାବିଲାକ୍ଷଣି ପ୍ରଥମେ ସଙ୍କୁଚିତ ହୋଇଗଲା ତା ହୃଦୟ । ଦ୍ୱିଧାଗ୍ରସ୍ତ ଭାବରେ ବସିରହିଲା ସେ କ୍ଷଣକପାଇଁ; ପରମୁହୂର୍ତ୍ତରେ ନିଜର ସେ ସଙ୍କୋଚକୁ ଝାଡ଼ିପକାଇଲା—ଡାକ୍ତରରୂପେ ଯିବ ସେ । ଗାଡ଼ିର ଷ୍ଟିଅରିଂରେ ହାତଦେଲାବେଳକୁ ମନଟା ବେଶ୍ ତାଜା ହୋଇଯାଇଛି । କିଛିକ୍ଷଣ ପୂର୍ବେ ଯେଉଁ ଘଟଣା ପାଇଁ ମୁଣ୍ଡ ପିଟି କାନ୍ଦିବାକୁ ଇଚ୍ଛାହେଉଥିଲା, ଏଇକ୍ଷଣି ସେ କଥା ଭାବି ମନକୁ ମନ ହୋ ହୋ ହୋଇ ହସିଉଠିଲା ସେ । କି ପିଲାମି ସେ କରିଛି ସତେ ! ନା, ଯିବାପୂର୍ବରୁ ରାଜୁବାବୁଙ୍କୁ ଦେଖିଯିବା ନିହାତି ଉଚିତ । ଏହି ସୁଯୋଗରେ ନିଜର ଅଜ୍ଞାନତା ପାଇଁ କ୍ଷମା ମାଗିନେବ । ଏଭଳି କିଛି ସାଙ୍ଘାତିକ ଅପରାଧ ସେ କରିନି ଯେ ତାକୁ ରାଜୁବାବୁଙ୍କ ସମ୍ମୁଖକୁ ଯିବାକୁ ସଙ୍କୋଚ ଲାଗିବ । ଦୁନିଆରେ ସମସ୍ତଙ୍କର ଥରେଅଧେ ଭୁଲ୍ ହୋଇଥାଏ, ସେ ବି ସେମିତି ଭୁଲ୍ କରିପକାଇଛି । ଏଥିରେ ଏତେ କୁଣ୍ଠା ବୋଧ କରିବାର କଣ ଅଛି ?

ବେଶ୍ ପ୍ରଫୁଲ୍ଲଚିତ୍ତରେ ଗାଡ଼ି ଚଳାଇବାକୁ ଲାଗିଲା ସେ । କିନ୍ତୁ ଗାଡ଼ି ତାର ଯେତେବେଳେ ନିର୍ଦ୍ଦିଷ୍ଟସ୍ଥାନରେ ଅଟକିଲା ଚାରିଆଡ଼ର ପତଳା ଅନ୍ଧାର ଭିତରେ ଜମାଟ ବାନ୍ଧି ରହିଥିବା ଅନ୍ଧାରପରି ଘରଟିର ସ୍ତୁପୀକୃତ ଆଡ଼କୁ ସେ ଯେତେବେଳେ ଚାହିଁଲା, ଅଜଣା ଆଶଙ୍କାରେ ଥରିଉଠିଲା ତାର ହୃଦୟ । ଏତେ ଅନ୍ଧାର କାହିଁକି ? କାହିଁକି ଆଲୁଅ ଲାଗିନାହିଁ ? କଣ ରାଜୁବାବୁ ସ୍ତ୍ରୀ ସହିତ କୁଆଡ଼େ ବୁଲିଯାଇଛନ୍ତି ? କିନ୍ତୁ ତାହେଲେ ବି ତ ଆଲୁଅ ଲାଗିଥାନ୍ତା ! ଆଶଙ୍କାଜଡ଼ିତ ଚିତ୍ତରେ ଧୀରେଧୀରେ ପାହାଚଦେଇ ଉପରକୁ ଉଠିଲା ସେ । ବାରଣ୍ଡା ଉପରକୁ ଆସିଲାକ୍ଷଣି ସେ ବାରିପାରିଲା ଯେ ବାହାରଘର ଦୁଆରଟି ଓଠିଆ-ମେଲାହୋଇ ରହିଛି । ବିସ୍ମୟାଭିଭୂତ ଭାବରେ ପାଦ ବଢ଼ାଇଲାକ୍ଷଣି ଶୁଣିପାରିଲା ରାଜୁବାବୁଙ୍କ ସ୍ୱର—ତା ଜୋତାର ମଚ୍‌ମଚ୍ ଶବ୍ଦ ଶୁଣି ସେ ପଚାରୁଛନ୍ତି 'କିଏ ସେ' ବୋଲି । ପରମୁହୂର୍ତ୍ତରେ ରାଜୁବାବୁ ଯେତେବେଳେ ବିଜୁଳିବତୀର ସୁଇଚ୍ ଟିପିଦେଲେ ସେହି ଆଲୋକରେ ସୁବ୍ରତକୁ ଦେଖି ସ୍ତମ୍ଭିତ ହୋଇଗଲେ ଏକାବେଳେ ।

ହାତଦୁଇଟି ଟେକି ନମସ୍କାର କରୁକରୁ ପରିସ୍ଥିତିକୁ ଭଲରୂପେ ଦେଖିନେଲା ସୁବ୍ରତ । ଟେବୁଲଉପରେ ତିନି ଚାରିଖଣ୍ଡ କିମିତି ଖୋଲାହୋଇ ପଡ଼ିଛି, ଆଉ ଖଟଉପରେ ସେହିପରି ଓଲଟି ପଡ଼ିରହିଛି ସେହି ବହିଟି । ଯେଉଁଟା ଆଜି ଖରାବେଳେ ସ୍ତ୍ରୀ ତା ପଢ଼ୁଥିଲା । ରାଜୁବାବୁଙ୍କ ବ୍ୟଥାପାଣ୍ଡୁର ବିଷଣ୍ଣ ମୁହଁଟିକୁ ଦେଖି ସେ ସହଜରେ ଅନୁମାନ

ଜାଣିନେଲା ଯେ ପ୍ରକୃତରେ ତାର ଚିଠି ଏ ଘରେ ଗୋଟାଏ ଝଡ଼ ବୁହାଇ ଦେଇଛି ! ଗୋଟାଏ ଭ୍ରମରେ ପଡ଼ି କି ଅଶାନ୍ତି ସେ ଏ ପରିବାରକୁ ଦେଇଛି ଭାବି ଟିକିଏ କୁଣ୍ଠିତ ହେଲା କିନ୍ତୁ ପରକ୍ଷଣରେ ଆଉଥରେ ମନକୁ ଦୃଢ଼ କରି ସେ ଛୁଟିନେଇ ତାର ଏ ସ୍ଥାନ ତ୍ୟାଗକରି ଚାଲିଯିବା କଥା ଓ ରାଜୁବାବୁଙ୍କ ହାତ ବିଷୟରେ ଯାହା ପରାମର୍ଶ ଦେବା କଥା ସବୁ କହିଲା ।

କିନ୍ତୁ ରାଜୁବାବୁ ଭାବୁଥିଲେ, ଚିଠି ଦେଲାପରେ ସେଇ ଚିଠିର ଉତ୍ତର ଶୁଣିବାକୁ ଆସିଛି ସେ—ଏସବୁ ଭୂମିକା ମାତ୍ର । ଯେତେ ଚଞ୍ଚଳ ଶେଷହେଲେ ଭଲ ଭାବି କଥାଗୁଡ଼ିକୁ ସଜାଡ଼ିନେଇ ହଠାତ୍ କହିପକାଇଲେ ସେ, "ଦେଖ ସୁବ୍ରତ, ତମେ ଯେଉଁଥିପାଇଁ ଆସିଛ ମୁଁ ଅନୁମାନ କରିଛି । କିନ୍ତୁ ତମର ଚିଠି ପାଇ ବାସ୍ତବିକ୍ ମୁଁ ମର୍ମାହତ ହୋଇଯାଇଛି । ଏ ବିଦେଶଜାଗାରେ ତମେ ମୋର ଯେଉଁ ଉପକାର କରିଛ ସେଥିପାଇଁ ମୁଁ ତମନିକଟରେ ଋଣୀ—ସେ ଋଣ କଦାପି ଶୁଝି ପାରିବିନି ମୁଁ—କିନ୍ତୁ ତମଭଳି ଲୋକଙ୍କଠାରୁ ମୁଁ ଏ ପ୍ରକାର ପ୍ରସ୍ତାବ ଆଦୌ ଆଶାକରିନଥିଲି ।"

ଅପ୍ରସ୍ତୁତ ସୁବ୍ରତ କହିଲା, "ମତେ ସେଥିପାଇଁ କ୍ଷମାକରନ୍ତୁ···ସ୍ମିତା ମାନେ ·· ସ୍ମିତା ଯେ...."

ନହାତ ଅନ୍ତରଙ୍ଗ ପରି ତାକୁ ସ୍ମିତାର ନାଁ ଉଚ୍ଚାରଣ କରିବା ଦେଖି କ୍ଷୁବ୍ଧ ହେଲେ ରାଜୁବାବୁ । କହିଲେ, "ସେ ଭଳି ଘଟଣା ଘଟିବାକୁ ମୁଁ ଆଦୌ ଅନୁମତି ଦେଇପାରିବିନି । ଦେଖ ସୁବ୍ରତ ଦୁନିଆ ଯେତେ ଆଗେଇଥିଲେ ବି ମୁଁ ମୋର ଧର୍ମ, ମୋ ବଂଶର ସଂସ୍କାର, ସୁନାମ ସବୁ ବର୍ଜ୍ଜନ କରିପାରିବିନି । ଛିଃ...ଛିଃ...ବିଧବା ବିବାହକୁ ମୁଁ ଆନ୍ତରିକ ଘୃଣାକରେ ।"

ଚମକିପଡ଼ି ସୁବ୍ରତ କହିଲା, "ବିଧବା ବିବାହ !"

ତାର ଏ ବିସ୍ମୟ ଦେଖି ଅବିଶ୍ୱାସ ଭଙ୍ଗୀରେ କହିଲେ ରାଜୁବାବୁ "ହଁ, ତମେ ଭଲରୂପେ ଜାଣ ଯେ—ସ୍ମିତା ବିଧବା ।"

ପାଟିରୁ କଥା ଛଡ଼ାଇ ନେଇ ସୁବ୍ରତ କହିଲା, "ଓ ବୁଝିଲି....ସେଇଥିପାଇଁ ମୋ ପ୍ରସ୍ତାବକୁ ସେ ଅସ୍ୱୀକାର କଲେ । ଦେଖନ୍ତୁ ମୁଁ ଜାଣେନି...ସତରେ ଜାଣିନି ଯେ ସ୍ମିତା ଏତେ ଅଭାଗିନୀ ।"

"ତାହେଲେ ସ୍ମିତା କ'ଣ ଏକଥା ସମ୍ପୂର୍ଣ୍ଣଭାବେ ଲୁଚାଇଛି ତମଠୁ....ଛିଃ....ଛିଃ, କି କଦର୍ଯ୍ୟ କଥା । ମୁଁ ଭାବିଥିଲି ସେ ସବୁକଥା କହିଥିବ···"

ରାଜୁବାବୁଙ୍କ କଣ୍ଠସ୍ୱରରେ ସ୍ମିତାକୁ ଲକ୍ଷ୍ୟକରି ଯେଉଁ ତୀବ୍ର ଘୃଣା ଓ ବେଦନା ଫୁଟିଉଠିଲା ତାହା ଉପଲବ୍ଧି କରି ସୁବ୍ରତର ଅନ୍ତର ଶିହରି ଉଠିଲା । ହେଉ ଭାଗ୍ୟହୀନା

ନାଖିଟି ପ୍ରତି ସମବେଦନା ଓ ସ୍ନେହ ଯେପରି ଉଛୁଳି ଉଠିଲା ତା ହୃଦୟ ଭିତରେ । ଆଖିଆଗରେ ଭାସିଉଠିଲା ଝଡ଼ବେଳେ ଘଟିଯାଇଥିବା ଦୃଶ୍ୟଗୁଡ଼ିକ । ଏତେ ସମୟ ଧରି ଯେଉଁ କଣ୍ଟାଟି ତାର ହୃତ୍‌ପିଣ୍ଡରେ ଭୁଷି ହୋଇ ରହିଥିଲା ହଠାତ୍ ସେଇଟା ବାହାରି ପଡ଼ିଛି...କ୍ଷତ ନିରାମୟ ହୋଇଯାଇଛି ଚିରଦିନପାଇଁ ଏତେ ଆନନ୍ଦ, ଏତେ ଆବେଗ, ସ୍ୱାକୁ ସେ ଧରିରଖିବ କିପରି ? ଅତିକଷ୍ଟରେ ନିଜର ଭାବାବେଗକୁ ଦମନକଲା ସେ । ପ୍ରଥମେ ସ୍ମିତାକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବାକୁ ହେବ ରାଜୁବାବୁଙ୍କୁ ସମସ୍ତ ଘଟଣା କହି । ସ୍ମିତା ଯେ ଏ ବିଷୟରେ ବିନ୍ଦୁଏ ମାତ୍ର ଦୋଷୀ ନୁହେଁ ଏକଥା ପରିଷ୍କାରରୂପେ ବୁଝାଇଦେଲା ।

ସବୁ ଶୁଣିଲାପରେ ସ୍ମିତା ପ୍ରତି କରିଥିବା ଦୁର୍ବ୍ୟବହାର କଥା ସ୍ମରଣ କରି ରାଜୁବାବୁ ଅନୁତପ୍ତ ହେଲେ । ସ୍ମିତାର ଦୁଃଖମୟ ଅତୀତର ଇତିହାସ ଗୋଟି ଗୋଟି କରି ସୁବ୍ରତକୁ କହିଲେ । କହିଲେ ଜର୍ଜିଆନାଙ୍କ କଥା । ଆଗରୁ ସୁବ୍ରତକୁ ଏକଥା କହିବା ଉଚିତ ଥିଲା ତାଙ୍କର ବୋଲି କହି କ୍ଷମା ମାଗିଲେ ।

ସବୁ ଶୁଣିଲା ପରେ ସୁବ୍ରତର କହିବାକୁ ଇଚ୍ଛାହେଲା, ଆଜିକାଲିର ଦୁନିଆରେ କି ଆପଣଙ୍କ ଭଳି ଲୋକ ଆମ ସମାଜରେ ଅଛନ୍ତି ? କିନ୍ତୁ ସେ କିଛି କହିଲାନାହିଁ । ରାଜୁବାବୁ କହୁଥିଲେ; ନିଜର ଧର୍ମକୁ ସଂସ୍କୃତିକୁ ଜଳାଞ୍ଜଳି ଦେଇଦେଲେ ଯେ ଆମେ ପ୍ରଗତିପଥରେ ଆଗେଇଯିବା, ଦୁନିଆର ମଙ୍ଗଳ ହୋଇଯିବ, ଏକଥା ଆଦୌ ସତନୁହେଁ । ଆମର ପୂର୍ବପୁରୁଷ ମାନେ ଧର୍ମଶାସ୍ତ୍ରରେ ସୁନିପୁଣ ପଣ୍ଡିତମାନେ କିଛି ନ ଭାବି ନ ଚିନ୍ତି ନିୟମ ସବୁ ପ୍ରଣୟନ କରିନଥିଲେ । ସୁବ୍ରତ, ଦେଖୁଛତ ସଂସାରରେ ଯେତେ ଉଚ୍ଛୃଙ୍ଖଳତା ବଢ଼ି ଯାଉଛି ସଂସାର ସେତିକି ଆଗେଇଯାଉଛି ଧ୍ୱଂସ ଆଡ଼କୁ, ଉନ୍ନତି ଆଡ଼କୁ ନୁହେଁ ।”

କେତେ ମଜା ମଜା କଥା କହି ଉତ୍ତର ଦେବାକୁ ଇଚ୍ଛା ହେଉଥିଲେ ବି ଆପାତତଃ ରାଜବାବୁଙ୍କର ବିରୁଦ୍ଧାଚରଣ କରି ତାଙ୍କ ମନରେ କଷ୍ଟ ଦେବାକୁ ଚାହିଁଲାନି ସୁବ୍ରତ । ଯଥାପୂର୍ବ ନମସ୍କାର କରି ସେ ଉଠିପଡ଼ିଲା ଯିବାପାଇଁ, ବାଟେଇଦେବାକୁ ବାରଣ୍ଡାକୁ ଆସିଲେ ରାଜବାବୁ ।

ଅନ୍ୟମନସ୍କ ଭାବରେ ସୁବ୍ରତ ସୁଦୀର୍ଘ ପାବଚ୍ଛ ଶ୍ରେଣୀକୁ ଅତିକ୍ରମ କରିବାକୁ ଲାଗିଲା । ତାର ମନେହେଉଥିଲା ଚାରିଆଡ଼େ କି ପ୍ରଶାନ୍ତ ଘେରି ରହିଛି ସତେ ! ଓଃ, ସ୍ମିତା ଅନ୍ୟ କାହାର ବାଗ୍‌ଦତ୍ତା ଏକଥା ଭାବି କେତେ କଷ୍ଟ ନ ପାଇଥିଲା ସେ ? କିନ୍ତୁ ବର୍ତ୍ତମାନ ସେ କଷ୍ଟ ଅପସରିଯାଇଛି । ଜୀବନ ଆକାଶରେ ଯେପରି ଉଦୟ ହୋଇଛି ନୂତନ ସୂର୍ଯ୍ୟ, ଅନ୍ତର ଆଲୋକିତ ହୋଇଯାଇଛି ତାର ଉଜ୍ଜ୍ୱଳ କିରଣରେ । ଅତୀତର ସେ ଝଡ଼ବେଳର ସେହି ସାକ୍ଷାତକୁ ମନେପକାଇ ବିଶ୍ଳେଷଣ କରିବାକୁ ଲାଗିଲା । ଦୀର୍ଘ ଘନପକ୍ଷ୍ମରେ ଆବରିତ ସେହି ସୁନ୍ଦର ଗଭୀର ଚକ୍ଷୁଦ୍ୱୟରେ ଆଜି ସେ ଯେଉଁ ନିବିଡ ବ୍ୟଥାର ଛାୟା ଦେଖିଥିଲା

ତାଙ୍କୁ ଯଦି ସେ ପ୍ରେମ ବୋଲି କହିବ, ତାହେଲେ କଣ ଭୁଲ୍ ହୋଇଯିବ ? ସ୍ମିତା କି ତାକୁ ଭଲପାଏ....ନିଶ୍ଚୟ ଭଲପାଏ ।

ଗାଡ଼ି ପାଖରେ ପଡ଼ିଥିବା ଦୁଆରଟା ଉପରେ ହାତରଖି ସେ ଠିଆହୋଇ ରହିଲା କିଛି ସମୟ । ଅପ୍ରତ୍ୟାଶିତ ଖବରରେ ଅଭିଭୂତ ହୋଇ ତାର ମନ କହୁଁନି ଏତେ ଚଞ୍ଚଳ ଏ ସ୍ଥାନ ଛାଡ଼ି ଚାଲିଯିବାକୁ । ମୋହାବିଷ୍ଟ ପରି ଠିଆହୋଇ ରହି ସେ ଭାବିବାକୁ ଲାଗିଲା ଖାଲି ତାର ମାନସ-ପ୍ରତିମାଟିର କଥା । ଜୀବନରେ ଯେଉଁ ସ୍ୱପ୍ନଲୋକ ସୃଷ୍ଟି ହୋଇଛି ସେ ସୀମା ଭିତରେ କେବଳ ତାର ଓ ସ୍ମିତାର ସ୍ଥାନ ଅଛି—ଅନ୍ୟ କାହାର ନୁହେଁ—ଅନ୍ୟ କେହି ସେ ସୀମା ଭିତରେ ପ୍ରବେଶ କରିପାରିବେ ନାହିଁ । ଅନ୍ୟ ସମସ୍ତଙ୍କୁ ସେ ଗୌଣ ବୋଲି ହିଁ ମନେକରେ—ସେମାନଙ୍କ ମତାମତକୁ ବି । ସେ ଆଉ ସ୍ମିତା ଉଭୟେ ଉଭୟଙ୍କୁ ସ୍ନେହ କରନ୍ତି—ତାହାହିଁ ହେଉଛି ପ୍ରଧାନ ସତ୍ୟ । ତା ସଙ୍ଗେ ବିବାହ ସମ୍ଭବ ହେଉ ବା ନହେଉ ସେଥିରେ କିଛି ଯାଏଆସେନା । ଯେଉଁ ତରୁଣୀଟି ନିକଟରେ ସେ ତାର ଜୀବନର ପ୍ରଥମ ଅର୍ଘ୍ୟ ନିବେଦନ କରିଥିଲା ଅନ୍ତରାଳପାତ, ସେ ତାର ଅଞ୍ଜଳିକୁ ଶୂନ୍ୟକରି ଫେରାଇଦେଇନି—ତାହାହିଁ ତାର ତରୁଣ ଜୀବନର ଶ୍ରେଷ୍ଠ ଗୌରବ ।

ହଠାତ୍ ସୁବ୍ରତକୁ ତାର ସ୍ୱପ୍ନରାଜ୍ୟରୁ ଛିନ୍ନ କରି ନେଇଆସିଲା ରାଜୁବାବୁଙ୍କ ଆର୍ତ୍ତ କଣ୍ଠସ୍ୱର । ତା ନା ଧରି ଡାକୁଛନ୍ତି ସେ ଉପରୁ—ଅତି ବ୍ୟସ୍ତ ହୋଇଗଲେ ଲୋକେ ଯେପରି ଡ଼ାକପକାନ୍ତି ଠିକ୍ ସେହିପରି । ଚଞ୍ଚଳ ଚଞ୍ଚଳ ପଦବିକ୍ଷେପକରି ଆଉଥରେ ଉପରକୁ ଉଠିଗଲା ସେ । ସୁବ୍ରତ ପାଖକୁ ଆସୁ ନ ଆସୁଣୁ ରାଜୁବାବୁ କହି ଉଠିଲେ, "ସୁବ୍ରତ—ସ୍ମିତା ଘର ଛାଡ଼ି ଚାଲିଯାଇଛି !"

ପ୍ରଥମେ ଯେପରି କିଛି ବୁଝିପାରିଲା ନାହିଁ ସୁବ୍ରତ; ଆଉ ବୁଝିପାରିଲା ଯେତେବେଳେ ସେତେବେଳେ ନିଜ କାନକୁ ଯେପରି ବିଶ୍ୱାସ କରିପାରିଲା ନାହିଁ । × × × ସୁବ୍ରତକୁ ବିଦାୟ ଦେଲା ପରେ ରାଜୁବାବୁ ଘରଆଡ଼ର ଆଲୁଅ ଜାଳି ସ୍ମିତାର କୋଠରୀକୁ ଗଲେ । ଅଦୋହରେ ଝିଅଟାକୁ ଏତେ କଡ଼ାକଥା କହିଦେଇଥିବାରୁ ମନଟା ବ୍ୟସ୍ତ ହେଉଥିଲା । କିନ୍ତୁ ସ୍ମିତାର କୋଠରୀ ଭିତରେ ପଶି ଆଲୁଅ ଜଳାଇଲା ବେଳକୁ ଦେଖିଲେ ବିଛଣା ତାର ଖାଲିପଡ଼ିଛି – ତକିଆ ଉପରେ ଖଣ୍ଡେ ଚିଠି ଚାପିହୋଇ ରହିଛି ଆଉ ସେଥିରେ 'ବାପା ପାଇବେ' ଲେଖାଥିବା ଦେଖି ଶଙ୍କିତହୋଇ ସେ ସେତେବେଳେ ଉଠାଇଆଣି ପଢ଼ିଲେ ତାଙ୍କ ଆଖିଆଗରୁ ଯେମିତି ସବୁ ଆଲୁଅ ଲିଭିଗଲା ମୁହୂର୍ତ୍ତିକପାଇଁ । ଗୃହତ୍ୟାଗ କରି ଚାଲି ଯାଇଛି ସ୍ମିତା । ହଠାତ୍ ସେ ଅନୁଭବ କରିପାରିଲେ ସାରା ପରିସ୍ଥିତିର ଗୁରୁତା । ବିପଦରେ ପଡ଼ିଲାକ୍ଷଣି ମଣିଷର ସହଜାତ ପ୍ରବୃତ୍ତି ହେଉଛି ଅନ୍ୟ ଜଣେ କାହାର ସାହାଯ୍ୟ ସାଙ୍ଗେ ସାଙ୍ଗେ ଲୋଡ଼ିବା । ସାଙ୍ଗେ ସାଙ୍ଗେ ତାଙ୍କର ମନେପଡ଼ିଲା ସୁବ୍ରତକୁ ଡାକିବାକୁ ।

ସୁବ୍ରତକୁ ଏତକ କହିପାରିଲା ପରେ ବାରଣ୍ଡାରେ ରହିଥିବା ଚୌକିଟାରେ ଧପ୍ କିନା ବସି-ପଡ଼ିଲେ ଚିଠିଟିକୁ ତା ଆଡ଼କୁ ନୀରବରେ ବଢ଼ାଇଦେଇ ।

ବାରଣ୍ଡାର ଆଲୁଅ ତଳେ କମ୍ପିତ ହୃଦୟରେ ସୁବ୍ରତ ଚିଠିଟିକୁ ପଢ଼ିବାକୁ ଲାଗିଲା । ସ୍ମିତା ଲେଖିଛି—

ବାପା,

ଜୀବନରେ ଏ ପର୍ଯ୍ୟନ୍ତ କେବେ କେଉଁଦିନ ଯାତ୍ରା କରିନି ଆଜି ଶେଷକୁ ସେଇଯାତ୍ରା କରିବାକୁ ଯାଉଛି । ଜାଣେନି ମୋର ଆଜନ୍ମର ନିରାପଦ ଆଶ୍ରୟ ଛାଡ଼ି ଆଜି ଯେଉଁ ପଥ ଆଡ଼କୁ ପାଦ ବଢାଇଦେବାକୁ ଯାଉଛି ସେଥିରେ ପାଦ ଦୁଇଟି କ୍ଷତବିକ୍ଷତ ହୋଇ ଆଉ ଅଧିକ ଆଗେଇବାକୁ ଅସମର୍ଥ ହେବ କି ନାହିଁ । ବାପା, ତୁମେ ମତେ କ୍ଷମା କରିବ.... ତୁମେ ମତେ କ୍ଷମା କରିବ । ଦୁଷ୍କୃତରେ ଆମ ଘରର ସମ୍ମାନ ମୁଁ ତଳେ ପକାଇ ଦେଇଛି । ତୁମ ସାମନାରେ ଠିଆହୋଇ ମୁହଁ ଟେକି ଯେଉଁ କଥା କହିପାରିନଥିଲି ଏବେ ଚିଠିରେ ଅକପଟରେ ତାହା ସ୍ୱୀକାର କରିବାକୁ ହିଁ ପଡ଼ିବ ମତେ । ମୁଁ ସୁବ୍ରତବାବୁଙ୍କୁ ସ୍ନେହକରେ । ତାଙ୍କୁ ଭଲପାଏ । ତୁମର ଅନୁମାନ ସତ । ମୁଁ ଧର୍ମଭ୍ରଷ୍ଟ, ନୀତିରୁ ବିଚ୍ୟୁତ ହୋଇଛି, ନିଜର ହୃଦୟକୁ ଶୃଙ୍ଖଳିତ କରି ରଖିପାରିନି, ତେଣୁ ଚିରଦିନପାଇଁ ତୁମପାଖରେ ଅପରାଧିନୀ ହୋଇ ରହିଗଲି । ବାପା, ତୁମ ସ୍ନେହର ଉପଯୁକ୍ତ ସମ୍ମାନ ଦେଇପାରିଲିନି, ବରଂ ଜଗତ ସମ୍ମୁଖରେ ସେ ସ୍ୱର୍ଗୀୟ ସ୍ନେହକୁ ମୁଁ ଅବମାନନା କରିଛି । ଯେ ସ ଜୀବନ ତୁମକୁ କଷ୍ଟ ଦେଲି । ଆଉ ଅଧିକ ଯନ୍ତ୍ରଣା ଦେବିନି ବୋଲି ହିଁ ଆଜିର ଏ ପରିକଳ୍ପନା ମୋର । ତୁମ ପାଖରେ ରହିଲେ ଏ ଦୂଷିତ ମୁହଁକୁ ଦେଖାଇ ସବୁଦିନେ ତୁମକୁ କଷ୍ଟଦେବାକୁ ପଡ଼ିବ, ସେଥିରେ ଲାଭ କଣ—ତୁମେ କଷ୍ଟ ପାଇବ, ମୁଁ ମଧ୍ୟ କଷ୍ଟ ପାଇବି । ବରଂ ଏ ଅଲୋଡ଼ା ଜୀବନଟାକୁ ଯଦି ଦୁନିଆର ମଙ୍ଗଳପାଇଁ ମୁଁ ଉତ୍ସର୍ଗ କରିଦେଇପାରେ ତାହେଲେ ସେଥିରେ ବା କିଛି ସାର୍ଥକତା ମିଳିବ । ସେଇ ଆଶାରେ ଅଜଣାବାଟ ଆଡ଼କୁ ପାଦ ବଢ଼ାଇଲି । ତୁମର ଆଶୀର୍ବାଦ ମୋର ପାଥେୟ ।

ଇତି
ତୁମର ଅଭାଗିନୀ ସ୍ମିତା

ସୁବ୍ରତର ସାରାଦେହ ରୋମାଞ୍ଚିତ ହୋଇଗଲା ଯେପରି । କିନ୍ତୁ ପରମୁହୂର୍ତ୍ତରେ ସ୍ମିତାର ବର୍ତ୍ତମାନର ପରିସ୍ଥିତି କଥା ଭାବି ଶଙ୍କିତ ହୋଇଉଠିଲା ସେ । ସ୍ମିତା ଭଳି ଭୀରୁ କୁଳବଧୂ ଝିଅ ଏ ନିଆଁ ଭିତରକୁ ଏକାକୀ ଝାସଦେବାର ସାହସ ପାଇଲା କେଉଁଠୁ ଭାବି ଆଶ୍ଚର୍ଯ୍ୟର ସୀମା ରହିଲାନି ତାର । ନିଜର କର୍ତ୍ତବ୍ୟ ଠିକ୍ କରିନେଇ ରାଜୁବାବୁଙ୍କ ସାହାଯ୍ୟରେ ଦୁଆର ପ୍ରଭୃତି ତାଲାବନ୍ଦକରି ତାଙ୍କୁ ସାଙ୍ଗରେ ନେଇ ଗାଡ଼ି

ଧରି ବାହାରିପଡ଼ିଲା ସେ—ସବୁଠିକ ରାସ୍ତା ପ୍ରଥମେ ଦେଖିନେବାକୁ ହେବ, ତାପରେ ଷ୍ଟେସନ୍‌କୁ ଯିବାକୁ ହେବ ।

ରାଜୁବାବୁ ଯେପରି ମୂକ ପାଲଟିଯାଇଥିଲେ । ଏ ଘଟଣା ତାଙ୍କର ସମସ୍ତ ପ୍ରତ୍ୟାଶାର ବାହାରେ ଥିଲା । ଅନେକ ଭୁଲବୁଲି କରି ମଧ୍ୟ ସ୍ମିତାର କୌଣସି ସନ୍ଧାନ ପାଇପାରିନଥିଲେ ସେମାନେ । କାହାକୁ କହିବା ଉପାୟ ବି ନଥିଲା । ସୁବ୍ରତ ଭଲରୂପେ ଜାଣେ, ରାଜୁବାବୁ ବି ଜାଣନ୍ତି—ଘରର ସୀମା ଭିତରୁ ବାହାରକୁ ପାଦ ବଢ଼ାଇ ଝିଅଟିଏ ଯଦି ଯାଏ ତାର ଉଦ୍ଦେଶ୍ୟ ମହତ୍ତ୍ୱ ହୋଇଥିଲେ ବି ଏ ଦୁନିଆ ତାକୁ ସମ୍ମାନ ଦେବନି କେବେ, ବରଂ ତାଳିକୁ ତାଳ କରି କୁତ୍ସାରଟନା କରିବାରେ ଶତମୁଖ ହୋଇଉଠିବ । ତେଣୁ ମୁହଁ ବନ୍ଦ କରି ରହିବା ହେଉଛି ବୁଦ୍ଧିମାନର କାର୍ଯ୍ୟ ।

ସୁବ୍ରତର ଉପଦେଶ ଅନୁଯାୟୀ ଲଛମୀର ପ୍ରାପ୍ୟଟିକ ସୁବ୍ରତର ବିଶ୍ୱସ୍ତ ଭୃତ୍ୟ ହାତରେ ଦିଆଗଲା ଆଉଦିନ ଲଛମୀକୁ ନେଇ ଦେଇଦେବାପାଇଁ । ସେହି ସୂତ୍ରରେ ପରମାଳିକଙ୍କ ସହିତ ଦେଖାକରି ଘର ଛାଡ଼ି ଚାଲିଯିବା କଥା ଜଣାଇ ତାଙ୍କର ପ୍ରାପ୍ୟଟିକ ଦିଆଗଲା । ଜିନିଷପତ୍ର ସବୁନେଇ ରାଜୁବାବୁ ରାତିଗାଡ଼ି ଧରିଲେ ବାଲେଶ୍ୱର ଉଦ୍ଦେଶ୍ୟରେ ଯିବାପାଇଁ । ତାଙ୍କ ମନରେ କ୍ଷୀଣ ଆଶା ଜାଗିଥିଲା—କେଜାଣି ସ୍ମିତା ଯଦି ସେଠାକୁ ଯାଇଥିବ—ଜାଣିହୁଏନା ଅଛନ୍ତି ସେଠି । ଠିକ୍ ହେଲା, ସୁବ୍ରତ ତାର ନିଜର ଯିବା ବନ୍ଦକରି ସେଇଠି ରହିବ । ତାକ୍ତର ହିସାବରେ ଏ ଷ୍ଟେଟ ସହରଟିରେ ଯେଉଁ କେତୋଟି ଆଶ୍ରମ ପ୍ରଭୃତି ଅଛି, ସବୁଠାରେ ସେ ନିଶ୍ଚିତ, ତେଣୁ ପ୍ରତ୍ୟକ୍ଷଭାବରେ କିଛି ନ କହି ମଧ୍ୟ ଅନୁସନ୍ଧାନ କରିପାରିବ । ରାଜ୍‌ବାବୁଙ୍କ ବିବର୍ଣ୍ଣ ବ୍ୟଥିତ ମୂର୍ତ୍ତିଆଡ଼କୁ ସିଧା ଚାହିଁପାରୁନଥିଲା ସେ । ମଣିଷର ମୁହଁରେ ନିଃସ୍ୱତା ଓ ନିଃସହାୟତା ଏହିପରି ମୂର୍ତ୍ତିମନ୍ତ ହୋଇ ଫୁଟିପାରେ ! ଏହି ଲୋକର ଶାନ୍ତିମୟ ପରିବାରଟିରେ ଝଡ଼ର ଝାପ୍ଟା ବୁହାଇଦେଇ ଓଲଟପାଲଟ କରିଦେଇଛି ସେ ନିଜେ, ଭାବିଲାକ୍ଷଣି ମନ ଚାହୁଁଥିଲା ମାଟିରେ ମିଶିଯିବାକୁ । ଗାଡ଼ିର ଛୁଟିଘଣ୍ଟା ବାଜିଲା—ଧୀରେ ଧୀରେ ଗତି କରିବାକୁ ଆରମ୍ଭ କଲା ଗାଡ଼ି । ରାଜ୍‌ବାବୁ ତାଙ୍କ ଜାଗାଟିରେ ମୁହଁ ତଳକୁ କରି ବସିଥିଲେ ।

× ×

ଗାଡ଼ି ଚାଲିଥିଲା ତାର ସ୍ୱାଭାବିକ ଗତିରେ । କେବଳ ମହିଳାମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଡବାଟିରେ ଏକାକିନୀ ବସି ସ୍ମିତା ଭାବି ଚାଲିଥିଲା ଆକାଶ ପାତାଳ । କ୍ରୋଧ କ୍ଷମା ଦୁଃଖରେ ପଡ଼ି ମଣିଷ ଯେ ସମୟସମୟରେ ଅନ୍ଧ ଭଳି କାମକରେ ଯେଉଁ କଥା ଅନୁଭବ କରୁଥିଲା ସେ । ତାର ମନେହେଉଥିଲା ସେ ଯେପରି ସ୍ୱପ୍ନ ଦେଖୁଛି । ଅନ୍ଧାର ଭିତରେ ଛୋଟିଆ ବାକ୍ସଟି ଧରି ସେ ଯେତେବେଳେ ମନେ ମନେ ବାପାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ବାହାରି ଆସିଲା, ଲୁହ ଉଛୁଳି ପଡୁଥିଲା ଦୁଇଆଖିରୁ । କିଛି ଦୂର

ଚାଲିଲା ପରେ ଖାଲି ରିକ୍‌ସାଟିଏ ଦେଖି ତାକୁ ଯେଉଁଥିରେ ବସି ସିଧା ଷ୍ଟେସନକୁ ଆସିଲା ସେ । ସ୍ୱପ୍ନାଭିଭୂତ ପରି ଟିକଟ କାଟି, ନିର୍ଦ୍ଦିଷ୍ଟ ଡବାଟିରେ ଆସି ଯେତେବେଳେ ବସିଲା ସେତେବେଳେ ବି ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରିପାରିନଥିଲା ସେ । ଗାଡ଼ି ଯେତେବେଳେ ଗତି କରିବାକୁ ଆରମ୍ଭ କଲା ହଠାତ୍ ତାର ହୃତ୍‌ପିଣ୍ଡଟା ଚମକି ପଡ଼ିଲା । ଡବାଟିରେ ସେ ଏକାକିନୀ, କେହି ସଙ୍ଗିନୀ ନାହାନ୍ତି, ଯଦି ଚୋର ଖଣ୍ଡଙ୍କ ହାବୁଡ଼ରେ ପଡ଼ିବ ତାହେଲେ ତାର ଗତି କଣ ହେବ ? ଏସବୁ ଭାବି ଭୟରେ କଣ୍ଟକିତ ହୋଇଗଲା ତାର ସାରା ଶରୀର । ଉଠିପଡ଼ି ଡବାଟିର ସବୁ ଝରକା ବନ୍ଦ କଲା, ଦ୍ୱାର ଦୁଇଟାକୁ ଭିତରୁ ବନ୍ଦକରିଦେଲା, ତାପରେ ବେଞ୍ଚଟା ଉପରେ ବସିପଡ଼ି ଅବସ୍ଥାର ଅସହାୟତା ଉପଲବ୍ଧି କଲାକ୍ଷଣି ବିନ୍ଦୁ ବିନ୍ଦୁ ଝାଳ ଦେଖାଦେଲା ତାର ମୁହଁରେ ।

ଶୋଷରେ ତଣ୍ଟି ଶୁଖି କାଠ ହୋଇଯାଉଛି, ଛାତି ଦୁରୁ ଦୁରୁ ହେଉଛି । କ୍ରମଶଃ ଭୟରେ ସେ ଏତେ ଅଭିଭୂତ ହୋଇପଡ଼ିଲା ଯେ, ଝାଳରେ ସର୍ବାଙ୍ଗ ବୁଡ଼ିଯାଇଥିଲେ ମଧ୍ୟ ଆଉ ମୁଣ୍ଡ ଘୂରିଲାପରି ଅନୁଭବ କରି ବଡ଼ ଅସୁସ୍ଥ ବୋଧ କରୁଥିଲେ ମଧ୍ୟ, ତାର ଖିଆଲ ହେଲାନି ବନ୍ଦ ଥିବା ପଙ୍ଖା ଦୁଇଟିର ସୁଇଚ୍ ଟିପିଦେବାକୁ । ସେ ବନ୍ଦ ଡବା ଭିତରେ ଶ୍ୱାସରୁଦ୍ଧ ହେଲାଭଳି ଛଟପଟ କରୁକରୁ ନିଜର ଅଦୃଷ୍ଟକୁ ସୁମରିବା ଛଡ଼ା ଅନ୍ୟ କିଛି ଉପାୟ ନଥିଲା ସେତେବେଳେ ।

ଏହିପରି ଅବସ୍ଥାରେ ଗୋଟିଏ ଷ୍ଟେସନ୍‌ରେ ଗାଡ଼ି ଯେତେବେଳେ ଅଟକିଲା ହଠାତ୍ ସେ ଶୁଣିଲା ଦ୍ୱାରରେ କରାଘାତର ଶବ୍ଦ । ପ୍ରଥମେ କଣ କରିବ ଠିକ୍ ନ କରିପାରିଲେ ବି ପରେ ସାହସ ସଞ୍ଚୟ କରି ଗାଡ଼ିର ଦ୍ୱାର ଖୋଲିଲା ସେ । ବାହାରେ ଜଣେ ପୁରୁଷ, ଜଣେ ସ୍ତ୍ରୀଲୋକ ଓ ଛୋଟିଆ ଝିଅଟିଏ ଠିଆହୋଇଛନ୍ତି...ଦୁଇଜଣ ପରିଚାରକ ବି ଅଛନ୍ତି ସେମାନଙ୍କ ସହିତ । ଭଦ୍ରଲୋକ ସ୍ତ୍ରୀ ଓ କନ୍ୟାକୁ ଡବା ଭିତରକୁ ଉଠିବାକୁ ନିର୍ଦ୍ଦେଶ ଦେଇ ଜିନିଷପତ୍ର ରଖିବାକୁ ଲୋକଙ୍କୁ ଆଦେଶଦେଲେ । ଜିନିଷପତ୍ର ରଖାଥୁଆ ଚାଲିଲା । ତାରି ଭିତରେ ହଠାତ୍ ସ୍ମିତା ଆଡ଼କୁ ବୁଲିପଡ଼ି ସେ ପ୍ରଶ୍ନ କଲେ, "ମୁଁ ଏ ଡବାରେ ରହିଲେ ଆପଣଙ୍କର କିଛି ଆପତ୍ତି ଅଛି କି ? ମୋ ସ୍ତ୍ରୀ ଅସୁସ୍ଥ, ତେଣୁ ମୋର ଉପସ୍ଥିତି ଏକାନ୍ତ ପ୍ରୟୋଜନ । ଅନ୍ୟ ଡବାଗୁଡ଼ିକରେ ଭିଡ଼ ହେବ, ଏପଟେ ତାଙ୍କର ବିଶ୍ରାମ ଦରକାର... ଆପଣ ଯଦି ଅନୁମତି ଦିଅନ୍ତି...

'ହଁ ରହନ୍ତୁ' କହି ସ୍ମିତା ସଜାଡ଼ି ହୋଇ ବସିଲା ନିଜ ସ୍ଥାନରେ । ତା ଛାତି ଉପରୁ ଗୋଟାଏ ପଥରବୋଝ ଓହ୍ଲାଇଯାଇଛି । ଅଜଣା ବାଟରେ ଗଲାବେଳେ ନିହାତି ଅପରିଚିତ, ନିହାତି ପରଲୋକଙ୍କୁ ବି କିପରି ନିଜର ଅତି ଆପଣାର ମନେହୁଏ, ସେ କଥା ସେ ଭାବୁଥିଲା । ଅଳ୍ପ ସମୟ ପରେ ଆଗନ୍ତୁକମାନଙ୍କ ଆଡ଼କୁ ଚାହିଁଲା ସେ । ବିଛଣା ପ୍ରସ୍ତୁତ

କସବ୍ଦୋଇଯାଇଛି ଏବଂ ମହିଳାଜଣକ ଅତି କ୍ଳାନ୍ତଭାବରେ ଆଶ୍ରୟ ନେଇଛନ୍ତି ସେଥିରେ । ଗ୍ରେଟ ଝିଅଟି—ସୁନ୍ଦର ଦେଖିବାକୁ, ବୟସ ବୋଧହୁଏ ଛଅ ସାତ ହେବ, କିମିତି ମନମରା ହୋଇ ବସିଛି ଗୋଟାଏ କୋଣକୁ । ହାତରେ ଆଖିଦାଇଟା ଚକ୍ ଚକ୍ କରୁଛି ତାର । ପଙ୍ଖାର ସୁଇଚ୍ ଟିପି ଝରକା କେତେଟା ଖୋଲିବା ଉଦ୍ୟମ କରୁଛନ୍ତି ଭଦ୍ରଲୋକ । ତାର ଦୃଷ୍ଟି ପଡିଲା ଗୃହିଣୀଙ୍କ ମୁହଁରେ—ନଜର ଆଖିବୁଜାଟା ମେଲି ସେ ଗୃହିଁ ରହିଥିଲେ ତା'ର ଆଡ଼େ, ଦୃଷ୍ଟିରେ ଦୃଷ୍ଟି ପଡ଼ିଲାକ୍ଷଣି ଅବଶ୍ୟ ଅନ୍ୟଆଡେ ଗୃହିଁଲେ ସେ । ଶୀର୍ଣ୍ଣ ବିବର୍ଣ୍ଣ ଦିଶୁଛି ମୁହଁ ଦେହ । ସୁସ୍ଥ ଥିଲାବେଳେ ଦେଖିବାକୁ ନିଶ୍ଚୟ ଅତି ସୁନ୍ଦର ଥିବେ । ସ୍ୱର୍ଣ୍ଣାଲଙ୍କାରରେ ସର୍ବାଙ୍ଗ ଝଲମଲ କରୁଛି ସତ; କିନ୍ତୁ ମାନୁନାହିଁ ଆଦୌ । କଙ୍କାଳସାର ମଣିବନ୍ଧ ଉପରେ ଟିଲା ଟିଲା ଚୁଡ଼ି, ବାଲା, ଚୂଡ଼ି ଗୁଡ଼ିକ କପରି ଗୋଟାଏ ଅସାମଞ୍ଜସ୍ୟ ସୃଷ୍ଟିକରୁଥିଲା । କଣ୍ଠଦେଶରେ ବି ସେହିଭଳି ଅସୁନ୍ଦର ଦିଶୁଥିଲା କଣ୍ଠାଭରଣ ଗୁଡ଼ିକ । ପରିଧାନରେ ଅତି ମୂଲ୍ୟବାନ୍ ବ୍ରହ୍ମପୁରୀ ସାଦାରଙ୍ଗ ଲାଲ୍ କୁମ୍ଭିଧଡ଼ି ବାଲା ପାଟଖଣ୍ଡେ । ପାଦରେ ବି ଦାମିକା ଭେଲ୍‌ଭେଟ୍‌ର ଚପ୍ପଲ ।

ଭଦ୍ରବ୍ୟକ୍ତି ଅତି ସୌମ୍ୟଦର୍ଶନ । ଉଜ୍ଜ୍ୱଳ ଗୌରବର୍ଣ୍ଣ, ଚଉଡ଼ା କପାଳ ଓ ଉନ୍ନତ ନାସିକା ଦେଖିଲେ ମନେହେବ କ୍ଷତ୍ରୀୟ ବଂଶଜ । ଆଖିରେ ସୁନାଫ୍ରେମ୍ ବନ୍ଧା ଚଷମା । ଉଚ୍ଚ ବଳିଷ୍ଠ ଚେହେରା । ହାତର ଆଙ୍ଗୁଠିଗୁଡ଼ିକରେ ରହିଛି ମୂଲ୍ୟବାନ୍ ପଥରବସା ମୁଦି କେତୋଟି, ସୁନାର ଘଣ୍ଟାଚେନ୍, ସୁନା ବୋତାମ ମୂଲ୍ୟବାନ୍ ମଠାପଞ୍ଜାବୀ ପରିହିତା ଝିଅଟି ଖୁବ୍ ସୁନ୍ଦର ଲାଲ୍ ରଙ୍ଗର ନାଇଲନ୍ ଫ୍ରକଟିଏ ପିନ୍ଧିଛି, ଅତି ବେଶି ନହେଲେ ମଧ୍ୟ ସାମାନ୍ୟ ଅଳଙ୍କାରରେ ମଣ୍ଡିତା । ଲାଲ୍ ରଙ୍ଗର ଫିତା ବନ୍ଧା ହୋଇଛି ମୁଣ୍ଡରେ । ତାକୁ ଦେଖିଲାକ୍ଷଣି ପିଲାଦିନର ସ୍ମୃତି କଥା ମନେପଡ଼ିଲା ତାର । ଦ୍ୱିତୀୟ ବେଞ୍ଚଟିର ବିଛଣାଟିକୁ ସଂପ୍ରସାରିତ କରିଦେଇ ଭଦ୍ରଲୋକ କହିଲେ, "ମଞ୍ଜୁ....ଆ...ଶୋଇପଡ଼... ।" ବିରୁକ୍ତି ନକରି ବାଳିକାଟି ଶୋଇପଡ଼ିଲା । ତାର ମୁଣ୍ଡ ଉପରକୁ ବାପା ତାର ସଜାଡ଼ି ହୋଇ ବସିଲେ । ପରସ୍ପରକ ଦୁଇଟି ବୋଧହୁଏ ତୃତୀୟଶ୍ରେଣୀ ଡବାକୁ ଚାଲିଯାଇଛନ୍ତି ।

ମଞ୍ଜୁକୁ ଦେଖି ସ୍ମୃତିର ମନେପଡ଼ିଲା ନିଜର ପିଲାଦିନର କଥା, ଆଉ ପିଲାଦିନର କଥା ମନେପଡ଼ିଲାକ୍ଷଣି ମନେପଡ଼ିଲା ବାପାଙ୍କ କଥା । ମନେ-ପଡ଼ିଲା କେତେ ଅସହାୟ ଅବସ୍ଥାରେ ସେ ତାଙ୍କୁ ଛାଡ଼ିଦେଇ ଆସିଛି ! ସ୍ମୃତି ନଥିଲେ—ଯେ ବାପାଙ୍କର ଦଣ୍ଡଟିଏ ଚଳୁନଥିଲା ! ସେ ଦିନ କଟାଇବେ କପରି ? ତାଙ୍କର ସବୁ ସୁବିଧା ଅସୁବିଧା କଥା ବୁଝିବ କିଏ ? ବାପା ଯେ ଦିନେହେଲେ କେବେ ନିଜକଥା ନିଜେ ବୁଝିନାହାନ୍ତି । ଘରର କୌଣସି ବିଷୟ ନେଇ ଭାବିନାହାନ୍ତି କେବେ । ମା ଚାଲିଯିବାପରେ ସେ ନିଜେ ତ ତାଙ୍କୁ ଚଳାଇଆସିଛି । ଏତେଦିନ ଘରର ସବୁ ଦାୟିତ୍ୱ

ମୁଣ୍ଡାଉଛି । ହାତର ବେଣ୍ଡେଜ୍ ଖୋଲିବାକୁ ଆହୁରି ଛ'ସାତଦିନ ଡେରି । କିଏ ଚାହିଁବେ ସେ ? ହେ ଭଗବାନ୍, ଏ ସବୁ କଥାତ ସେ ବହୁଥର ଦେଖିଥିଲେ, ଦୂରବିଦେଶରେ ଏକାନ୍ତ ଅସହାୟ ଭାବରେ ସେ ତାଙ୍କୁ ଛାଡ଼ି ଚାଲିଆସିଛି । ନିର୍ଜ୍ଜନ ଜାଗା, ଅନ୍ଧକାର ଘର, କେହି ନାହାନ୍ତି—ପାଣି ଗିଲାସେ ବି ଦେବାକୁ କେହି ଜଣେ ନାହିଁ ପାଖରେ । ବାପା ଯେତେବେଳେ ତା ନାଁ ଧରି ଡାକୁଥିବେ ଆଉ ଉତ୍ତର ପାଉନଥିବେ, ଉଠିପଡ଼ି ଖୋଜୁଥିବେ, ଡାକୁଥିବେ କେତେଥର । ତାର କୋଠରୀଟିକୁ ଯାଇ ଯେତେବେଳେ ଶଠିକି ପାଉଥିବେ···ଯଦି....ଯଦି...ଅବିଲକ୍ଷଣୀ ଗୋଟିଏ ହିମଶୀତଳ ପ୍ରବାହ ବହିଗଲା ତାର ସାରାଦେହରେ...ଯଦି ସେହି ପୁରୁଣା ବେମାରି ଆଉ ଥରେ ଦେଖାଦେବ ? ଡାକ୍ତର କହିଥିଲେ, ମନ କିମ୍ବା ମୁଣ୍ଡ ଉପରେ ବେଶି ଚାପ ପଡ଼ିବା ଉଚିତ ନୁହେଁ, ତାହେଲେ ଆଉଥରେ ରକ୍ତଚାପର ବୃଦ୍ଧି ଘଟିପାରେ । ସେ ଯଦି ଆଉଥରେ ଅସୁସ୍ଥ ହୋଇପଡ଼ନ୍ତି ତେବେ କିଏ ତାଙ୍କର ସେବା କରିବ ?' ସିତାର ଇଚ୍ଛାହେଲା ମଥାପିଟି କାନ୍ଦିବାକୁ । ବାପାଙ୍କ ସହିତ ଦେଖା ହୋଇଯିବାର ପୂର୍ଣ୍ଣ ସମ୍ଭାବନା ଯଦି ଥାଆନ୍ତା ତେବେ ବୋଧହୁଏ ସେହି ଚଳନ୍ତା ରେଲ୍ ଗାଡ଼ିରୁ ଡେଇଁ ପଡ଼ିବାକୁ ସେ ତିଳେମାତ୍ର ଦ୍ୱିଧା କରିନଥାନ୍ତା !

ନିଜ ପାଖର ଝରକାଟି ଖୋଲିଦେଇଥିଲା ସେ । ସେହି ଝରକା ବାଟେ ମୁହଁ ବଳାଇ ବାହାରର ତାରକାଖଚିତ ଅନ୍ଧକାର ଆକାଶକୁ ସେ ଚାହିଁରହିଲା । ନିରୁପାୟ ଦୁଃଖରେ ଝରିଯିବାକୁ ଲାଗିଲା ଲୁହର ଅସରନ୍ତି ଧାର ।

ସଦ୍ଭାବନା ତାର ନିର୍ଦ୍ଦିଷ୍ଟ ଗନ୍ତବ୍ୟ ପଥରେ ଛୁଟିଚାଲିଲା । ଛୋଟିଆ ଷ୍ଟେସନ୍ ଗୁଡ଼ିକ ନିଜର ସ୍ୱଳ୍ପଆଲୋକର ସମ୍ଭାର ନେଇ ମଝି ମଝିରେ ଅତୀତ ହୋଇଯାଉଥିଲେ । ସାମାନ୍ୟ କୋଳାହଳ, ସାମାନ୍ୟ ଜନସମାଗମ ଦେଖି ତାର ବାରମ୍ବାର ମନେପଡ଼ୁଥିଲା ସେହି ପାହାଡ଼ିଆ ଷ୍ଟେସନଟିର କଥା । ଦୂରରେ ଅତି ଉଜ୍ଜ୍ୱଳ ଆଲୋକମାଳା ଦେଖି ସେ ଜାଣିଲା ଏଥର ଗାଡ଼ି ବଦଳାଇ କଲିକତା ଦାର୍ଜ୍ଜିଲିଂ ମେଲ୍‌ରେ ଉଠିବାକୁ ପଡ଼ିବ । ଅତି ସାବଧାନରେ ଲୁହ ପୋଛିଆଣି ନିଜକୁ ଅପେକ୍ଷାକୃତ ସଂଯତ କଲା ସିତା । ଛାତି ଭିତରୁ ବାହାରି ଆସିଥିବା ଦୀର୍ଘନିଃଶ୍ୱାସ ମଧ୍ୟେ ମନେପଡ଼ିଲା -ବାପାଙ୍କଠାରୁ କେତେଦୂରକୁ ଚାଲିଆସିଲାଣି ।

କାନ୍ଦିଲେ ମଣିଷର ମନ ହାଲୁକା ହୋଇଯାଏ । ଦୁଃଖର ବୋଝ ଟିକିଏ ହାଲୁକା ମନେହେଲା ସିତାର । ନିଜକୁ ନିଜେ ସାନ୍ତ୍ୱନା ଦେଲା ସେ, ଯେଉଁ ଅବସ୍ଥାକୁ ସ୍ୱେଚ୍ଛାକୃତଭାବରେ ବରଣ କରିଛି, ସେଥିରେ ପଡ଼ି ଅଧୀର ହେଲେ କିଛି ଲାଭ ନାହିଁ, ଧୈର୍ଯ୍ୟ ଧରିବାକୁ ପଡ଼ିବ, ମନରେ ଦମ୍ଭ ସାହସ ଆଣିବା ଦରକାର । ବର୍ତ୍ତମାନ୍ ଦୁନିଆର

ଜୀବନବାଟରେ ଏକୁଟିଆ ଆଗେଇବାକୁ ପଡ଼ିବ ତାକୁ, ଛୋଟପିଲା ଭଳି ସେ ଯଦି ଭୀତତ୍ରସ୍ତ ହୁଏ ତେବେ ଚଳିବ କିପରି ?

ଗାଡ଼ିର ଗତି ଆସ୍ତେ ଆସ୍ତେ କମି ବନ୍ଦହେଲା ନିର୍ଦ୍ଦିଷ୍ଟ ଷ୍ଟେସନଟିରେ । ଛୋଟ ବେତ ବାକ୍ସଟି ଖୋଲି ଔଷଧ ଶିଶି ଓ କାଚଗିଲାସ ବାହାରକରି ଭଦ୍ରଲୋକ ତାଙ୍କ ସ୍ତ୍ରୀଙ୍କୁ ଔଷଧ ଦେଇଥିଲେ । ବର୍ତ୍ତମାନ ବାକ୍ସ ବନ୍ଦକରି ଫେରିବା କ୍ଷଣି ହଠାତ୍ ସ୍ମିତାର ଦୃଷ୍ଟି ସହିତ ତାଙ୍କ ଦୃଷ୍ଟି ମିଳିତ ହେଲା, ସାଙ୍ଗେ ସାଙ୍ଗେ ପଚାରିଲେ, "ଆପଣ ବି ଗାଡ଼ି ବଦଳାଇବେ ତ ? ଯିବେ କେଉଁଠାକୁ ?"

ଅଳ୍ପ ଅପ୍ରସ୍ତୁତ ହୋଇ ସ୍ମିତା ଉତ୍ତରଦେଲା, "କଲିକତା...."

"ତାହେଲେ ଚାଲନ୍ତୁ...ଏକାସଙ୍ଗେ ଯିବା···"

ସ୍ମିତା ଉଠି ଠିଆହେଲା ।

"କଲିକତାରେ ଆପଣଙ୍କର କିଏ ଅଛନ୍ତି ?"

ଗାଡ଼ି ବଦଳାଇ ଯିଏ ଯାହାର ଆସନରେ ସଜାଡ଼ିହୋଇ ବସିବାପରେ ହଠାତ୍ ଭଦ୍ରମହିଳା ଏ ପ୍ରଶ୍ନ ପଚାରିବସିଲେ ।

ହଠାତ୍ ଉତ୍ତର ଦେଇପାରିଲାନି ସ୍ମିତା । ପରେ କହିଲା, "କେହି ନାହାନ୍ତି ।"

"କାମ କରନ୍ତି ବୋଧହୁଏ ?"

"ନା...."

"କଣ ଖାଲି ବୁଲିବାକୁ ଯାଉଛନ୍ତି ?"

ସ୍ମିତାର କପାଳରେ ଜମିଉଠିଲା ବିନ୍ଦୁ ବିନ୍ଦୁ ଝାଳ । ସେ ଗଭୀର ସର୍ଦ୍ଦିର ଶୀତଳ ପ୍ରହରରେ ମଧ୍ୟ ଉତ୍ତପ୍ତ ଅନୁଭବ କଲା ସେ । ଦ୍ୱିଧାଜଡ଼ିତ କଣ୍ଠରେ କହିଲା, "ନା, ଇଚ୍ଛା ଅଛି ଶାନ୍ତିନିକେତନ ଯିବାକୁ, ଯଦି ସେଠି କିଛି ବୃତ୍ତିର ଯୋଗାଡ଼ କରିପାରେ... ତାହେଲେ..."

"ଇଣ୍ଟରଭ୍ୟୁକୁ ଯାଇଥିଲେ କି ?" ଏଥର ଭଦ୍ରବ୍ୟକ୍ତି ପ୍ରଶ୍ନକଲେ ।

"ନା" ।

"ତାହେଲେ ସେଠାରେ ବୃତ୍ତିଟା ପାଇବାର ନିଶ୍ଚିତତା କଣ ଅଛି ?"

"ବୃତ୍ତିଟା ଯେ ନିଶ୍ଚିତ ଏକଥା ତ ମୁଁ କହୁନି...." ସାହସକରି ଏଥର ଟିକିଏ ମ୍ଲାନ ଭାବରେ ହସିଲା ସ୍ମିତା ।

ପରିଷ୍କାର ଜଣାଗଲା—ଭଦ୍ରଲୋକ ଅପ୍ରସ୍ତୁତ ହେଲେ । କିନ୍ତୁ ତାଙ୍କ ସ୍ତ୍ରୀ ସାଙ୍ଗେ ସାଙ୍ଗେ ବାହାରିପଡ଼ି ଚରମ ପ୍ରଶ୍ନବାଣ ନିକ୍ଷେପ କଲେ, "ସାଙ୍ଗରେ କିଏ ଅଛନ୍ତି ?"

ଠିକ୍ ଏହି ପ୍ରଶ୍ନକୁହିଁ ଡରୁଥିଲା ସ୍ମିତା । ବାହାର ଦୁନିଆର କୌତୂହଳ ଆଗରେ ସେ ମୁହାଁମୁହିଁ ହୋଇ ଠିଆହୋଇ ପାରିବ ତ ? କାରଣ ପ୍ରଶ୍ନ ପଚାରିବାରୁ କେବେ କେଉଁ ଦିନ

ଦରସ୍ତ ହୋଇନାହିଁ ଏ ଦୁନଆ, ସ୍ମିତା ବେଳକୁ ମଧ୍ୟ ସେ ନୟମର ବ୍ୟତକ୍ରମ ହେବନ । ଶହ ଶହ ଅଜଣା-ମଣିଷଙ୍କ ସଂସ୍ପଶରେ ଆସିବାକୁ ପଡ଼ିବ ଆଉ ସମ୍ମୁଖୀନ ହେବାକୁ ପଡ଼ିବ ସେମାନଙ୍କ ପ୍ରଶ୍ନଗୁଡ଼ିକର । ଶାମୁକାର ଆବରଣ ଭିତରେ ସଯତ୍ନରେ ସାଇତା ହୋଇ ରହିଥିବା ଅତ ମୂଲ୍ୟବାନ୍ ମୁକ୍ତା ଭଳ ଏ ପର୍ଯ୍ୟନ୍ତ ସେ ରହି ଆସିଥିଲା ଗୋଟିଏ ନରାପଦ ଆଶ୍ରୟର ଆବରଣ ଭିତରେ । ବର୍ତ୍ତମାନ ହଠାତ୍ ବାହାର ଜଗତ ସମକ୍ଷରେ ପ୍ରକାଶିତ ହୋଇପଡ଼ିବାରୁ ପରିସ୍ଥିତି ସହିତ ନଜକୁ ପରିଚତ କରାଇବାକୁ ଅସ୍ୱସ୍ତି କର ମନେ ହେଉଥିଲା । ଠିକ ଗଳା ସେ କହିଲା, "ନା, ମୁଁ ଏକୁଟିଆ ଯାଉଚ୍ଛ..."

ସ୍ୱାମୀ ସ୍ତ୍ରୀ ଉଭୟଙ୍କ ମୁହଁରେ ବସ୍ମୟର ଆଭାସ ଫୁଟିଉଠିଲା, ତା ସହିତ ସନ୍ଦେହର ଅସ୍ପଷ୍ଟ ଛାୟା ।

"ବ ପା ମା ତୁମରଙ୍କ କେଉଁଠି ଅଛନ୍ତି ?"

"ମା ନାହାନ୍ତି, ବାପା ସୁନ୍ଦରଗଡ଼ରେ ଚାକରୀ କରନ୍ତି । ଭାଇଟିଏ ପଢ଼ୁଛି କଟକରେ ରହି ।" ଏକା ନଃଶ୍ୱାସରେ କହିଗଲା ସ୍ମିତା ।

"ଓ.... "

ଆଉ କିଛି ପଚାରିବାକୁ ପ୍ରଶ୍ନ ଦଶିଲା ନାହିଁ; କନ୍ତୁ କୌତୂହଳରେ ଝଲମଲ କରୁଥିଲା ସେମାନଙ୍କ ମୁହଁ, ବଶେଷତଃ ମହିଳାଙ୍କ ମୁହଁଟି । ନାରୀର କୌତୂହଳର ବୋଧହୁଏ ସୀମାରେଖା ନାହିଁ, ଅନ୍ୟର ଟିକନଖି ସବୁ ବିଷୟରେ ଜାଣିବାକୁ ସେ ଏତେ ଆଗ୍ରହୀ ହୋଇ ପଡ଼େ ଯେ ! 'ଭଦ୍ରତା' ବୋଲି ଗୋଟିଏ ଜନିଷ ନଥିଲେ ସ୍ୱର୍ଣ୍ଣଲତା ହୁଏତ ଏତେବେଳେ ସ୍ମିତାକୁ ତାର ଅତୀତ, ବର୍ତ୍ତମାନ, ଭବିଷ୍ୟତ୍ ସବୁଗୁଡ଼ିକ ବିଷୟରେ ତନ୍ନତନ୍ନ କରି ପଚାରିବାକୁ ଛାଡ଼ି ନ ଥାନ୍ତେ । ଏତେ ଆଶ୍ଚର୍ଯ୍ୟରକମ ସୁନ୍ଦର ଝିଅ ତାଙ୍କ ଜୀବନରେ ସେ ଦେଖିନାହାନ୍ତି । ଦେହରେ ପ୍ରାୟ ଆଭରଣ ନାହିଁ, କଳା ଧଡ଼ିଥିବା ଝଦଡ଼ଶାଢ଼ୀ ଓ ଧଳା ବ୍ଲାଉଜ ରହିଛି ଦେହରେ । ମୁଣ୍ଡର ସେ ବହଳ କେଶରାଶିକୁ ବେଣୀ କରି ବନ୍ଧାଯାଇନ, କୌଣସିମତେ ଗଣ୍ଠିଟାଏ କରାଯାଇଛି । ଏତେ ସାଧାରଣ ବେଶଭୂଷାରେ ଥାଇ ବି ମଣିଷ ଯେ ଏତେ ସୁନ୍ଦର ଦଶିପାରେ ତାହା ତାଙ୍କର ଧାରଣାତୀତ ।

ତାଙ୍କର ସେ ତନ୍ନତନ୍ନକରି ନରୀକ୍ଷଣ କରିବା ଭଙ୍ଗୀକୁ ଦେଖି ସ୍ମିତାକୁ ଆହୁରି ଅଧିକ ଅସ୍ୱସ୍ତି ଲାଗିଲା ।

"ଆଚ୍ଛା, ଆପଣ କେତେ ଦରମା ପାଇବେ ବୋଲି ଆଶା କରନ୍ତି ?" ଭଦ୍ରବ୍ୟକ୍ତି ପଚାରିଲେ ।

ସଙ୍କୋଚରେ ଲାଲ୍ ପଡଗଲା ସ୍ମିତାର ମୁହଁଟା, ତାର ଯୋଗ୍ୟତା ଯେ କେତେ ଅଳ୍ପ ତା ସେ ଜାଣେ । ବି, ଏ ପାସ୍ କରିଥିଲେ ବି ଶିକ୍ଷୟିତ୍ରୀ ହେବାପାଇଁ ଉପଯୁକ୍ତ ଟ୍ରେନିଂ ସେ ନେଇନାହିଁ । ତେଣୁ ଏତେ ବଡ଼ ଅନୁଷ୍ଠାନଟିରେ ସେ ଯେ କ କର୍ମ ପାଇଁ ଉପଯୁକ୍ତ ବିବେଚିତ

ହେବ; ସେକଥା ସେ ଜାଣେନ । କୁଣ୍ଠିତ ଭାବରେ ସେ କହିଲ, "ଦେଖନ୍ତୁ, ଆଗ କେଉଁଠି ଚାକରୀ କରିନ କେବେ, ତେଣୁ ଦରମା ବିଷୟରେ ମୋର ବିଶେଷ କିଛି ଧାରଣା ନାହିଁ ।"

"ଗ୍ରାଜୁଏଟ୍ ତ ?"

"ହଁ, ବି.ଏ ପାସ୍ କରିଛି ।"

"ତାହେଲେ ଗୋଟେ କାମ କରନ୍ତୁ ନା...." କଣ କହିବାକୁ ଯାଇ ସେ ଟିକଏ ଅଟକିଗଲେ । ତାପରେ ତାଙ୍କ ସ୍ତ୍ରୀଙ୍କୁ କହିଲେ, "ସ୍ୱର୍ଣ୍ଣ ! ତମେ ଅନୁରୋଧ କରୁନ ତାଙ୍କୁ ? ଆମ ସ୍କୁଲଟାରେ ତ ପ୍ରଧାନ ଶିକ୍ଷୟିତ୍ରୀ ପଦ ଖାଲି ଅଛି....ବିଜ୍ଞାପନ ଦେବାର ଦୁଇମାସ ହୋଇଗଲା, କେହି ଆସିଲେନି ।"

ସ୍ୱାମୀଙ୍କର ଏ ସିଧାସଳଖ ପ୍ରସ୍ତାବରେ ସ୍ୱର୍ଣ୍ଣଲତା ଆଦୌ ଖୁସୀ ହେଲେନାହିଁ । ସ୍ମିତା ବିଷୟରେ ଗୋଟାଏ ସନ୍ଦେହର ମେଘ ଜମିଉଠିଲାଣି ତାଙ୍କ ମନ ଭିତରେ । ଆଗରୁ ଯେଉଁ ଝିଅର ଚାକିରୀ ଦରକାର ନଥିଲା, ହଠାତ୍ କାହିଁକି ଚାକରୀର ଦରକାର ହେଲା ? କିଛି ନିର୍ଦ୍ଦିଷ୍ଟ ନ ଥାଇ ସେ ଅନିର୍ଦ୍ଦିଷ୍ଟର ସନ୍ଧାନରେ ବାହାରିପଡ଼ିଛି ତାର କି ଇତିହାସ ଅଛି କିଏ ଜାଣିଛି ? ବୟସ କମ୍, ପରମାସୁନ୍ଦରୀ, ଅବିବାହିତା ଭଲ ମନେ ହେଉଛି ଏକାକିନୀ·· ଏ ଗଳ୍ପର ଗ୍ରନ୍ଥିରେ ସବୁ ରହସ୍ୟପୂର୍ଣ୍ଣ ମନେହେଉଛି ।······

ସ୍ୱର୍ଣ୍ଣଙ୍କୁ ନିରୁତ୍ତର ଦେଖି ସ୍ୱାମୀ ତାଙ୍କର କହିଲେ, "ଆପଣ ଚାଲନ୍ତୁ, ଆମ ସ୍କୁଲର ଦାୟିତ୍ୱ ନେବେ ।"

ସ୍ମିତା ଉତ୍ତର ଦେବା ପୂର୍ବରୁ ସ୍ୱର୍ଣ୍ଣ କହିଲେ, "ଆମର ସେ ନିପଟ ମଫସଲରେ କିଏ ଯାଇ ରହିବ ମ ? ମିଛରେ କାହିଁକି ହଇରାଣ କରିବା ତାଙ୍କୁ...."

ସ୍ୱର୍ଣ୍ଣଙ୍କ ସ୍ୱାମୀ ପ୍ରଶ୍ନକଲେ, "ଆପଣ ମଫସଲରେ ରହିବାର ସପକ୍ଷରେ ନା ବିପକ୍ଷରେ ?"

ଏ ଅଭାବନୀୟ ପ୍ରସ୍ତାବ ଶୁଣି ମୂକ ଭଳି ବିଚାର ସ୍ତବ୍ଧ ହୋଇପଡ଼ିଥିଲା ସ୍ମିତା । ତାର ସ୍ୱପ୍ନ ଯେ ହଠାତ୍ ଏଭଳି ଏତେ ଚଞ୍ଚଳ ସତ୍ୟରେ ପରିଣତ ହୋଇଯିବ, ଏ କଥା ବିଶ୍ୱାସ କରିପାରୁନଥିଲା ସେ । ତେଣୁ କିଛି ତଟସ୍ଥ ହୋଇଗଲା ।

ଭଦ୍ରଲୋକ କହିଚାଲିଲେ, "ଦେଖନ୍ତୁ, ଗାଁଟା ଆମର ବାଲେଶ୍ୱରଠାରୁ କେତେଟା ଷ୍ଟେସନ ଆଗରୁ ପଡ଼ିବ । ଷ୍ଟେସନରେ ଓହ୍ଲାଇ ଦୁଇ ଘଣ୍ଟା ମାଇଲ ବସ୍‌ରେ କିମ୍ବା ମଟରରେ ନଚେତ୍ ଚାଲି ଚାଲି ଯିବାକୁ ପଡ଼େ । ସେଠାକାର ପୂର୍ବତନ ଜମିଦାର ଥିଲେ ମୋ ଶ୍ୱଶୁର । ଏବେ ଅବଶ୍ୟ ଜମିଦାରୀ ଉଚ୍ଛେଦ ଆଇନ୍ ବଳରେ ସେ ସବୁ ଗଲାଣି, ନହେଲେ ସେ ଖଣ୍ଡିକରେ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ଥିଲେ ସେ । ତାଙ୍କଦ୍ୱାରା 'ସ୍ୱର୍ଣ୍ଣଲତା-ବାଳିକା-ଶିକ୍ଷାଶ୍ରମ,' ମୋ ସ୍ତ୍ରୀ, ମାନେ ତାଙ୍କ କନ୍ୟାଙ୍କ ନାଁ ଅନୁଯାୟୀ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ବେଶ୍ ବଡ଼ ସ୍କୁଲଟିଏ, ଆଖପାଖ ଦଶଟଣ୍ଡ ଗାଁରୁ ଝିଅମାନେ ଆସି ପଢ଼ନ୍ତି,

ଶିକ୍ଷୟିତ୍ରୀମାନେ ରହିବା ପାଇଁ ଗୋଟାଏ ମେସ୍ ଅଛି⋯କିନ୍ତୁ ଇଏ ଯାହା କହିଲେ....ତା ସତ, ଜାଗାଟା ନିହାତି ମଫସଲ। ଆପଣଙ୍କର ମନ ପାଇବ କି ନାହିଁ।"

ତାଙ୍କର କଥା ଶେଷ ହେଉ ନ ହେଉଣୁ ସ୍ମିତା ଆଗ୍ରହରେ କହିଲା, "ନା, ନା, ମଫସଲକୁ ମୁଁ ଆଦୌ ଘୃଣା କରେନ, ମଫସଲ ହେଲେ ବରଂ ଭଲ।"

ଏହିପରି ବାଧାଟାଙ୍କ କି ଉଦ୍ଦେଶ୍ୟ ସାଧିତ କରିବାକୁ କେଜାଣି ସ୍ମିତାର ଭାଗ୍ୟଡୋର ଛନ୍ଦି ହୋଇଗଲା ନୂଆଁଗାଁ ସଙ୍ଗେ।

× × × ସେହିଭଳି ବସିବାଭଙ୍ଗୀରେ କେତେବେଳେ ନିଦ ହୋଇଯାଇଥିଲା କେଜାଣି, ବୋଧହୁଏ ଚକ୍ରାର ଭାର କମିବାକ୍ଷଣି ନିଦ ଘାରଦେଇଥିଲା, ମଞ୍ଜୁର ପାଟିରେ ନିଦଭାଙ୍ଗିଲା। ଦୀର୍ଘ ରାତି କେତେବେଳେ କେଉଁ ବାଟ ଦେଇ ଅତୀତ ହୋଇଯାଇଛି ସ୍ୱା ଭିତରେ। ଖରା ପଡ଼ିଗଲାଣି। ଦୀର୍ଘସମୟଧରି ଲଟେଇପଡ଼ିଥିବା ଭଳି ଗୋଟାଏ ଜାଗାରେ ବସିଥିବାରୁ ପିଠି ଆଉ ବେକମୂଳରେ ଯନ୍ତ୍ରଣା ଅନୁଭବ କଲା ସ୍ମିତା। ଗତକାଲିର ନିର୍ଜ୍ଜଳ ଉପବାସ ଆଉ ଘଟଣାଗୁଡ଼ିକର ଗୁରୁଭାର ଦେହକୁ ଏକାବେଳକେ ଅବସାଦଗ୍ରସ୍ତ କରିଦେଇଛି। ମୁଣ୍ଡ ଝିମ୍‌ଝିମ୍ ହୋଇଯାଉଥିଲା, ଇଚ୍ଛା ହେଉଥିଲା ଗୋଡ଼ହାତ ଲମ୍ବାଇଦେଇ ଆରାମରେ ଶୋଇପଡ଼ିବାକୁ; କିନ୍ତୁ ସେ ଉପାୟ ନାହିଁ। ଶ୍ରାନ୍ତ ଦେହଟିକୁ ଆଉଜାଇ ଦେଇ, ବେଞ୍ଚ ଉପରେ ଗୋଡ଼ ଦୁଇଟିକୁ ଲମ୍ବାଇ ବସିଲା ଟିକଏ। ତାର ସହଯାତ୍ରୀ ପରିବାରଟି ସେତେବେଳକୁ ତାଙ୍କର ପ୍ରାତଃକର୍ମ ପ୍ରାୟ ଶେଷକରିଦେଇଥିଲେ କହିଲେ ଚଳେ। ଗୃହାକପ୍ଟି ନିଃଶେଷ କଲାପରେ ମୂଲ୍ୟବାନ୍ ସିଗାରେଟ୍ କେସ୍ ଭିତରୁ ଖଣ୍ଡେ ସିଗାରେଟ୍ ବାହାରକରି ସେଥିରେ ଅଗ୍ନିସଂଯୋଗ କରୁଥିଲେ ସୁକୁମାରବାବୁ—ସ୍ୱର୍ଣ୍ଣଲତାଙ୍କ ସ୍ୱାମୀ। ମଞ୍ଜୁଶ୍ରୀ କାଚଥାଳିଆରେ କିଛି ଖାଇବା ଜିନିଷ ଧରି ବସିଥିଲା। ସ୍ୱର୍ଣ୍ଣଲତା ସେପଟ ବେଞ୍ଚ୍‌ଟିରେ ଠିକ୍ ତାର ପରି ଆଉଜି ବସି ବିଛଣା ଉପରେ ଗୋଡ଼ ଦୁଇଟି ଲମ୍ବାଇଦେଇ ବାହାରକୁ ଚାହିଁଥିଲେ। ସ୍ମିତାକୁ ଆଖି ଖୋଲିବା ଦେଖି ପ୍ରଥମେ ସୁକୁମାରବାବୁ ହିଁ କଥା ଆରମ୍ଭ କଲେ, "ବାଃ! ଏତେବେଳକୁ ନିଦଭାଙ୍ଗିଲା ଆପଣଙ୍କର! ଆଉ ଦ'ଟା ଷ୍ଟେସନ୍ ରହିଲା, କଲିକତାରେ ଓହ୍ଲାଇ ଗାଡ଼ି ବଦଳ କରିବାକୁ ପଡ଼ିବ, ତଞ୍ଚିଲ ଦାନ୍ତଘଷା ହେବିକା ପାରିବାଅଛି। ଅବଶ୍ୟ କଲିକତାରେ ବହୁତ ସମୟ ମିଳିବ..."

ସ୍ୱର୍ଣ୍ଣଲତା ମଧ୍ୟ ମୁହଁ ଫେରାଇ କହିଲେ, "ଆପଣ ଜଣେ ମଣିଷ ତ! ଗୋଡ଼ହାତ ଲମ୍ବାଇ ଆରାମ୍‌ରେ ଶୋଇଲେ ନ କାହିଁକି ଯେ? ବସି ବସି ରାତିଟା କଟାଇଦେଲେ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ସତରେ ବସି ବସି ଏତେ ବେଳ ନିଦରେ କଟାଉଥିବା ଭଳି ଲୋକ ମୁଁ ଦେଖିନଥିଲି ଏ ପର୍ଯ୍ୟନ୍ତ। କେମିତି ନିଦ ହେଲା କେଜାଣି?"

ବହିଁଙ୍କର ପ୍ରଶ୍ନର ଉତ୍ତର ସେ ଦେଲା କେବଳ ଗୋଟିଏ ମଳିନ ହସରେ, ତାପରେ ଉଠିବାର ଇଚ୍ଛା ନଥିଲେ ବି, ବାକ୍‌ସରୁ ଦାନ୍ତକାଠି ବ୍ରଶ୍‌ଟିଏ କାଢ଼ି ବାଥ୍‌ରୁମ୍ ଭିତରେ ପଶିଲା ସେ ।

ତେଣୁ ଆସି ବସୁ ନ ବସୁଣୁ, ମଞ୍ଜୁ ହାଜର ହୋଇଗଲା ନିକଟରେ । ହାତରେ ତାର ଧୂମାୟିତ ଚାହା କପ୍ । ଏତେ ଆଗ୍ରହରେ ସେ ଆଣିଥିଲା ଯେ ତାକୁ ମନା କରି ଫେରାଇଦେବାଟା କଷ୍ଟକର ମନେହେଲା । ସେ ବାଧ୍ୟ ହୋଇ କହିଲା, "ଗାଁରେ ଯିବାଆସିବା କଲାବେଳେ ମୁଁ ପାଣି ଶୁଦ୍ଧା ଛୁଏଁନି, ଗୁନ୍ନାସିଅ, ବାପାଙ୍କୁ ନହେଲେ ମାଙ୍କୁ ନେଇ ଦେଇଦିଅ...."

ତାର ଏକଥା ଶୁଣି ସତେ କି ଆକାଶରୁ ଖସିପଡ଼ିଲେ ସୁକୁମାର ବାବୁ । ଆଶ୍ଚର୍ଯ୍ୟ ହୋଇ କହିଲେ, "ସେ କି କଥା? ଗାଁରେ ପହଞ୍ଚି ପହଞ୍ଚି ଆହୁରି କେତେ ସମୟ ଲାଗିବ, ଆପଣ ଏପରି ଅଖିଆ ଅପିଆ ରହିବେ?"

ସ୍ୱର୍ଣ୍ଣଲତା ଗୋଟିଏ ଜଳଖିଆ ଥାଳିଆ ସଜାଡ଼ୁଥିଲେ ବୋଧହୁଏ ତା ପାଇଁ । ତାଙ୍କ ହାତ ଅଟକିଗଲା । ସେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ଗଲେ । ସେ ବହିଁଙ୍କର ବିସ୍ମୟପୂର୍ଣ୍ଣ ଦୃଷ୍ଟିରୁ ଆପାତତଃ ରକ୍ଷାପାଇବା ପାଇଁ ସିନ୍ଧୁ କହିଲା, "ମୋର କିଛି ଅସୁବିଧା ହେବନି, ମତେ ଘଣ୍ଟାଏ...ଗୋଟାଏ ଅଭ୍ୟାସ ରହିଯାଇଛି..."

·

ନୂଆଗାଁ, । ଗାଁଟି ବେଶ୍ ଭଲଲାଗିଥିଲା ସିନ୍ଧୁ ତାର ଆଖିକୁ । ଜୀବନରେ କେବେ ସେ ପଲ୍ଲୀଗ୍ରାମ ଦେଖିନଥିଲା ଆଜିପର୍ଯ୍ୟନ୍ତ, ତେଣୁ ସେଥି ଗ୍ରାମ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ ନୂଆରୂପ ଧରି ଠିଆହୋଇଥିଲା ତା ଆଗରେ । ପ୍ରକୃତରେ ସେ ବିଭୋର ହୋଇଗଲା । ସୁକୁମାରବାବୁଙ୍କ ବଡ଼ଟ ଫୋର୍ଡ଼ ଗାଡ଼ିଟି ସେମାନଙ୍କୁ ଷ୍ଟେସନ୍‌ରୁ ନେବାପାଇଁ ଆସିଥିଲା । ସୁକୁମାରବାବୁଙ୍କ ପରିବାର ସହିତ ସିନ୍ଧୁ ବସିଲା ସେଥିରେ । 'ଜୀବନରେ ଏ ଯେଉଁ ନୂତନ ପର୍ଯ୍ୟାୟ ସୃଷ୍ଟି ହେଲା, ତାର ଶେଷ କେବେ କିପରି ହେବ କିଏ ଜାଣେ, ଭାବୁଥିଲା ସେ ।

× × × ନିଜ ସ୍କୁଲଅଡ଼ର ପରିସ୍ଥିତିକୁ ଦେଖି ପ୍ରଥମେ କେତେ ଦିନ ସେ ବେଶ ଖୁସି ହୋଇଥିଲା । ଅଭିଯୋଗ କରିବାର କିଛି ନାହିଁ । ସ୍କୁଲ୍‌ର ପରିସର ଅତି ବଡ଼ଟ । ଖୁଲଘର ହେଲେ ବି ବେଶ୍ ସୁଦୃଢ଼ ଓ ସୁରକ୍ଷିତ କୋଠାଘରଗୁଡ଼ିକ । ବୃହତ୍ ପ୍ରାଙ୍ଗଣର ଚତୁର୍ଦ୍ଦିଗରେ ଚତୁଷ୍କୋଣ ଭାବରେ ନିର୍ମିତ ସ୍କୁଲ୍ ଟିହିଁଟି । ପ୍ରାଙ୍ଗଣଟି ଅତିସୁନ୍ଦର, ବିଭିନ୍ନ ପ୍ରକାର ଛୋଟ ଛୋଟ ଫୁଲଗଛରେ ଭରିରହିଥିଲା ସୁସଜ୍ଜିତ ଓ ସୁରୁଚିପୂର୍ଣ୍ଣ ଭାବରେ । ସ୍କୁଲ ଘରର ଗୋଟାଏ ପାଖକୁ ଖେଳପଡ଼ିଆ ଓ ଅନ୍ୟପାଖକୁ ଟିକିଏ ଗୁଡ଼ି

ଶ୍ରେଷ୍ଠ ଘରଟିଏ । ଏ ଘରଟିର କୋଠାସ୍ତୁତ । ତାଙ୍କୁ ମିଶାଇ ଛଅଜଣ ଶିକ୍ଷୟିତ୍ରୀ । ଜଣେ ପରିଚାରିକା, ଜଣେ ପାଚକାବ୍ରାହ୍ମଣୀ ସେହି ଘରର ଅଧିବାସିନୀ । ଏ ଜୀବନଯାପନ ପ୍ରଣାଳୀରେ କିନ୍ତୁ ପୂର୍ବର ଅନେକ ଧାରା ବଦଳାଇବାକୁ ପଡ଼ିଲା ବାଧ୍ୟହୋଇ । ଏପର୍ଯ୍ୟନ୍ତ ସେ ସ୍ୱପାକରେ ଚଳିଆସୁଥିଲା, ବର୍ତ୍ତମାନ ପାଚିକା ଉପରେ ନିର୍ଭର କରିବାକୁ ପଡ଼ିଲା । ଅବଶ୍ୟ ଅତି ଅଳ୍ପଦିନରେ ପ୍ରଧାନଶିକ୍ଷୟିତ୍ରୀ ହିସାବରେ ତାର ଯଥେଷ୍ଟ ସମ୍ମାନ ବଢ଼ିଯାଇ ଥିଲା ସମସ୍ତଙ୍କ ପାଖରେ । ସମସ୍ତଙ୍କଠାରୁ ବୟଃକନିଷ୍ଠା ଥିଲା ସେ, ଅନ୍ୟ ଚିନିଜଣଙ୍କ ଭିତରୁ ଦୁଇଜଣ ପ୍ରୌଢ଼ା । ସୁସ୍ମିତା ବୋଲି ଯେଉଁ ଝିଅଟି ଥିଲା ପ୍ରଥମ ଦେଖାରୁ ତାକୁ କମିତ ଭଲ ଲାଗିନଥିଲା । ସିଏ ତାର ମନେ ହୋଇଥିଲା ଅତି ପ୍ରଗଲ୍ଭା ବୋଲି । ସୁସ୍ମିତା ବି ତାଠାରୁ ଦିବର୍ଷ ଖଣ୍ଡେ ବଡ଼ ହେବ ବୟସରେ । କଥାରେ ଅଛି, କାନ୍ଦରେ ପଡ଼ିଲେ ମର୍କଟ ବଜେଇ ଶିଖେ । ଶ୍ରେଷ୍ଠ ପକ୍ଷୀଛୁଆଗୁଡ଼ିକ ଯେତେଦିନ ବସାଭିତରେ ଥାଆନ୍ତି, ଭାବୁଥାନ୍ତି କେବେ ଉଡ଼ିପାରିବେନି; କିନ୍ତୁ ବାହାରର ଆବର୍ତ୍ତନରେ ପଡ଼ିଲେ ଛଣି ଡେଣା ଦୁଇଟି ମେଲିଯାଏ ଆପେ ଆପେ ଆତ୍ମରକ୍ଷା ପାଇଁ—ଏ ହେଲା ଦୁନିଆର ନିୟମ ।

ଆତ୍ମନିର୍ଭରଶୀଳ ହେଲାପରେ ସିଏ ତାର ସାଧାରଣଜ୍ଞାନର ଯଥେଷ୍ଟ ଉନ୍ନତି ହୋଇଛି; ଗାମ୍ଭୀରତା ଯେ କେତେକାଂଶରେ ମଣିଷର ରକ୍ଷାକବଚ ସ୍ୱରୂପ, ତା ସେ ଜାଣିଛି । ସେଥିପାଇଁ ମନେମନେ ଯେତେ ଭୀତସନ୍ତ୍ରସ୍ତ ଅନୁଭବ କଲେମଧ୍ୟ ବାହାରେ ସେ ତାହା ଆଦୌ ପ୍ରକାଶ ହେବାକୁ ଦେଇନାହିଁ, ବରଂପର ବୁଝିନେଇଛି ତାର ଦାୟିତ୍ୱ । ନିହାତି ଦରକାର ନହେଲେ ଅଧିକ ପଦଟିଏ କଥା କହିନ । ସେଥିପାଇଁ ଏହି ସ୍ୱଳ୍ପଭାଷିଣୀ ତରୁଣୀଟିକୁ ମୂଳରୁ ଖାତିର କରିବାକୁ ନ ଚାହିଁଲେ ବି ସମସ୍ତେ ଖାତିର କରନ୍ତି । ସେହି ଗାମ୍ଭୀରତା ପାଇଁ ଦିନଟେ କେହି ବ୍ୟକ୍ତିଗତ ପ୍ରଶ୍ନ ପଚାରିବାକୁ ସାହସ କରିନାହାନ୍ତି; କିନ୍ତୁ ପରୋକ୍ଷରେ ନିୟମିତ ଭାବରେ କଳ୍ପନାଜଳ୍ପନା ଚାଲେ । ଏ ସଂସାରରେ ନାରୀ ଯେତକିମାତ୍ରାରେ ଛିଦ୍ର-କରେ ନାଗର, ପୁରୁଷ ବୋଧହୁଏ ସେହି ଛିଦ୍ରର ଶହେଭାଗରୁ ଭାଗେ କରୁଥିବ ।

ଅପୂର୍ବ ସୁନ୍ଦର ଓ ଆକର୍ଷଣୀୟ ସ୍ୱଭାବର ଝିଅଟିକୁ ଦେଖିଲାକ୍ଷଣି ସମସ୍ତେ ଯେ ଈର୍ଷା କରିଥିଲେ ତା କହିବା ବାହୁଲ୍ୟ । ସେ ଯେତେବେଳେ ବେଶି ମିଳାମିଶା କଲାନାହିଁ କିମ୍ବା ହସଫୁର୍ତ୍ତିରେ ଯୋଗ ଦେଲାନାହିଁ, ଅଧିକ ଅସନ୍ତୁଷ୍ଟ ହୋଇପଡ଼ିଲେ ସମସ୍ତେ । ସେ ଅସନ୍ତୋଷର ମାତ୍ରା ଆହୁରି ବଢ଼ିଗଲା ସିଏ ତାର ନିଷ୍ଠା ଦେଖି । ସମସ୍ତଙ୍କ ହୃଦୟ ସମସ୍ତରେ ସେ ମହାନ୍ ବୋଲି ସ୍ୱୀକାର କରୁଥିଲେ ମଧ୍ୟ ମୁହଁରେ ତା ବିଷୟରେ ନାନାରକମର କୁତ୍ସାରଟନା କରିବାଟା ସେମାନଙ୍କ ନିକଟରେ ଗୋଟାଏ ଆମୋଦ ପ୍ରମୋଦର ବିଷୟ ଥିଲା । କେବେ କ୍ୱଚିତ୍ ଯେ ସିଏ ତାର କାନକୁ ଏ କଥା ପଦେଅଧେ ନ ଯାଇଛି ତା ନୁହେଁ; କିନ୍ତୁ ଏ ସବୁକୁ ଦୃକ୍‌ପାତ ନ କରିବା ହିଁ ବୁଦ୍ଧିମାନର କାର୍ଯ୍ୟ ହେବ ବୋଲି ଭାବି ସେ ଚୁପ୍‌ରହେ ।

ତାର ଗୁଣୀମାନେ ତାକୁ ଶ୍ରଦ୍ଧା-ସମ୍ମାନ ଅଜସ୍ର ଧାରରେ ଢାଳିଦେବାକୁ ଆଦୌ କୁଣ୍ଠିତ ହୋଇନଥିଲେ । ତାର ସଂଯତ, ମଧୁର ବ୍ୟବହାର ସେମାନଙ୍କୁ ମନ୍ତ୍ରମୁଗ୍ଧ କରିପକାଇଥିଲା । ମୋଟଉପରେ ଅଳ୍ପ ଦିନ ଭିତରେ ସେ ଝଣ୍ଡ୍ରେବରେ ସେ ପ୍ରଖ୍ୟାତ ହୋଇଉଠିଲା ।

ଜୀବନଯାପନର ଏ ବି ଚୋଟାଏ ପ୍ରଣାଳୀ—ନିଜକୁ, ନିଜର ଅତୀତକୁ ଭୁଲିହୁଏ ଅନ୍ତତଃ ଦିନର ଅଧିକାଂଶ ସମୟ; କିନ୍ତୁ ରାତିରେ ଯେତେବେଳେ ସେ ନିଜର କ୍ଳାନ୍ତଦେହକୁ ଲୋଟାଇଦିଏ ତାର ସ୍ଥାନ ଶେଯଟି ଉପରେ, ସାଙ୍ଗେ ସାଙ୍ଗେ ନିଦ ଆସିପାରେନା । ଏହି ନିଦ ନ ଆସିବା କଥାଟାକୁ ହିଁ ସିଏ ତାର ଭୟ ସବୁଠୁ ବେଶି । ଦିନ ଭିତରେ ପ୍ରୟୋଜନଠାରୁ ଅତିରିକ୍ତ ପରିଶ୍ରମ ସେ କରେ ଏଥିପାଇଁ । ଲୋକେ କହନ୍ତି ଯେତେ ବେଶି କ୍ଳାନ୍ତ ହେବ, ସେତେ ଚଞ୍ଚଳ ନିଦ ଆସିଯିବ—କିନ୍ତୁ କାହିଁ ? ସିଏ ତାର ଅଦୃଷ୍ଟରେ ସେ ନିୟମର ବ୍ୟତିକ୍ରମ ଘଟିଛି । ଏହି ନିଦପାଇଁ ଘଣ୍ଟା ଘଣ୍ଟା ଧରି ତାକୁ ସାଧନା କରିବାକୁ ପଡ଼େ ରାତିରେ । ତାର ସେ ନିଦ୍ରାହୀନ ଅବସ୍ଥାର ସୁଯୋଗ ନେଇ ଭିଡ଼ ବାନ୍ଧି ଆସି ଠିଆ ହୁଅନ୍ତି ତାର ଅତୀତର ଘଟଣାସବୁ । ସମସ୍ତଙ୍କ ମୁହଁ ଗୋଟି ଗୋଟି ହୋଇ ମନେପଡ଼େ—ବୁଢ଼ୀମା ଓ ମାଙ୍କ ଛବି ଯେପରି ଝାପସା ହୋଇଆସିଲାଣି, ମହେଶର ମଧ୍ୟ । ସତୀ, ବାପା ଆଉ·· ଆଉ ତାସଙ୍ଗେ ମନେପଡ଼େ ଗୋଟିଏ ସମ୍ପୂର୍ଣ୍ଣ ନୂତନ ପରିଚିତ ମୁହଁ—ସେ ମୁହଁ ସୁବ୍ରତର । ଅଳ୍ପ କେତେଦିନର କଥା; କିନ୍ତୁ ଯାହାକି ତା ଜୀବନରେ ଐତିହାସିକ ପରିବର୍ତ୍ତନ ଘଟାଇଛି । ସୁବ୍ରତକୁ ବାରମ୍ବାର ମନେପକାଏ ସିଏ । କେତେ ଅଳ୍ପ ଦିନର ସେ ସମ୍ବନ୍ଧ; କିନ୍ତୁ ତାହା ଯେପରି ତାର ଅସ୍ଥିମଜ୍ଜାଗତ ହୋଇ ରହିଯାଇଛି । ସୁବ୍ରତ.... ସୁବ୍ରତ··· ଆଖିଦୁଇଟି ବନ୍ଦ କଲାକ୍ଷଣି ସୁବ୍ରତ ଯେପରି ଆଖି ସାମନାରେ ଆସି ଠିଆହୁଏ—ତାର ସେ ହସହସ ମୁହଁ ଆଉ ସେହି ସ୍ୱଭାବସିଦ୍ଧ ବେପରୁଆ ଭାବ ଧରି । ନିଜର ଅଜାଣତରେ କଳ୍ପନାର ଜାଲ ବୁଣିଯାଏ ସିଏ ତାର ରାଜ୍ୟ ଭିତରେ ସୁବ୍ରତ ଓ ତା ନିଜକୁ ଅଧିଷ୍ଠିତ କରି । ବିଷମୟ ଅତୀତର ଚିହ୍ନ ସୁଦ୍ଧା ନାହିଁ—ଖାଲି ଅଛି ମଧୁମୟ ବର୍ତ୍ତମାନ ! ଖାଲି ଭାବିବାରେ ସ୍ୱପ୍ନ ଦେଖିବାରେ କମ୍ ଆନନ୍ଦ ମିଳେ ନା; କିନ୍ତୁ ସେ କଳ୍ପଲୋକ ତିଷ୍ଠି ରହିପାରେନି ବେଶି ସମୟ । ଆଉ ବାସ୍ତବକୁ ଆସିଲାକ୍ଷଣି ନିଜ ଅନ୍ତରରେ ଯେପରି ଶତ ବୃଶ୍ଚିକର ଦଂଶନ ଅନୁଭବ କରେ ସେ—ବିବେକ ନିର୍ଦ୍ଦୟ ଭାବରେ ଚାବୁକ ପ୍ରହାରରେ ଜର୍ଜ୍ଜରିତ କରିଦିଏ ତାକୁ । କଳ୍ପନାରେ ମଧ୍ୟ ସୁବ୍ରତକୁ ସ୍ଥାନ ଦେବା ମହା ଅପରାଧ । ତାର ଆଉ ସେ ଅଧିକାର ନାହିଁ । ଅଦୃଷ୍ଟର ନିୟମ ଅନୁସାରେ ସବୁବେଳେ ଅମୂଲ୍ୟ ସମ୍ପଦ ହାତମୁଠା ଭିତରେ ପାଇ ମଧ୍ୟ ସାଙ୍ଗେ ସାଙ୍ଗେ ବିସର୍ଜ୍ଜନ ଦେବାକୁ ପଡ଼ିଛି ତାକୁ । ବାସ୍ତବର ସେ କଠୋରତା, ସେ ନିଷ୍ଠୁରତା ଉପଲବ୍ଧି କରି ଯନ୍ତ୍ରଣାରେ ଅଧୀର

ହୋଇଉଠେ ସେ । ଝଡ଼ ଭିତରେ ହଜିଯାଇଥିବା ନୀଡ଼ହରା ପକ୍ଷୀଟିଏ ପରି ଅଧୀର ବ୍ୟାକୁଳ ହୋଇ ଅସହାୟର ସମ୍ବଳ କ୍ରନ୍ଦନକୁ ହିଁ ଅବଲମ୍ବନ କରେ ସେ । ନୀରବ କ୍ରନ୍ଦନ ଭିତରେ ଅସ୍ଫୁଟ ସ୍ୱରରେ ବାରମ୍ବାର କହିଉଠେ 'ମୋର ମନ ନିର୍ମଳ ହେଉ...ଚିତ୍ତ ପବିତ୍ର ହେଉ...''

କିନ୍ତୁ ଏପରି ବଞ୍ଚିବାରେ ଲାଭ କଣ ? ତାର ଶେଷ ଗତି ବା କଣ ହେବ ? ଏହିପରି ପଡ଼ି ଉଠି ଆଉ କେତେ ଦୂର ଅଗସର ହେବ ସେ ? ଓଃ...ଭଗବାନ୍ ! ଗୋଟିଏ ମାତ୍ର ନିଷ୍କୃତି ଅଛି ତାର ଏ ଜୀବନରେ—ସେ ହେଉଛି ମୃତ୍ୟୁ । ମୃତ୍ୟୁ ହିଁ ତାକୁ ସକଳ ଯନ୍ତ୍ରଣାରୁ ମୁକ୍ତ କରିପାରିବ, ସବୁ ସମସ୍ୟାର ସମାଧାନ କରିପାରିବ । ସେଇ ମୃତ୍ୟୁ, ତାର ପରମ ଈପ୍ସିତ, ଆଉ କେତେ ଦୂର...କେତେ ଦୂରରେ ? କେତେ ଦିନ ଆଉ ତାକୁ ଏହିପରି ଛଟପଟ ହୋଇ ବଞ୍ଚିବାକୁ ପଡ଼ିବ...କରିବାକୁ ପଡ଼ିବ ଦୀର୍ଘ ପ୍ରତୀକ୍ଷା ?

ଆଜିକାଲି ସେ ତାର ନିୟମିତ ଉପବାସଗୁଡ଼ିକ ପାଳେ, କିନ୍ତୁ ସେ ପରିଷ୍କାର ଅନୁଭବ କରେ କିପରି ତାର ବିବେକକୁ ସେ ପ୍ରତାରଣା କରୁଛି । ଏସବୁ ନିୟମ ନିଷ୍ଠା ପାଳିବାରେ ଯେ ଆଉ କାରଣ କିଛି ନାହିଁ, ସାର୍ଥକତା ନାହିଁ, ଏ କଥା କଣ ସେ ନିଜେ ଜାଣେନି ? ବେଶ୍ ଭଲରୂପେ ସେ ଜାଣିଛି; କିନ୍ତୁ ଛାଡ଼ିଦେଇନି । ସ୍ୱାମୀ ଦ୍ୱାରା ସେ ଧର୍ମାର୍ଜନର ସ୍ପୃହା ଆଉ ରଖିନି, ରଖିଛି ନିଜ ଉପରେ ପ୍ରତିଶୋଧ ନେବାର ମନୋବୃତ୍ତି । ଯାଉ ଯାଉ....ଏ ଦେହଟା ଚଞ୍ଚଳ ନିଃଶେଷ ହୋଇଯାଉ କିମିତି....ଅବହେଳା ଆଉ ଅଯତ୍ନ ଭିତରେ । ଏ ଦୁନିଆରେ ଜନ୍ମହୋଇ ଯେ କୌଣସି ସାର୍ଥକତାର ଆଶା ରଖେନି, ନିଜର ଅସ୍ତିତ୍ୱକୁ ବଞ୍ଚାଇ ରଖିବା ତାର କଣ ଖାଲି ମୂର୍ଖାମି ନୁହେଁ ?

ସକାଳର ସୂର୍ଯ୍ୟ ପୁଣି ଅସ୍ତହୁଏ ସନ୍ଧ୍ୟାରେ । ସନ୍ଧ୍ୟାରେ ଅସ୍ତ ଲଭିଥିବା ସେଇ ସୂର୍ଯ୍ୟ ପୁଣି ଉଦୟ ହୁଏ ସକାଳେ । କେତେ ଜୀବନର ଅଙ୍କୁର ମାଟିତଳୁ ମୁଣ୍ଡ ଟେକୁଛି ଆଉ କେତେ ବିରାଟ ମହୀରୁହ ଧୂଳିଶଯ୍ୟା ଅବଲମ୍ବନ କରିଛି, ତାର ହିସାବ ବୋଧହୁଏ ସେଇ ସର୍ବନିୟନ୍ତା ରଖୁଥିବେ, ସିଏ କି ଜାଣିଛନ୍ତି । ଏ ଭଙ୍ଗାଗଢ଼ା ମାୟାପୁରୀ ଦୁନିଆର ସୃଷ୍ଟିର ତାତ୍ପର୍ଯ୍ୟ । କାହିଁକି ଏ ହସ, କାହିଁକି ଏ କାନ୍ଦ, ଦି' ଦିନପାଇଁ କାହିଁକି ବା ଏ ମହୋତ୍ସବ ? ତାର କାରଣ ଅନୁସନ୍ଧାନ କରି ଯୁଗ ଯୁଗ ହେଲା ମଣିଷକୁ ଖାଲି ଅଣ୍ଡାଳିବାକୁ ପଡ଼ୁଛି ଅନ୍ଧପରି । କୌଣସି କୂଳ କିନାରା ପାଇନି ସେ କେବେ, ଆଉ ପାଇବନି ମଧ୍ୟ । ନିୟତିର ଗୋଟିଏ ତୁଚ୍ଛ ଶିକାର ଛଡ଼ା ତାର ଆଉ ଅସ୍ତିତ୍ୱ କିଛି ନାହିଁ ।

ଦାର୍ଶନିକ ରଞ୍ଜୁବାବୁ ଉଦାସ ମନରେ କେତେ କଣ ଭାବନ୍ତି । ଚାରିମାସ ଅତୀତ ହୋଇଗଲାଣି । କୌଣସି ଖବର ମିଳୁନି ସିନ୍ଧୁ ତାର । ସିନ୍ଧୁ ଭଲ ଝିଅ ଯେ ଏକାକୀ ଘରୁ

ବିହାରିବ, ଏ କଥା ଜର୍ଜିଆନା ବି ବିଶ୍ୱାସ କରିପାରିନଥିଲେ ପ୍ରଥମେ । ତାପରେ ରାଜୀବବାବୁଙ୍କୁ ଅବଶ୍ୟ ଅନେକ ଉପଦେଶ ଦେଇଥିଲେ ଯେ ପୁରୁଣା ମନୋଭାବ ଗୁଡ଼ି ଯୁଗସଙ୍ଗେ ତାଳପକାଇ ଚାଲିବା ଉଚିତ ଥିଲା ତାଙ୍କର । ସେ ଯଦି ସମ୍ମତହୋଇ ସୁବ୍ରତ ସଙ୍ଗେ କନ୍ୟାର ବିବାହ ସମ୍ପନ୍ନ କରିଥାନ୍ତେ, ତାହେଲେ ଏପରି ଶୋଚନ ଦୁର୍ଦ୍ଦଶାରେ ତାଙ୍କୁ କି ସିନ୍ଧୁ,ତାଙ୍କୁ ପଡ଼ିବାକୁ ହୋଇନଥାନ୍ତା । ସେଇ ଝିଅ ଏବେ ଏକୁଟିଆ ସଂସାରର ଏ ଅତଳ ସମୁଦ୍ର ଭିତରେ ପଡ଼ି କିପରି ଯେ ବଞ୍ଚିରହିଥିବ । ଅବା ବଞ୍ଚିରହିଥିବ କି ନାହିଁ କିଏ ଜାଣେ ? କିଛି ନ ଜାଣି ନ ଶୁଣି, ମୂର୍ଖ ଭଳି ନିଆଁ ନେଇ ଖେଳିବାର ସାହସ ଯେ କରିଛି, ତାର ହାତ ପୋଡ଼ିବାକୁ କେତେ ସମୟ ?

ରାଜୀବବାବୁ ସବୁ ଶୁଣି କିଛି କହି ନଥିଲେ ଅବଶ୍ୟ; କିନ୍ତୁ ଆଉ ଶୁଣିବାର ଧୈର୍ଯ୍ୟ ନଥିଲା ତାଙ୍କର । ସିନ୍ଧୁ ତାର ବିଷୟ ଯଥାସମ୍ଭବ ଗୋପନ ରଖିବାକୁ ଅନୁରୋଧକରି ସେ ସାଙ୍ଗେ ସାଙ୍ଗେ ଉଠିଥିଲେ । ଟେଲିଗ୍ରାମ ଖଣ୍ଡେ ସଚୀ ପାଖକୁ ପଠାଇଦେଇ ଆସିବା ବାଟରେ କିଛିଦିନ ପାଇଁ କଟକରୁ ସାଙ୍ଗରେ ନେଇ ଆସିଥିଲେ ତାଙ୍କୁ । ଜଣେ କାହାକୁ ଅବଲମ୍ବନ ନକଲେ ସେ ସିମିତି ଆଉ ପାଦେ ଚାଲିପାରିବେନି । ସଚୀଟା ଆଖି ଆଗରେ ପିଲା ହେଲେ ମଧ୍ୟ, ତାଙ୍କୁ ଏସବୁ ଜଣାଇବା ଉଚିତ ମନେହେଉନଥିଲେ ବି ବାଧ୍ୟହୋଇ କିଛି କିଛି କହିବାକୁ ପଡ଼ିଲା । ଦୁଃଖଟାକୁ ଏକୁଟିଆ ସେ ଆଉ ଧରିରଖିପାରୁନଥିଲେ ନିଜ ହୃଦୟରେ, ତେଣୁ ସଚୀକୁ କହିବାପରେ ମନଟା ସିମିତି ଅନେକ ହାଲୁକା ଲାଗିଲା । ସେ ଶୁଣି ସ୍ତମ୍ଭିତ ହୋଇଯାଇଥିଲା, ପଦେ କଥା ବି କହିନଥିଲା । କିନ୍ତୁ ତାର ନିର୍ବାକ ମୁହଁଟି ଆଡ଼କୁ ଚାହିଁ ରାଜୀବବାବୁଙ୍କର ଯେପରି ମନେହେଲା ସଚୀର ମୁହଁରେ ମଧ୍ୟ ସେଇ ଏକା ସଙ୍କେତ ଫୁଟି-ଉଠିଛି । ଜର୍ଜିଆନାଙ୍କ ପରି ସେ ମଧ୍ୟ ଯେପରି ଏ ଘଟଣା ପାଇଁ ଦାୟୀ ମଣୁଛି ତାଙ୍କୁ ହିଁ । ନିର୍ଦ୍ଦିଷ୍ଟ ସମୟରେ ଯଥାରୀତି ସୁବ୍ରତଠାରୁ ବି ଚିଠିଖଣ୍ଡେ ପାଇଥିଲେ ସେ । ସନ୍ଧାନ ତାର ବ୍ୟର୍ଥ ହୋଇଛି....କିନ୍ତୁ ତା ସଙ୍ଗେ ସୁବ୍ରତ ବି ଅଭିଯୋଗ ଜଣାଇବାକୁ ଦ୍ୱିଧା କରିନି ଯେ ଏ ଘଟଣା ପାଇଁ ତାଙ୍କର କୁ-ସଂସ୍କାର ହିଁ ଦାୟୀ । ତାଙ୍କରି ବାଧାଫଳରେ ଆଜି ସୃଷ୍ଟି ହୋଇଛି ଏ ବିଷମୟ ପରିଣତି...ଯାହାକି ଦୁଇଟି ଜୀବନକୁ ଅକାରଣରେ ବ୍ୟର୍ଥକରିଦେଇଛି । ନିଜର ଔଦ୍ଧତ୍ୟ ପ୍ରକାଶ କରିଛି ସୁବ୍ରତ···ସେ କେବେ ସିନ୍ଧୁ,ତାକୁ ଭୁଲି ପାରିବନି ....ସିନ୍ଧୁ,ତା ଯଦି ବଞ୍ଚିରହିଥାଏ, ତାହେଲେ ପୃଥିବୀର ଯେ କୌଣସି କୋଣରେ ଯେ ଥାଉନା କାହିଁକି, ତାକୁ ଖୋଜି ବାହାର କରିବାର ଆଶା ବର୍ତ୍ତମାନ ବି ସୁବ୍ରତର ମନଭିତରେ ରହିଛି । ଆହୁରି ଏମିତିଆ କେତେ କଥା ଲେଖିଛି ସେ । ଯେତେହେଲେ ତରୁଣ ରକ୍ତ ତାର, ଗରମ ରହିବା ସ୍ୱାଭାବିକ । କେତେଟା ଦିନ ପରେ ସେ ଭୁଲିବ, ନିଶ୍ଚୟ ଭୁଲିବ । କୁଳତ୍ୟାଗିନୀ କୌଣସି ନାରୀକୁ କିଏ କେବେ ସମ୍ମାନ ଦେଇଛି । ଆଜି ଭାବାବେଗରେ ଯାହା ସେ କହୁ

ଯାଇଛି, ଦି'ଦିନ ପରେ ନିଜେହିଁ ଉପଲବ୍ଧି କରିପାରିବ, ଏହା ତାର କେତେ ଦୂର ମୂର୍ଖାମି । ଆଜିକାଲି ଅବସର ପାଇଲାକ୍ଷଣି ବାଧହୋଇ ସୁକୁମାରବାବୁଙ୍କୁ ମନେମନେ ବିଶ୍ଳେଷଣ କରିବାକୁ ହୁଏ ପୁରାତନ ଆଉ ନୂତନ ସଂସ୍କାରକୁ । ନିଜକୁ ନିଜେ ପଚାରନ୍ତି ପ୍ରକୃତରେ ସେ କିଏ ଦୋଷୀ ? ପାପ କେଉଁଟା ଆଉ ପୁଣ୍ୟ କେଉଁଟା ?

ସକାଳୁ ଆସି ସୁକୁମାରବାବୁ ବାରମ୍ବାର କହିଯାଇଛନ୍ତି, ଆଜି ଯେମିତି ହେଲେ ଯିବାକୁ ହେବ, ମଞ୍ଜୁଶ୍ରୀର ଜନ୍ମଦିନ । ଯା' ଭିତରେ ଅନେକ ଥର ତାଙ୍କର ସାଗ୍ରହ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ଏଥର ଆଉ ନ ଯିବାର ଉପାୟ ନାହିଁ । ମନାକଲେ ବଡ଼ ଅଶୋଭନୀୟ ଦିଶିବ ଭାବି ବାଧହୋଇ ହଁ ଭରିଥିଲା ସ୍ମିତା ।

ଅନ୍ୟ ଦୁଇଜଣ ଶିକ୍ଷୟିତ୍ରୀଙ୍କ ସହିତ ସ୍ମିତା ଯେ ଯେତେବେଳେ ଯାଇ ପହଞ୍ଚିଲା, ସେତେବେଳକୁ ଆଲୁଅ ଜଳିଉଠିଲାଣି ଘରଟିର ଚାରିଆଡ଼େ । ବିରାଟ ଦୁଇତାଲା ଘର । ଥରେ ବାହାରୁ ଅବଶ୍ୟ ସେ ଦେଖିଥିଲା, ଯେଉଁଦିନ ଆସିଥିଲା ପ୍ରଥମକରି । କିନ୍ତୁ ସେମାନଙ୍କ ଅନୁରୋଧ ରକ୍ଷାକରି ସେ ଓହ୍ଲାଇନି ଆଦୌ । ଚାରିଆଡ଼େ ବହୁତ ଜାଗା, ଆଉ ଘେରି ରହିଛି ମଧ୍ୟମ ଉଚ୍ଚତାର ପାଚେରୀ । ପଛପଟକୁ ଫଳଗଛ କେତୋଟି ଲଗି ଗୋଟିଏ ଛୋଟିଆ ଜଙ୍ଗଲ ସୃଷ୍ଟି ହୋଇଛି । ସାମନାରେ ନାନାବର୍ଣ୍ଣର ବିଦେଶୀ ଫୁଲ ଓ ସୌଖୀନ୍ ଗଛର ସମାବେଶ । ଏ ସବୁ ଆଧୁନିକତାର ପରିଚୟ ଦିଏ; କିନ୍ତୁ ଘରଟିର ପ୍ରଶସ୍ତ କାନ୍ଥଗୁଡ଼ିକ, ମୋଟା ମୋଟା ଲୁହାପିଟା କବାଟଗୁଡ଼ିକ ଏବେ ମଧ୍ୟ ପ୍ରାଚୀନତାକୁ ବାନ୍ଧିରଖିଛି ଯିମିତି । ଘରଭିତରେ ପଶିଲେ, ପୁରାତନ ସମୃଦ୍ଧିଭରା ଜମିଦାର ଘରର ଗୋଟାଏ ପରିବେଶ ସୃଷ୍ଟି ହୁଏ ମନ ଭିତରେ । ଗାଁ ଠାରୁ ବେଶ୍ କିଛିଦୂରରେ ଏହି ଜମିଦାର-ପ୍ରାସାଦ ଅବସ୍ଥିତ । ତେଣିକି ଆଉ ଲୋକବସତି ନାହିଁ, ରାସ୍ତାଟା ଖାଲି ଚାଲିଯାଇଛି ଚନ୍ଦନପୁର ଆଡ଼େ । ଧାନକଟା ସମୟରେ କେବଳ ଲୋକଙ୍କ ଚଳ·ଚଞ୍ଚଳ ଦେଖାଯାଏ, ତା ନହେଲେ ଅଧିକାଂଶ ସମୟ ଏ ପଟଟା ନିର୍ଜନ । ଚନ୍ଦନପୁର ଆଉ ନୂଆଗାଁ ଭିତର ଏହି ଜାଗାଟିରେ କୁଆଡ଼େ ଗୋଟିଏ ଛୋଟିଆ ଧରଣର ଜଙ୍ଗଲ ଅଛି । କିନ୍ତୁ ଜଙ୍ଗଲଟି ମଧ୍ୟ ବେଶ୍ ଯୋଡାଏ ବାଟ ଦୂର ଏଠାରୁ ।

ଦୁଆର ତଳେ ପାଦ ରଖୁ ନ ରଖୁଣୁ, ଭାସିଆସିଲା ସୁକୁମାରବାବୁଙ୍କ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା, "ଆପଣ କଣ ଏତେ ଡେରି କରିଦେଲେ ସ୍ମିତାଦେବୀ ? ଆମେସବୁ ଅନେକ-ବେଳୁ ଆପଣଙ୍କୁ ଅପେକ୍ଷାକରି ବସିଛୁ · ଆସନ୍ତୁ....ଏଇ ଯେ ଅନ୍ୟମାନେ ବି ଆସିଛନ୍ତି · ମୁଁ ପ୍ରକୃତରେ ଆନନ୍ଦିତ ।"

ସୁକୁମାରବାବୁଙ୍କ ନିର୍ଦ୍ଦେଶ କ୍ରମେ ତାଙ୍କ ସଙ୍ଗେ ଯାଇ ସ୍ମିତା ଠିଆହେଲା, ଦୋତାଲାସ୍ଥିତ ଗୋଟାଏ ବଡ଼ ସୁସଜ୍ଜିତ ହଲ୍ ଘରେ । ଗୋଟିଏ ବଡ଼ ଟେବୁଲ୍ ରେ

ଶୃଙ୍ଖପଟେ ଘେର ବସିଥିଲେ ଦେନୋଟି ତରୁଣ ଓ ଜଣେ ମହିଳା । ସମସ୍ତେ ଉଠି ଠିଆ-ହୋଇଛନ୍ତି ଆଉ ସୁକୁମାରବାବୁ ପରିଚୟ ଦେଉଛନ୍ତି, ହେଇ ଅମିତାଭ, ଇଏ ହେଉଛନ୍ତି ଆମ ସ୍ୱର୍ଣ୍ଣଲତା ଶିକ୍ଷାଶ୍ରମର ହେଡ଼ମିଷ୍ଟ୍ରେସ, ଶ୍ରୀମତୀ ସ୍ମିତା ମିତ୍ର…ଆଉ ମିସ୍ ମିଶ୍ର, ଏମାନେ ହେଉଛନ୍ତି ମୋର ମଖ୍ୟାତ ବନ୍ଧୁମାନେ । ଇଏ ଅମିତାଭ ରାୟ୍, ଆଉ ଇଏ ତାଙ୍କ ସ୍ତ୍ରୀ ମିସେସ୍ ରତ୍ନା ରାୟ୍ । ଆଉ ଇଏ…ତାଙ୍କର ଚମତ୍କାର Personality (ବ୍ୟକ୍ତିତ୍ୱ)ରୁ ଆପଣ ସହଜରେ ଅନୁମାନ କରିଥିବେ, ଜଣେ ଖ୍ୟାତନାମା ଚିତ୍ରତାରକା ରଞ୍ଜନକୁମାର ଦାସ….ଆଉ ଇଏ ହେଉଛନ୍ତି ଜଣେ ସାହିତ୍ୟିକ—ମୀନକେତନ ମହାନ୍ତି । କଳରବ ଉଠୁଛି ଟେବୁଲ୍‌ର ଚାରିଧାରରୁ—"ନମସ୍କାର…ନମସ୍କାର…Glad to meet you Miss Misra !"

ଗୋଟିଏ କ୍ଷଣ ପାଇଁ ଯେପରି ସ୍ମିତାର ଆଖି ଆଗରେ ଓହ୍ଲାଇଯାଇଥିଲା କୃଷ୍ଣ ଯବନିକା । ପ୍ରଖର ଆଲୁଅରୁ ହଠାତ୍ ଅନ୍ଧକାର ଘରଭିତରକୁ ପଶିଗଲେ ପ୍ରଥମେ ଯେପରି ଦୃଷ୍ଟି ଧନ୍ଦହୋଇଯାଏ…ସେପରି ମୁହୂର୍ତ୍ତିକ ପାଇଁ ସେ ଯେପରି କିଛି ବୁଝିପାରିଲା ନାହିଁ କି କିଛି ଦେଖିପାରିଲା ନାହିଁ । ଏ କେଉଁ ଜଗତରେ ଆସି ସେ ପହଞ୍ଚି । ଏ ଭଳି ସ୍ଥିତି ସହିତ ସମ୍ପୂର୍ଣ୍ଣ ଅପରିଚିତ ସେ । ଯେତେବେଳେ ତା ହାତଟାକୁ ହଲାଇ ସୁମିତା କହିଲା ଅତି ଅସ୍ପଷ୍ଟ ସ୍ୱରରେ, "ଆପଣଙ୍କର କଣ ହୋଇଛି" ତାର ଚେତନା ଯେପରି ଫେରିଆସିଲା । ନୀରବରେ ଯନ୍ତ୍ରଚାଳିତ ପରି ଦୁଇହାତ ଟେକି ଯୋଡ଼ିଲା ସେ । ଆଧୁନିକ ସଭ୍ୟ ଜଗତ ଆଉ ସଭ୍ୟ ନିୟମାବଳୀ ତାର, ତାକୁ ମାନିବାକୁ ହିଁ ପଡ଼ିବ, ଯେତେବେଳେ ସେ ତାର ବାସିନ୍ଦା ହୋଇଛି ।

କିନ୍ତୁ ସ୍ତ୍ରୀ ମଝିରେ ଯାଇ ସେ ବସିବ କିପରି ? ଟିକିଏ ଇତସ୍ତତଃକରି ହଠାତ୍ ଉଦ୍ଧାରର ଗୋଟିଏ ପନ୍ଥା ପାଇ ସେ କହିଲା, "ସୁକୁମାରବାବୁ, ଯାହାପାଇଁ ଏ ଆୟୋଜନ, ତାର ତ କଣ ଦେଖାନାହିଁ….ମଞ୍ଜୁ କୁଆଡେ ଗଲା ? ଆଉ ତା ମା, ସେ ବି ଗଲେ କୁଆଡେ ?"

"ଆପଣ ବସନ୍ତୁ—ମୁଁ ତାକୁ ଡକେଇ ପଠାଉଛି…"

"ବରଂ ମତେ ନେଇଚାଲନ୍ତୁ ତା ପାଖକୁ ।" ଆଗ୍ରହରେ କହିଲା ସ୍ମିତା । ଓଃ, ଏ ପରିସ୍ଥିତିରୁ ଯେତେ ଦୂରରେ ରହିବ, ସତେ ଯେପରି ନିଃଶ୍ୱାସ ନେଇପାରିବ ସହଜରେ । କିନ୍ତୁ ତାର ଉଦ୍ଦେଶ୍ୟ ସଫଳହେଲାନି । ଖାଲି ଚୌକି ଗୋଟିଏ ଦେଖାଇଦେଇ ସୁକୁମାରବାବୁ କହିଲେ, "ନା, ନା ଆପଣ ବସନ୍ତୁ….ମୁଁ ଡକାଉଛି…" ଆଉ ଉପାୟ ନାହିଁ । ବାଧହୋଇ ବସିବାକୁପଡ଼ିଲା ତାକୁ । ଅନ୍ୟ ସମସ୍ତେ ବି ଯେ ଯାହାର ସୁବିଧା ଦେଖି ବସିଲେ ।

ଅଳ୍ପ ସମୟ ପରେ ନୂତନ ବସ୍ତ୍ରଭୂଷଣରେ ସୁସଜ୍ଜିତା ମଞ୍ଜୁ ଆସି ପହଞ୍ଚିଲା । ତାକୁ ପାଖକୁ ଟାଣିଆଣି ତା ପାଇଁ ନେଇଥିବା ଉପହାରର ପୁଡ଼ିଆଟିକୁ ତା'ହାତରେ ଧରାଇଦେଇ ସ୍ମିତା କହିଲା, "ବାଃ, ମଞ୍ଜୁର ଫ୍ରକ୍‌ଟି ବଢ଼ିଆ ହୋଇଛି ସତରେ…" ବାଳିକାର ମୁହଁଟି

ଲାଲ୍ ହୋଇଉଠିଲା ଲାଜରେ । ରତ୍ନା ରାୟ୍ କହିଲେ, "କ୍ଷମା କରିବେ ସ୍ମିତା ଦେବୀ, କିନ୍ତୁ ନ କହି ରହିପାରୁନି । ଆପଣଙ୍କ ସ୍କୁଲଶିକ୍ଷାର ଧାରାକୁ ବଦଳାଇବାକୁ ପଡ଼ିବ । ଏତେ ଝିଅଟେ ଝିଲି, ଏବଠାରୁ ଏତେ ଲାଜକୁଳା…ନମସ୍କାର ନାହିଁ, ଧନ୍ୟବାଦ କରିବା ଜାଣିନି । ଆଜିକାଲିର ଦୁନିଆରେ ପିଲାମାନେ ତାଙ୍କ ଶୈଶବରୁ ହିଁ ଫରଓ୍ୱାର୍ଡ଼୍ ହେବାକୁ ଶିଖିବା ଉଚିତ । ନହେଲେ ଭବିଷ୍ୟତରେ ଦେଶ ଆମର ଆଗେଇ ପାରିବନି । କାରଣ ଏମାନେ ତ ହେଲେ ଦେଶର ଭବିଷ୍ୟତ ନାଗରିକ ।"

ଝିଅଟିର ମଳିନ ମୁହଁ ଆଡ଼କୁ ଚାହିଁ ସ୍ମିତା କହିଲା, 'ଦେଖନ୍ତୁ ମିସେସ ରାୟ୍… ଚାଲିଚଳଣର ଫରଓ୍ୱାର୍ଡ଼୍‌ନେସ୍ ସହିତ ଦେଶର ପ୍ରଗତିର କିଛି ସମ୍ପର୍କ ଅଛି ବୋଲି ମୁଁ ମନେକରେନା । ଆପଣ ତ ଜାଣିଥିବେ, ଆମର ଦେଶରେ ଅତୀତରେ ଯେଉଁସବୁ ମହାପୁରୁଷ ବା ମହୀୟସୀ ନାରୀଙ୍ଗନାମାନେ ଜନ୍ମଲାଭ କରିଥିଲେ, ସେଇ ପୁରାତନ କୁସଂସ୍କାର ନୀତି ନିୟମ ଭିତରେ ହିଁ ସେମାନେ ମଣିଷ ହୋଇ ଗଢ଼ି ଉଠିଥିଲେ—କଣ କ୍ଷତି ହୋଇଯାଇଛି ଦେଶର । ମୋ ମତରେ ଲାଜଟା ତ ମଣିଷର ଗୋଟାଏ ଗୁଣ, ଯାହାକି ମଣିଷକୁ ବିନମ୍ର ହେବାକୁ ଶିଖାଏ ।" ଏତେଗୁଡ଼ାଏ କଥା ପ୍ରାୟ ଏକା ନିଃଶ୍ୱାସରେ ସେ କହିଗଲା । ମଞ୍ଜୁକୁ ଅଯଥା ଆଘାତ ଦେବା ଦେଖି ରାଗିଯାଇଥିଲା ସେ ମନେ ମନେ । କଥା ଶେଷ ହେବାପରେ ଅନ୍ୟମାନଙ୍କ ସଙ୍ଗେ ନିଜେ ବି ଆଶ୍ଚର୍ଯ୍ୟ ହୋଇଯାଇଥିଲା ନିଜର ବାକ୍‌ପଟୁତା ଦେଖି ।

ସପ୍ରଶଂସ ଦୃଷ୍ଟିରେ ତା ଆଡ଼କୁ ଚାହିଁ ରଞ୍ଜନ୍ କହିଉଠିଲା, "ବୁଝିଲ ସୁକୁମାର, ପ୍ରକୃତରେ ତମର choice କରିବା ଶକ୍ତିକୁ ମୁଁ ତାରିଫ୍ କରେ ।" ଅନ୍ୟମନସ୍କ ଥିବାରୁ ସ୍ମିତା କଥାଟାର ଅର୍ଥଟା ହୃଦୟଙ୍ଗମ କରିପାରିଲାନି, କିନ୍ତୁ ତାହାର ସହକର୍ମିଣୀମାନଙ୍କ ଭିତରେ ଗୋଟିଏ ଅର୍ଥପୂର୍ଣ୍ଣ ଦୃଷ୍ଟି ବିନିମୟ ଘଟିଲା । ସ୍ମିତା ସେତେବେଳକୁ ପଚାରୁଥିଲା, "ମଞ୍ଜୁ…ମା କାହାନ୍ତି…. ତାଙ୍କୁ ତ ଦେଖୁନି…"

ମଞ୍ଜୁ ଉତ୍ତର ଦେବା ପୂର୍ବରୁ ଉତ୍ତରଟା ଦେଇଥିଲେ ଅମିତାଭ, "ଆପଣ କଣ ଜାଣିନାହାନ୍ତି ମିସ୍ ମିଶ୍ର, ସେ ତ ପ୍ରାୟ ଅଧିକାଂଶ ସମୟ ରୁଗଣ… ଡାକ୍ତର ତାଙ୍କୁ ଶେଯ ଛାଡ଼ିବାକୁ ମନାକରିଛି…" ସ୍ମିତା ଆଶ୍ଚର୍ଯ୍ୟ ହେଲା । ମଞ୍ଜୁ ତ ନିୟମିତ ସ୍କୁଲକୁ ଯାଏ, ଦିନେ ବି କହିନି, ମା'ଙ୍କ ଦେହ ଖରାପ କଥା । ତାର ମନେପଡ଼ିଲା, ସେ ବି ଦିନେ ପଚାରି ନି । 'କଣ ହେଉଛି…ମୁଁ ତ କାହିଁ କିଛି ଶୁଣିନି…କଣ ହୋଇଛି ତାଙ୍କର ସୁକୁମାର ବାବୁ….'

"ଏବେ ନୂଆ ନୁହେଁ ତ—ଆଜୀବନ ରୋଗୀ ସେ । ଅତି ଧନୀ ପରିବାରର ଗୋଟିଏ ବୋଲି ଝିଅ ରୂପେ ଜନ୍ମି ମଧ୍ୟ ଶରୀର ଅଶାନ୍ତି ସେ ଭୋଗି ଆସୁଛନ୍ତି, ଆଉ ଭୋଗିବେ ବି ।" "ଏ ଅବାଧ୍ୟ ରୋଗ କଣ ଭଲହେବ କେବେ ? ପ୍ରକୃତରେ ସୁକୁମାର, ତମପାଇଁ ମୁଁ ବିଶେଷ ଦୁଃଖ ଅନୁଭବ କରେ…." ସୁକୁମାରଙ୍କ ବଦଳରେ ରତ୍ନା ଉତ୍ତର ଦେଲା ।

ଅପ୍ରିୟ କଥା ଶୁଣିବା ଆଶଙ୍କାରେ ଆଉ ମଧ ମନ୍ତ୍ରୀ ସେଠି ଉପସ୍ଥିତ ଜାଣି ସ୍ମିତା ଆଉ ପଶ୍ଚାତପଦ କରୁ। ବାଲଜାତି ପ୍ରତି ସହାନୁଭୂତିରେ ତାର ଅନ୍ତର ବ୍ୟଥିତ ହୋଇ-ଉଠିଲା... ଆଉ ବ୍ୟଥିତ ହୋଇଉଠିଲା ସେଇ ନାରୀଟି ପାଇଁ ମଧ। ଏ ଉତ୍ସବ-ମୁଖରିତ ବିରାଟ ଘରଟିର କେଉଁ କୋଣରେ ଥିବା କୋଠରୀ ଭିତରେ ଶୋଇରହି ହୁଏତ ଯନ୍ତ୍ରଣା ଭୋଗୁଥିବ ସେ ଏ ମୁହୂର୍ତ୍ତରେ। ମଣିଷର ଏ କ ଧରଣ ? ଏତେ ବିରାଟ ଆୟୋଜନ ନ କଲେ ବି ଚଳିଥାନ୍ତା ତ ! ସେଇ ଏକାଘର ଭିତରେ ଜଣେ ପଡ଼ିରହି କଷ୍ଟ ପାଉଥିଲା ବେଳେ ଅନ୍ୟ ଜଣେ କିପରି ମଉଜ ମଜଲିସ କରିପାରେ ! ...କେଜାଣି ସ୍ତ୍ରୀ ବି ହୋଇ-ପାରେ ଯେ, ଝିଅର ଜନ୍ମଦିନ ସମାରୋହରେ ପାଳିବାକୁ ଇଚ୍ଛା ଜଣାଇଥିବେ ସେ ନିଜେ। ବୋର୍ଡିଂର ଦାସୀ ଓ ସାଥୀମାନଙ୍କ କଥାବାର୍ତ୍ତାରୁ କିଛି ଶୁଣିଛି ସେ। ସୁକୁମାରବାବୁ କୁଆଡ଼େ ସ୍ତ୍ରୀ ଧନରେ ଧନୀ, ନ ହେଲେ ଥିଲାବାଲା ଘରର ପୁଅ ନ ଥିଲେ ସେ। ଏ ପରିବାରକୁ ଆସିଛନ୍ତି ଘରଜୋଇଁ ହୋଇ...ଚନ୍ଦ୍ରାଗଜ୍ୟର ଶୀଘ୍ର ଫେରିବାକୁ ହେଲା ତାକୁ। ଅମିତାଭ ପଶ୍ଚାରନ୍ତି ତାକୁଇ ଲକ୍ଷ୍ୟକରି, 'ଶୁଣିଲେ ନା ସ୍ମିତା ଦେବୀ, କାଲି ଆମର ଚୋଟାଏ ଶିକାର ପାର୍ଟି ଯିବ ବନଙ୍ଗା ଜଙ୍ଗଲକୁ···ଆପଣ ଯଦି ଯାଆନ୍ତେ ପ୍ରକୃତରେ ଖୁବ୍ ମଜା ହୁଅନ୍ତା।'

ଏତେବେଳକୁ ପରିସ୍ଥିତି ବହୁତ ବେଶ୍ ଅଭ୍ୟସ୍ତ ହୋଇଗଲାଣି ସ୍ମିତା। ତେଣୁ ଧୀର ସ୍ୱରରେ ଜବାବ ଦେବା ତା ପକ୍ଷରେ କଷ୍ଟକର ହେଲାନି। 'ଦେଖନ୍ତୁ...ମତେ ଏ ସବୁ ପାର୍ଟି, ଶିକାର, ପିକ୍ନିକ୍ ଭଲଲାଗେନି···ମୋର କେଉଁଠାକୁ ଯିବା ଅସମ୍ଭବ...'

"ନା ନା, ଆପଣଙ୍କୁ ଯିବାକୁ ହିଁ ପଡ଼ିବ ... ନହେଲେ ଆମେ ଶୁଣିବୁନି..." କହି-ଉଠିଲେ ମୀନକେତନ ଓ ରଞ୍ଜନ ଏକାସଙ୍ଗେ। ଆଉ ଲିପଷ୍ଟିକ୍ ବୋଲା ଓଠଟାକୁ ଏକ-ପ୍ରକାର କୁଞ୍ଚିତ କରି ରତ୍ନା କହିଲା, 'ଆପଣ ବଡ଼ ପୁରାତନପନ୍ଥୀ ଦେଖୁଛି...' ତା ଆଡ଼କୁ ଚାହିଁ ସ୍ମିତାର ଅନେକ କଥା କହିବାର ଇଚ୍ଛାହେଲା ଯେପରି। ଲାଲ୍ ରଙ୍ଗର ନାଇଲନ୍ ଶାଢ଼ୀ ପରିହିତା ସେଇ ନାରୀଟି ଆଡ଼କୁ ଅଧିକ ସମୟ ଚାହିଁବାକୁ ତା ନିଜକୁ ଯେପରି ସଙ୍କୋଚ ଲାଗୁଛି। ଏଇ ହେଉଛି ଆଧୁନିକତାର ପରିମାପ—ଗାଲରେ ରୁଜ୍, ଓଠରେ ଲିପଷ୍ଟିକ, ନଖରେ ନେଲପଲିସ୍। ବସ୍ତ୍ର ପିନ୍ଧିବାର ପ୍ରଣାଳୀ ଆଧୁନିକତାର ଚରମ ସୀମାକୁ ଉଠିଯାଇଛି। ନିଜର ଅଙ୍ଗ ସୌଷ୍ଠବକୁ ନଗ୍ନରୂପେ ଆତ୍ମପ୍ରକାଶ କରିବାକୁ କେଉଁଠାରୁ ଶିଖିଲା ଏ ଦେଶର ନାରୀ ? ଏ ଦେଶ ରାଣୀ ଲକ୍ଷ୍ମୀବାଈ ଅହଲ୍ୟାବାଈଙ୍କ ଦେଶ। ପ୍ରକୃତରେ ଦୁଃଖ ଅନୁଭବ କଲା ସେ। ପାଶ୍ଚାତ୍ୟ ସଭ୍ୟତା ସଂକ୍ରାମକ ବ୍ୟାଧି ଭଳି ପରିବ୍ୟାପ୍ତ ହୋଇଯାଉଛି ଦିନକୁଦିନ। ଚାଲିଚଳନରେ, ଆଚାର ବ୍ୟବହାରରେ ଏ ଦେଶର ମଣିଷ ସେଥିପ୍ରତି ଏତେ ଲାଳାୟିତ ହୋଇ ଉଠୁଛି କାହିଁକି ? ଗାନ୍ଧିଜୀଙ୍କର ସେଇ ଜୀବନବ୍ୟାପୀ ଆତ୍ମତ୍ୟାଗ ଶେଷକୁ ଏଇ ଦୀକ୍ଷା ଦେଇଗଲା ଦେଶକୁ ! ମୋଟା ଖଦଡ଼ ବଦଳରେ ଝୀନପାତଳ

ନାଇଲନ୍ ହେଲ ପରଧେୟ ।' 'ପ୍ରକୃତରେ ସ୍ମିତାଦେବୀ, ଆପଣଙ୍କର ଶହେ ବର୍ଷ ତଳେ ଜନ୍ମ ହେବା ଉଚିତ ଥିଲ...' ବହୁତ ସମୟ ପରେ କଥା କହୁଛନ୍ତି ସୁକୁମାରବାବୁ ।

"ଶହେ ବର୍ଷ ତଳେ ଜନ୍ମ ଯେ ହୋଇନଥିବ, ଏ କଥା କିଏ କହିପାରେ...ହୁଏତ ସେ ସମୟରେ ସଂସ୍କାରଟା ଏବେ ମଧ୍ୟ ବସାବାନ୍ଧି ରହିଯାଇଛି, ଏ ଜନ୍ମରେ ।" ଟିକିଏ ହସି ଉତ୍ତର ଦେଲି ସେ ।

"କଣ ସେଇ ଗତଥର ଭଳି ହଂସଶିକାର କରିବାକୁ ଯିବେ ତ...ତାହେଲେ ମୁଁ ବି ଯିବି ଆପଣଙ୍କ ସଙ୍ଗେ ।" ଉପରେପଡ଼ି କହିଲ ସୁମିତା । ଏଭଳି ଉତ୍ସବ ପ୍ରଭୃତି ଯେ ନୂଆ ନୁହେଁ, ଏ କଥା ତାର କଥାରୁ ଜାଣିପାରିଲ ସ୍ମିତା । କମିତି ଗୋଟାଏ ବିତୃଷ୍ଣା ଜାତ-ହେଉଛି ତା ମନଭିତରେ । ସୁକୁମାରବାବୁ ଉତ୍ତର ଦେଉଛନ୍ତି ସୁମିତାକୁ, "ନିଶ୍ଚୟ, ଗତଥର ତ ଆମେ ସମସ୍ତେ ଯାଇଥିଲେ....ଏଥର ବି ସମସ୍ତେ ଯିବା...ସ୍ମିତାଦେବୀ, ଆପଣ ଆପତ୍ତି କରନ୍ତୁନି । ଦେଖିବେ ବେଶ୍ ଖୁସି ଲଗିବ, ଗୋଟାଏ ନୂଆ ଅଭିଜ୍ଞତା ହେବ... ଆପଣ ନିଶ୍ଚୟ କେବେ ଶିକାର କରିବା ଦେଖିନାହାନ୍ତି ..."

"ପ୍ରକୃତରେ ସୁକୁମାରବାବୁଙ୍କର ଅବ୍ୟର୍ଥ ଲକ୍ଷ୍ୟ ଦେଖିବାର କଥା ମିସ୍ ମିଶ୍ର, ମୁଁ ବି ଥରେ ଦେଖିଛି ।" ଜଣେ ସହକର୍ମିଣୀ କହିଲେ ।

"ଅତି ସୁନ୍ଦର ପ୍ରାକୃତିକ ଦୃଶ୍ୟ ବି ଦେଖିବାକୁ ମିଳିବ...କେତେଥର ଦେଖି ମଧ୍ୟ ଆଉ ଥରେ ଦେଖିବା ଲୋଭ ସମ୍ଭାଳି ପାରିଲିନି ମୁଁ ।"

"ଆପଣଙ୍କୁ ଯିବାକୁ ହିଁ ପଡ଼ିବ..."

ଏକାସଙ୍ଗେ ଏକାଧିକ ମତ ବ୍ୟକ୍ତ ହେବା ଦେଖି, ଚଞ୍ଚଳ ପ୍ରସ୍ତାବଚ୍ଛେଦ ଟାଣିଦେବା ପାଇଁ ସ୍ମିତା କହିଉଠିଲି, "କ୍ଷମା କରିବେ, ମୁଁ ଯାଇପାରିବିନି ।"

ଆଲୁଅରେ ଜକ୍‌ମକ୍ ମୁହଁଗୁଡ଼ିକ ଯେପରି ଅନ୍ଧାର ହୋଇଯାଇଛି । ହଉ କ୍ଷତି ନାହିଁ । ଏ ଭଳି ସମାଜ ଭିତରେ ଚଳିବାକୁ ଏହିପରି ଦୃଢ଼ ଉତ୍ତର ହିଁ ଦେବାକୁପଡ଼ିବ । ଏତେବେଳ ପରେ ସିମିତି ମଞ୍ଜୁ ଉପରେ ଦୃଷ୍ଟି ପଡ଼ିଲ ସୁକୁମାରବାବୁଙ୍କର । ଟିକେ ରୁକ୍ଷ କଣ୍ଠରେ ସେ ସାଙ୍ଗେ ସାଙ୍ଗେ କହିଲେ, "ଏଇଠି ଠିଆହୋଇଛୁ କାହିଁକି ମଞ୍ଜୁ....ଯା ଭିତରକୁ ଯା...."

ରତ୍ନାଦେବୀ ଟିପ୍‌ପଣୀ କାଟିଲେ, "ପ୍ରକୃତରେ ବଡ଼ମାନେ କଥାବର୍ତ୍ତା ହେଉଥିବାବେଳେ, ସେ ସ୍ଥାନରେ ପିଲମାନେ ରହିବା ନିତାନ୍ତ ଅନୁଚିତ ।"

ମନ୍ଥର ଗତିରେ ମଞ୍ଜୁ ଚାଲିଗଲ ମୁଣ୍ଡଟି ପୋତି । ପ୍ରାୟ ସଙ୍ଗେ ସଙ୍ଗେ ସୁସଜ୍ଜିତ ଖାନସାମା ଆସି ଜଣାଇଲ ସବୁ ଠିକ୍‌ଠାକ୍ ହେଲଣି । ମନେ ମନେ ବିପଦ ଗଣିଲି ସ୍ମିତା । ଆଉ ଗୋଟାଏ ଝଡ଼ ଉଠିବ ପୁଣି । ସେଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଲଗିଲି ସେ ।

ସୁକୁମାରବାବୁ କହିଲେ, "ବାଃ, ଆପଣଙ୍କ ଲୋକଗୁଡ଼ିକ ସତେ ବଡ଼ କର୍ମପଟୁ, ମିସେସ୍ ରାୟ୍, କାଲି ଏଇ ସକାଳେ ଆପଣଙ୍କ ସଙ୍ଗେ ଆସି ପହଞ୍ଚିଲେ । ନୂଆ ଜାଗା, ନୂଆଘର; କିନ୍ତୁ ଘଣ୍ଟାକ ଭିତରେ ସବୁ ଠିକ୍ ଯୋଗାଡ଼ଯନ୍ତ୍ର କରିନେଲେ । ଭାଗ୍ୟକୁ ମୀନକେତନ ମତେ କହିଲା, ଆପଣଙ୍କ ପାଖକୁ ତାର କରିବାକୁ । ଗତଥର ବାଲେଶ୍ୱରରୁ ଯେଉଁ ଲୋକଟାକୁ ମଗାଇଥିଲେ....କିଛି ଭଲ କରିପାରିଲାନି ସେ..."

ଅମିତାଭ କହିଲା, "ହଁ ଲୋକଦୁଇଟି ବେଶ୍ ଚଟ୍‌ପଟ୍....ରତ୍ନାର ଟ୍ରେନିଂ ଯେତେହେଲେ, ପ୍ରଶଂସା ପାଇବାକଥା ରତ୍ନାର..." ସୁକୁମାର କହିଲେ, "ସେ କଥା ଆଉ ଅସ୍ୱୀକାର କରିବ କିଏ ? କହିବାକୁ ଗଲେ ରତ୍ନା ତ ହେଉଛନ୍ତି ଏ ଉତ୍ସବର ପୁରୋଧା । ତାଙ୍କରି ପରିକଳ୍ପନା ଅନୁଯାୟୀ ତ ମୁଁ ଆୟୋଜନ କରିଛି କେବଳ..." ସହାସ୍ୟ ମୁହଁରେ ଚାହିଁଲେ ସେ ରତ୍ନା ଆଡ଼କୁ । ମଧୁର ହସ ହସି ସୁକୁମାରଙ୍କ ବାହୁରେ ମୃଦୁ ଚପେଟାଘାତକରି କହିଲା ରତ୍ନା, "ବେଶି ଗୁଡ଼େ ପ୍ରଶଂସା କରନ୍ତୁନି ମ....ଚାଲନ୍ତୁ...ଚାଲନ୍ତୁ...ଆମେ ଏପଟେ ଗପକଲା ବେଳକୁ ଜିନଷଗୁଡ଼ାକ ତେଣେ ଥଣ୍ଡା ହୋଇଯିବ । ଭୋକରେ ପେଟ ଜଳିଲାଣି..."

ସ୍ମିତା ଆଡ଼କୁ ଚାହିଁ ସୁକୁମାରବାବୁ କହିଲେ, "ଆସନ୍ତୁ ଆପଣ ।"

ହାତଯୋଡ଼ି ସେ କହିଲା, "ମୁଁ ତ ବାହାରେ କେଉଁଠି କେବେ ଖାଏନି । ମନାକରିବାଟା ନିହାତି ଅଭଦ୍ରାମି ହେବ, ତେବେକେ ଆପଣମାନେ ସମସ୍ତେ ମତେ କ୍ଷମା କରନ୍ତୁ ।"

ତା କଥା ଶୁଣି ଉପସ୍ଥିତ ସମସ୍ତେ ଯେପରି ଆକାଶରୁ ଖସି ତଳେ ପଡ଼ିଗଲେ । ସୁକୁମାରବାବୁ ଏଥର ଆଉ ନ କହି ରହିପାରିଲେ ନାହିଁ, "କି ବାଜେ ଅଭ୍ୟାସ ସବୁ ଆପଣ ରଖିଛନ୍ତି ସ୍ମିତାଦେବୀ ! ସତରେ ଏ ଯୁଗରେ ଫେର୍ ଏମିତି ମଣିଷ ଅଛନ୍ତି ବୋଲି ମୁଁ ତ ଧାରଣା କରିପାରୁନି । କେଉଁ ମାନ୍ଧାତା ଅମଳର ଲୋକଙ୍କ ଭଳି...."

ରତ୍ନା କହିଲା, "ଆଶ୍ଚର୍ଯ୍ୟ—ସତରେ ଆଶ୍ଚର୍ଯ୍ୟ—ସକିଙ୍ଗ୍ (shocking), ଛାଡ଼ନ୍ତୁ ସେସବୁ, ଯାହା ଅଭ୍ୟାସ ରଖିଥିଲେ ବର୍ତ୍ତମାନ ସେ ସବୁ ଛାଡ଼ିବାକୁ ପଡ଼ିବ ।"

ଲଜ୍ଜିତ ଅନୁଭବ କଲେ ବି ସେ କହିଲା, "ମତେ ବାଧ କରନ୍ତୁନି ରତ୍ନାଦେବୀ, ସେ ସବୁ ମୋ ଦେଇ ହେବନି । ଯାଆନ୍ତୁ ଆପଣମାନେ, ମୁଁ ଏଠି ବସୁଛି ।"

ସମସ୍ତଙ୍କ ମୁହଁରେ ଅସନ୍ତୋଷ ଫୁଟିଉଠିଛି ପରିଷ୍କାର ରୂପେ । ଆଖିଗୁଡ଼ିକରେ ବିଦ୍ରୂପର ଚିହ୍ନ ବାରିହୋଇଯାଉଛି । କିନ୍ତୁ ଆଉ ଦ୍ୱିରୁକ୍ତି ନକରି ସେମାନେ ଉଠିଗଲେ ସମସ୍ତେ । ଅନ୍ତତଃ କିଛି ସମୟ ପାଇଁ ଏ ପରିବେଷ୍ଟନୀରୁ ମୁକ୍ତି ପାଇ ସ୍ମିତା ଯେପରି ବଞ୍ଚିଗଲା । ଘରର ବାହାରପଟ ବାରଣ୍ଡାକୁ ଚାଲିଆସିଲା ସେ ଟିକିଏ ଖୋଲା ପବନ ପାଇବା ଆଶାରେ । ଖୋଲା ଆକାଶ କଳାବାଦଲର କୃଷ୍ଣତା ମାଖି ଉପରେ ବିସ୍ତୃତ ହୋଇ ରହିଛି । ବାରଣ୍ଡା ଧଡ଼ିରେ କଂକ୍ରିଟ୍ କାମକରା ଅଣ୍ଟାଏ ଉଚ୍ଚର କାନ୍ଥ ଉପରେ ଧାଡ଼ି ଧାଡ଼ି ହୋଇ ସଜାଯାଇଛି ଫୁଲ

କୁଣ୍ଡ ସବୁ । ସେବତୀର ସମ୍ଭାର ବେଶି । ଧଳା, ହଳଦିଆ, ବାଇଗଣୀ ପ୍ରଭୃତି ଅନେକରଙ୍ଗର ଅନେକ ଆକୃତିର ସେବତୀଗୁଡ଼ିକ । ମଝିମଝିରେ ସଜା ହୋଇ ରହିଛି କେତୋଟି ଲାଲ୍ ଗୋଲାପର ଗଛ—ଖୁବ୍ ବଡ଼ ବଡ଼ ଆକାରର ପେନ୍ଥା ପେନ୍ଥା ଗୋଲାପ ସବୁ । ଘର ମାନଙ୍କର ଦ୍ୱାର ଓ ଝରକା ବାଟଦେଇ ଝଲକାଏ ଝଲକାଏ ଆଲୁଅ ଆସି ବାହାରେ ପଡ଼ୁଛି, ପଡ଼ୁଛି ଗଛମାନଙ୍କ ଉପରେ, ଫୁଲମାନଙ୍କ ଉପରେ ଆଲୋକରଶ୍ମିର ସରଳରେଖା ସବୁ । ବାରଣ୍ଡାଟିରେ ଆଲୁଅ ଜଳୁନଥିଲା—ସେହି ଅଧା ଆଲୁଅ ଅଧା ଅନ୍ଧାର ଭିତରେ ଫୁଟିଥିବା ଫୁଲଗୁଡ଼ିକର ବର୍ଣ୍ଣସୁଷମା ଦେଖି ମୁଗ୍ଧ ହୋଇଗଲା ସେ । କି ସୁନ୍ଦର ସତେ ! ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଆଉ କାହାକୁ କୁହାଯାଏ ? ସଜ୍ଜିତ ପାଖୁଡ଼ା ଗୁଡ଼ିକ ଏଡ଼େ ନିଷ୍ପାପ ଆଉ ନୈସର୍ଗିକ ମନେହେଉଥିଲା ଯେ ସ୍ମିତା ଭାବିଲା, 'ଏ ଦୁନିଆରେ ପ୍ରତ୍ୟେକ ମଣିଷର ହୃଦୟ ଏହିପରି ସୁନ୍ଦର ଓ ନିଷ୍ପାପ ହେଉନି କାହିଁକି—ଏହିପରି ନିର୍ମଳ ଓ ପବିତ୍ର । ଗୋଟିଏ ମୁହୂର୍ତ୍ତ ପାଇଁ ସେ ଏକଥା ଭାବିଲା, ପରକ୍ଷଣରେ ନିଜେ ନିଜେ ହିଁ ତାର ଉତ୍ତର ସ୍ଥିର କଲା, 'ଏ ସୁନ୍ଦର ଫୁଲଗୁଡ଼ିକ ଭିତରେ ବି କଣ୍ଟାସବୁ ଅଛନ୍ତି ।'

ଏ ସଂସାରରେ ନିର୍ଦ୍ଦୋଷ ହୋଇ କିଛି ନାହିଁ ।

× × × × ବଡ଼ ହଲ୍ ଘରଟି । ପୂର୍ବପୁରୁଷଙ୍କ ଅମଳରେ ସେ ଘରଟି ନିଶ୍ଚୟ ଶୟନକକ୍ଷରୂପେ ବ୍ୟବହୃତ ହେଉଥିବ; ବର୍ତ୍ତମାନ କିନ୍ତୁ ବିଲାତି କାଇଦା ପ୍ରିୟ ସୁକୁମାର ବାବୁଙ୍କର ସେଇଟା ହେଉଛି ଡାଇନିଂ ହଲ୍; ସାଦା ଓଡ଼ିଆରେ କହିବାକୁ ଗଲେ ଖାଇବା ଘର । ଅଣ୍ଡାକୃତି ବଡ଼ ଟେବୁଲ୍ ଟିଏ ପଡ଼ିଛି ଘର ମଝିରେ, ଆଉ ଚାରୋଟି କି ଛଅଟି ନକ୍ସାଙ୍କିତ ଛୋଟ ଛୋଟ ଗୋଲ୍ ଟେବୁଲ୍ ଦୂରକୁ ଦୂରକୁ ବିଭିନ୍ନ ସ୍ଥାନରେ ରହିଛି । ପ୍ରତ୍ୟେକ ଟେବୁଲ୍ ଉପରେ ସୁନ୍ଦର ସୂଚିକର୍ମ କରାଯାଇଥିବା ଧଳା ଟେବୁଲ୍ କନା । ପ୍ରତ୍ୟେକର ମଧ୍ୟଦେଶରେ କାଚନିର୍ମିତ ସୁନ୍ଦର ଫୁଲଦାନୀ ସଜ୍ଜିତ ହୋଇ ରହିଛି ପତ୍ର ଓ ପୁଷ୍ପ ସମ୍ଭାରରେ । ଟେବୁଲ୍ ଗୁଡ଼ିକର ଚାରିପଟେ ଚଉକିଗୁଡ଼ିକ ରହିଛି । ବିଦେଶରୁ ଆମଦାନୀ ହୋଇଥିବା ନାନା ପ୍ରକାର ଓ ଆକାରର ଚକଚକ କାଚ-ଥାଳିଆଗୁଡ଼ିକରେ ବିଭିନ୍ନ ପ୍ରକାର ସୁବାସିତ ଆହାର୍ଯ୍ୟ ବସ୍ତୁ । ଧଳା ଚପ୍କାନ୍, ପାଇଜାମା ଓ ପଗଡ଼ି ପରିହିତ ଖାନ୍ସାମା ଓ ଆଉ ଦୁଇଜଣ ପରିଚାରକ ଦ୍ୱାରଦେଶରେ ଅପେକ୍ଷା କରିଛନ୍ତି । ଗୋଟିଏ ଗୋଲେଇରେ ବସିଥିଲେ ସୁକୁମାରବାବୁ, ରଞ୍ଜନ ଓ ସୁମିତା । ଅନ୍ୟଟିରେ ରତ୍ନା, ମୀନକେତନ ଓ ଜଣେ ଶିକ୍ଷୟିତ୍ରୀ । ଆଉ ଗୋଟିଏ ଜାଗାରେ ଅମିତାଭ ଓ ଶିକ୍ଷୟିତ୍ରୀ ମାଲତୀ ପାତ୍ର । ଖିଆ ଚାଲିଛି, ଶୁଭୁଛି କାଚଥାଳିଆ ସହିତ ଚାମଚ ବାଜି ଜାତ ହେଉଥିବା ଟୁଂ ଟାଂ ଶବ୍ଦ, ତା ସହିତ ଚାଲିଛି କଥାବାର୍ତ୍ତାର ଗୁଞ୍ଜନ । ଅତି ଜୋର୍‌ରେ କଥା ହେଉ ନଥିଲେ କେହି ।

ରଞ୍ଜନ କହୁଥିଲା, "ସତରେ ତୋର ଏ ନୂଆ ଆମଦାନୀ କରାଯାଇଥିବା ଜନ୍ତୁଟିକୁ ଦେଖି ମୁଁ ତ ଅବାକ୍ ହୋଇଯାଉଛି ।"

ଶୁଣିଥିଲେ ବି ନ ବୁଝିଲାପରି ସୁକୁମାର କହିଲେ, "କାହା କଥା କହୁଛୁ ?"

ସୁସ୍ମିତା ଟିକିଏ ହସି ମୁଣ୍ଡଟିକୁ ଗୋଟେ କଡ଼କୁ ଢାଳି କହିଲା, "ବୁଝିପାରୁ ନାହାନ୍ତି ନା କଣ ? ଏଇ ଆମ ହେଡ୍ ମିଷ୍ଟ୍ରେସଙ୍କ କଥା । ପ୍ରକୃତରେ ଆପଣ ଯାହା ଭାବନ୍ତୁ ପଛକେ ମୁଁ ନକହି ରହି ପାରୁନି—ସାଧାରଣ ଭଦ୍ରତା ରକ୍ଷା କରିବାକୁ ବି ସେ କୁଣ୍ଠିତ । ଆପଣ ହେଲେ ସ୍କୁଲର ସେକ୍ରେଟେରୀ, ଓନର୍ (ମାଲିକ) । ଆପଣଙ୍କ ଅନୁରୋଧ ସେ ରଖିଲେନି । ଟିକିଏ ହେଲେ କଣ ଖାତିର କଲେ ? ସବୁକଥାରେ ସିଧାସଳଖ ଅସ୍ୱୀକାର କରିଦେବାଟା କି ଚରମ ଅଭଦ୍ରତା, ଲାଜରେ ମୋ ମୁହଁ ତଳକୁ ହୋଇଗଲା···ସେ ଫେରେ ଆମର ବସ୍ (Boss)....ଆମର ଉପର ହାକିମ...

ରଞ୍ଜନ ମୁହଁରେ ଥୋଡ଼ାଏ ମାଂସ ପୂରାଇଦେଇ ଚୋବାଉ ଚୋବାଉ କହିଲା, 'ଭଦ୍ରତା କଣ ସେ ଜାଣିନାହାନ୍ତି···ସେଥିପାଇଁ କହୁଥିଲି ପରା ଜନ୍ତୁ ବୋଲି' । ଖାଦ୍ୟ ଜିନଷ ଗିଳିପକାଇ ଖୁଁ ଖୁଁ ହୋଇ ହସି ପୁଣି କହିଲା, 'ଆଚ୍ଛା ସୁକୁମାର ! ତାଙ୍କ ଅତୀତ ଓ ବର୍ତ୍ତମାନ ବିଷୟରେ କଣ ଜାଣିଛୁ ?'

ଅର୍ଥପୂର୍ଣ୍ଣ ହସ ହସି ସୁକୁମାରବାବୁ ଉତ୍ତର ଦେଲେ, "ଆଜିକାଲିର ମଡ଼ର୍ଣ୍ଣ ଦୁନିଆରେ ପରିଚୟର ସେ ଆଦୌ ଆବଶ୍ୟକତା ନାହିଁ, ସେକଥା ଜାଣିନୁ ? ଗୋଟାଏ ମିସ୍ କିମ୍ବା ମସେସଙ୍କ ହେଲା ମୁଣ୍ଡ ଓ ଲାଞ୍ଜଟା ହେଲା ମିଶ୍ର କି ମହାନ୍ତି ଜାତୀୟ କିଛି । ଏ ଦି'ଟା ଥିଲେ ସେ ସମ୍ପୂର୍ଣ୍ଣ ମାଛଟାଏ ହୋଇଗଲା, ତାର ଆଉ ପରିଚୟର ଦରକାର କଣ ?" ତାପରେ ହସି ହସି ଆଉଥରେ କହିଲେ, "ତାହେଲେ ଗଡ଼ଗାଡ଼ିରେ ଅନିର୍ଦ୍ଦିଷ୍ଟ ଭାବରେ ଏକାକିନୀ ଆସୁଥିବା ଜଣେ ପରମାସୁନ୍ଦରୀ ତରୁଣୀଙ୍କର ଅତୀତ ଓ ବର୍ତ୍ତମାନ କିମ୍ବା ଭବିଷ୍ୟତ ବିଷୟରେ ପଚାରିବା ମୂର୍ଖାମି ନୁହେଁ ?"

"ତେବେ ବି ତାର ଗୋଟାଏ ଅତୀତ ଥିବ ତ..."

"ଗୁଡ଼, ସେ ବିଷୟରେ ମୁଁ ମୁଣ୍ଡ ଘୂରାଇନି...."

"ସତରେ ସୁକୁମାରବାବୁ, ମୁଁ ତ ଆଶ୍ଚର୍ଯ୍ୟ ହେଉଛି । ଆସିବା ପ୍ରାୟ ପାଞ୍ଚମାସ ହେବ, ଏଥି ଭିତରେ ଗୋଟିଏ ହେଲେ ଚିଠି ତାଙ୍କର ଆସିନି, ସେ ବି କେବେ ହେଲେ ଚିଠି ଦେଇ ନାହାନ୍ତି । ଆପଣ କହୁଥିଲେ, ସେ କୁଆଡ଼େ କହିଲେ, ତାଙ୍କର ବାପା ଓ ଭାଇ ଅଛନ୍ତି ବୋଲି । ସେକଥା ଯଦି ସତ ହୋଇଥାନ୍ତା, ଅନ୍ତତଃ ଚିଠିପତ୍ର ତ ଦିଆନିଆ ହୁଅନ୍ତା । କହନ୍ତୁନାହିଁ ! ସତରେ ଯଦି କେହି ତାଙ୍କର ଥାଆନ୍ତି, ମୁଁ ଭାବୁଛି, ସେ କାହାକୁ ନ ଜଣାଇ ଆସିଛନ୍ତି ।"

କଥା ଶେଷ ହେଉନହେଉଣୁ ହୋ ହୋ ହୋଇ ହସି ଉଠିଲେ ରଞ୍ଜନ ବାବୁ । କହିଲେ, "ହସେଇଲ ସତରେ ତମେ ସୁମିତା । ଆରେ ଘର ଛୁଡି ଯେଉଁ ଝିଅ ଆପେ ବାଣ୍ଟିଲୁ ··· ମାନେ ସାଧୁ ଭାଷାରେ ଗୃହତ୍ୟାଗ କରେ, ସେ କଣ ତାର ବାପ, ମା, ଭାଇ, ଭଉଣୀଙ୍କ କହିଯାଇଛି ଆସେ ନା କଣ ? ବାହାର ଆସିଥିବ କୋଉ ଟୋକା ସାଙ୍ଗରେ । ସେ ବାହାହେଇ ଯାଇଛି, ବର୍ତ୍ତମାନ ଇଏ ଆମର ପୁର୍ବ ବୈଷ୍ଣବୀ ହୋଇଛନ୍ତି···ସେ ତ ହେଲା ସଲଖ କଥା..." ଅଉଥରେ ପୁଣି ହସର ଜୁଆର ଛୁଟାଇଦେଲେ ସେ ।

ରଞ୍ଜନର ହସରେ ସଜାଗ ହୋଇ ରତ୍ନା କହିଲା, ସେ ପାଖରୁ, ମଲ୍ଲ, ମଲ୍ଲ, ଏଠି କଣ ପାର୍ଟି ଆରମ୍ଭ କରିଦେଲେ ନା କଣ ? ବେଶ୍ ସରଗରମ ହେଇ ଉଠୁଛି ।' ତାପରେ ମୀନକେତନକୁ ଲକ୍ଷ୍ୟ କରି ସେ କହିଲା, 'ଦେଖନ୍ତୁ କବିସମ୍ରାଟ୍, ମତେ କ୍ଷମାକରିବେ, ମୁଁ ଗଲି ସେ ଟେବୁଲକୁ । ଆପଣଙ୍କ ଭାବୁକତା ଆଉ ଆତ୍ମହତ୍ୟା ଜମେଇ ପାରୁନ ରଞ୍ଜନବାବୁଙ୍କ ହସ ଭଲ...' କଥା ଶେଷରେ ନିଜର ଥାଳଆଟି ଉଠାଇ ଆଣି ବାଁ ହାତରେ ଥାଳୀ, ଡାହାଣ ହାତରେ ଚୌକିଟାକୁ ଟାଣିଆଣି ରଞ୍ଜନ ପାଖରେ ଆସି ବସିପଡ଼ିଲା ସେ, ତାପରେ ତା ପାଖକୁ ମୁହଁଟା ନୁଆଁଇ ଦେଇ ପଚାରିଲା, 'କଣ କଥା ପଡିଥିଲା ଶୁଣେ ?'

'ସିକ୍ରେଟ୍ (Secret) ରହିଦେବା, ଆପଣଙ୍କୁ କୁହାଯାଇ ନପାରେ...' କୌତୁକ କଲା ରଞ୍ଜନ ।

'ସତେ ? ତାହେଲେ ମୁଁ ଏ ପର୍ଯ୍ୟନ୍ତ ଜାଣି ନଥିଲି ଯେ ସୁମିତା ସ୍ତ୍ରୀ ଭିତରେ ଆପଣମାନଙ୍କର ସିକ୍ରେଟ୍ ସବୁ ଜାଣିବାର ଅଧିକାରଣୀ ହୋଇଗଲାଣି ! କଥାର ପାହାର ଫେରାଇଦେଲା ସେ ।

'ବାରେ, ମୁଁ ନିର୍ଦ୍ଦୋଷ, ମୋ ଆଡକୁ କାହିଁକି କଥାଟା ଟାଳୁଛନ୍ତି ରତ୍ନାଦେବୀ ?' ଗେହ୍ଲାଇ ହୋଇ କହିଲା ସୁମିତା । 'ଆଉମଧ ସିକ୍ରେଟ୍ ଜାଣିବାର ଅଧିକାରିଣୀ ହେବାର ଭାଗ୍ୟ ମୋର କାହିଁ ? ମୁଁ ଆପଣଙ୍କ ଭଳି ଇଣ୍ଟେଲିଜେଣ୍ଟ୍ ନୁହେଁ କି ପ୍ରୀତାଦେବୀଙ୍କ ଭଳି ପରମାସୁନ୍ଦରୀ ବି ନୁହେଁ....'

'ପ୍ରକୃତରେ ସୁକୁମାର ସି, ତାଙ୍କୁ ଦେଖି ମୁଁ ଆବାକ୍ ହୋଇଯାଇଛି । ଏତେ ସୁନ୍ଦର କମ୍ପ୍ଲେକ୍ସନ୍, ଏତେ ସୁନ୍ଦର ଗଢ଼ଣ, ମୁଁ ଜୀବନରେ ଦେଖିନ କହିଲେ ଚଳେ । ବହୁତ ଝିଅ ଦେଖିଛି; କିନ୍ତୁ ଏତେ ରୂପ...ଓଃ ଆଶ୍ଚର୍ଯ୍ୟରକମ ରୂପବତୀ ।'

'ହେଲେ ଆଉ ଗୋଟାଏ କଥା—ବଡ ଗର୍ବୀ ଓ ବଡ ଡେୟାରିଂ (Daring)' ରଞ୍ଜନ କହିଲା ।

'ଛେକାଗୁଡ଼, ମୁଁ କହିବ ଗୋଟାଏ ନିପଟ ମଫସଲ, ବୋକା, ମୂର୍ଖ ଝିଅ । ରୂପଟା ଅଛି ଅବଶ୍ୟ; କିନ୍ତୁ ଟିକିଏ ବୋଲି ବୁଦ୍ଧି ନାହିଁ । ହଁ ସୁକୁମାର ! ତମେ କହୁଥିଲ ନା ସେ ଜଣେ ଗ୍ରାଜୁଏଟ୍ । ମୁଁ ଆଦୌ ବିଶ୍ୱାସ କରିପାରୁନି ସେ କଥା । ବି.ଏ. ପାସ୍ କଲା ଝିଅ

କେଖେ ଏମିତ ଅମାର୍ଜିତ ହୋଇପାରେ, ଯା ମୋର କଳ୍ପନାତୀତ। ତମେ ତାର ସାର୍ଟିଫିକେଟ୍ ସବୁ ଦେଖିଛ ତ, ନା ମିଛରେ ନିଜକୁ କଣେ ଗ୍ରାଜୁଏଟ୍ ବୋଲି ପରିଚୟ ଦେଇ....'

'ନା, ନା ରତ୍ନା, ସେ କଥା ଆଦୌ ନୁହେଁ। କାଗଜପତ୍ର ତ ଦେଖିଛୁ ଆଉ ଦେଖିଛୁ ତାର କାର୍ଯ୍ୟ-ଦକ୍ଷତା। ପଢ଼ାଇବା ପ୍ରଣାଳୀ ମଧ୍ୟ ଅତି ଉଚ୍ଚ ଧରଣର...'

ସୁକୁମାରବାବୁଙ୍କ ମୁହଁରୁ ସ୍ମିତାର ପ୍ରଶଂସା ଶୁଣି ନନ୍ଦିନୀ ଓ ରତ୍ନା ଦୁହିଁଙ୍କର ମୁହଁ ଅନ୍ଧାର ହୋଇଯାଇଥିଲା।

ପ୍ରସ୍ଫୁଟିତ ରକ୍ତଗୋଲାପ ସଦୃଶ ଅତୀତ ଆସି ପହଞ୍ଚିଲା ନିକଟରେ। ହଠାତ୍ କାହିଁକି କେଜାଣି ମହେଶ୍ୱର ମୁହଁଟିକୁ ମନେପକାଇବାର ଅଦମ୍ୟ ଇଚ୍ଛା ଜାତହେଲା ସ୍ମିତାର। ଆଖି ଦୁଇଟି ବନ୍ଦକରି ସେହି ଚେଷ୍ଟାରେ ଯେତେବେଳେ ସେ ନିମଗ୍ନ, ହଠାତ୍ ନିଜ କାନ୍ଧ ଉପରେ କାହାର ହାତର ସ୍ପର୍ଶ ଅନୁଭବ କରି ଚମକିପଡ଼ି ସେ ଆଖି ଖୋଲିଲା—ତାର ଅତି ନିକଟରେ ଠିଆହୋଇଛି ରଞ୍ଜନ୍। ସର୍ପାହତ ପରି ଦୁଇହାତ ପଛକୁ ହଟିଗଲା ସେ।

"ଆପଣ ଏତେ ଅନ୍ୟମନସ୍କ ହୋଇ କଣ ଭାବୁଥିଲେ ସ୍ମିତାଦେବୀ? ସତରେ, ଏ ଅନ୍ଧାର ଆଉ ଆଲୁଅର ସମାବେଶ ଭିତରେ ଆପଣଙ୍କର ସେହି ନିବଷ୍ଟ ଭାବେ ଠିଆହେବା ଭଙ୍ଗୀଟି ଗୋଟାଏ କପରି ପେଥେଟିକ୍ (pathetic) ଭାବର ସଞ୍ଚାର କରିଥିଲା। କ୍ଷମା କରିବେ, ମୋର ମନେହୁଏ ଆପଣଙ୍କ ଜୀବନରେ ଗୋଟାଏ ମସ୍ତବଡ଼ ଟ୍ରାଜେଡ଼ୀ (tragedy) କଣ ଘଟିଛି। ଆଚ୍ଛା, ଆପଣ ନିଜ ମନର ସେ ବେଦନାକୁ, ସେ ଦୁଃଖକୁ ସବୁବେଳେ ମନଭିତରେ ଚପି ରଖିଛନ୍ତି କାହିଁକି? ଆମେମାନେ, ଆପଣଙ୍କ ବନ୍ଧୁମାନେ, ପ୍ରେଣ୍ଡସ୍, ଆପଣଙ୍କ ଦୁଃଖରେ ଦୁଃଖୀ ହୋଇପାରିବୁ। ଆମମାନଙ୍କୁ ଅନ୍ତତଃ ଆପଣଙ୍କ ସେ ତୀବ୍ର ଦୁଃଖର କେତେକ ଅଂଶ ଜାଣିବାର ଶୁଣିବାର ଅଧିକାର ଦିଅନ୍ତୁ—ନିଜର ହୃଦୟକୁ ସେ ଦୁଃଖଜ୍ୱରରୁ ଟିକିଏ ହାଲୁକା କରନ୍ତୁ ସ୍ମିତା ଦେବୀ....ପ୍ଲିଜ୍..."

ବାଧାଦେଇ କହିଉଠିଲେ ସ୍ମିତା—ଧନ୍ୟବାଦ। କିନ୍ତୁ ଗୋଟାଏ କଥା ରଞ୍ଜନବାବୁ, ଆପଣ ଭୁଲିଯାଉଛନ୍ତି ଯେ ଏଇଟା ଗୋଟିଏ ଫିଲ୍‌ମ ଷ୍ଟୁଡ଼ିଓ ନୁହେଁ କିମ୍ବା ମୁଁ ଷ୍ଟୁଡ଼ିଓର ଅଭିନେତ୍ରୀ ବି ନୁହେଁ। ତୁନିଆର ଏ ଅତ୍ୟାଧୁନିକତାକୁ ମୁଁ ଆନ୍ତରିକ ଘୃଣାକରେ। ଏକଥା ଜାଣି ସ୍ୱାପରେ ମୋ ସଙ୍ଗେ କଥାବାର୍ତ୍ତା ହେଲାବେଳେ ଭବିଷ୍ୟତରେ ଆପଣ ଯଥେଷ୍ଟ ଦୂରତ୍ୱ ରକ୍ଷି ଚଳିବେ ବୋଲି ମୁଁ ଆଶାକରେ...'

ତାଙ୍କୁ ସ୍ପର୍ଶ କରିବାର ସେ ଆସ୍ପର୍ଦ୍ଧା ଦେଖି ପ୍ରଥମେ ହତବାକ୍ ହୋଇଗଲେ ମଧ୍ୟ ପରେ କଥାର ତୀବ୍ରତାରେ ରଞ୍ଜନକୁ ଦଗ୍ଧ କରି ଦେବାକୁ ଚାହିଁଲା ସ୍ମିତା ଆଉ କଥାର

ସ୍ବଭୂଙ୍କ ପଦ୍ଧାନରେ ମୁହ୍‌ ଭିଙ୍କ ପାଇଁ କଳାପଡ଼ିଯାଇଥିଲା ରଞ୍ଜନର ସୁଦ୍ରଶ୍ୟ ମୁହଁଟା । କିନ୍ତୁ ପରକ୍ଷଣରେ ଆଖି ଦୁଇଟି ଜଳିଉଠିଲା ଯେପରି । ସେ କହିଲା, 'ଭୁଲ ମୁଁ କରିନି ସ୍ମିତା ଦେବୀ, ଭୁଲ ଆପଣ କରିଛନ୍ତି । ଯେଉଁ ଜଗତ ସହିତ ଆପଣ ନିଜକୁ ଖାପ ଖୁଆଇ ଚଳିପାରିବେନି, ଜାଣିଶୁଣି ସେ ଜଗତ ଭିତରକୁ ଓହ୍ଲାଇ ଆସିଛନ୍ତି । ଆପଣଙ୍କର ଏ ଅନଧିକାର ପ୍ରବେଶରେ ଆମର ଏ ଜଗତ ବଦଳିବନି, ବଦଳିବାକୁ ପଡ଼ିବ ଆପଣଙ୍କୁ । ଆପଣ ନିଜେ ଯାଚିହୋଇ ତାର ବାସିନ୍ଦା ହୋଇଛନ୍ତି' କଣ୍ଠସ୍ୱରରେ ବିଦ୍ରୂପ ଢାଳିଦେଇ ନିର୍ଲଜ୍ଜ ହସ ହସିଲା ସେ । ତାପରେ ନିଜର ଉଦ୍ଦେଶ୍ୟ କାର୍ଯ୍ୟକାରୀ ହୋଇଥିବା ଦେଖି ଏଥର ଅପେକ୍ଷାକୃତ କୋମଳ କଣ୍ଠରେ ସେ କହିଲା, 'ଦେଖନ୍ତୁ, ମୋତେ ମତେ ଜଣେ ଶତ୍ରୁ ବୋଲି ଭାବୁଚନ୍ତି କାହିଁକି ? ଗୋଟାଏ ଦୃଷ୍ଟିରୁ ଦେଖିବାକୁ ଗଲେ ମୁଁ ବରଂ ଆପଣଙ୍କର ଜଣେ ମଙ୍ଗଳାକାଂକ୍ଷୀ । ଆପଣଙ୍କୁ ଦେଖିଲାବେଳୁ ମୁଁ ଖାଲି ଭାବୁଚି ଆପଣଙ୍କର ଯେଉଁ ପର୍ସନାଲିଟି (personality) 'ଅଛି ନା, ସେଥିରେ ଆପଣ ଯଦି ଚଳଚ୍ଚିତ୍ର ଜଗତରେ ଓହ୍ଲାନ୍ତେ, ତାହେଲେ ଅଳ୍ପ କେତେଟା ଦିନ ଭିତରେ ହିଁ ପ୍ରଥିବୀପ୍ରସିଦ୍ଧ ହୋଇଉଠନ୍ତେ । ଏଠି ଗୋଟାଏ ବେସରକାରୀ ଝିଅ ସ୍କୁଲର ଶିକ୍ଷୟିତ୍ରୀ ହୋଇ ରହିଲେ ଭବିଷ୍ୟତ କଣ ଅଛି ? ବର୍ଷକୁ ଦଶଟା ଟଙ୍କା ହିସାବରେ ବଢ଼ି କେତେ ବର୍ଷରେ ଏମିତି କେତେଟା ଟଙ୍କା ପାଇବେ କହନ୍ତୁ ତ ?'

ରଞ୍ଜନର ଉତ୍ତର ଦେବାର ପ୍ରଥମ ପର୍ଯ୍ୟାୟରେ ସ୍ମିତା ଆହତ ହୋଇଥିଲା ସତ; କିନ୍ତୁ ପରର ସାହସ ସଞ୍ଚୟ କରିନେବାକୁ ବେଶି ସମୟ ଲାଗି ନଥିଲା ତାକୁ । ଶାନ୍ତ କଣ୍ଠରେ ସେ କହିଲା, 'ଆପଣ ତାହେଲେ ମତେ ଜଣେ ଅଭିନେତ୍ରୀ ହେବାକୁ ଉପଦେଶ ଦେଉଛନ୍ତି ରଞ୍ଜନବାବୁ ?'

ତାର ଆଶ୍ଚର୍ଯ୍ୟ ଶାନ୍ତ ଭାବକୁ ଦେଖି ବିସ୍ମିତ ହେଲେ ମଧ୍ୟ ବେଶ୍ ଆଗ୍ରହ ସହକାରେ କହିଲା ରଞ୍ଜନ, 'ହଁ, ମେଡ଼ାମ୍ । ଆପଣ ଯଦି ଅନୁମତି ଦିଅନ୍ତେ ତାହେଲ ମୁଁ ସବୁ ଠିକ୍ ଠାକ୍ କରିଦିଅନ୍ତି । ମୁଁ ବାଜିରଖି କହିପାରେ—ଆପଣଙ୍କୁ ନିଜର ଚିତ୍ରତାରକା ରୂପେ ନେବାପାଇଁ ଚିତ୍ର ଅନୁଷ୍ଠାନମାନଙ୍କ ଭିତରେ ଚହଳ ପଡ଼ିଯିବ । ବମ୍ବେର ପ୍ରସିଦ୍ଧ ପ୍ରସିଦ୍ଧ ସବୁ ଚଳଚ୍ଚିତ୍ର ଅନୁଷ୍ଠାନମାନଙ୍କ ସହିତ ମୋର ବେଶ୍ ପରିଚୟ ଅଛି ।'

"କିନ୍ତୁ ଆପଣଙ୍କ କଥା ଶୁଣି ମୋର ବେଶ୍ ସୁନ୍ଦର ଗପଟିଏ ମନେ ପଡ଼ିଲା— ପିଲାଦିନେ ଆପଣ ପଢ଼ିଥିବେ କି ନାହିଁ ଜାଣେନା, ମୁଁ କିନ୍ତୁ ପଢ଼ିଛି । ଗପଟି ଶୁଣନ୍ତୁ— ଗୋଟିଏ ବିଲୁଆ ଥିଲା । ଥରେ କୌଣସି କାରଣରୁ ଅସାବଧାନତାବଶତଃ ଲାଞ୍ଜଟି ତାର କଟିଗଲା, ନିଜର ଏ ସମ୍ମାନ ହାନିହେବା ଦେଖି ନିଜ ଦଳର ଅନ୍ୟ ସମସ୍ତଙ୍କୁ ସେ ପରାମର୍ଶ ଦେବାକୁ ଲାଗିଲା ଯେ ଲାଞ୍ଜଟି ରଖିବା ଭଲ ନୁହେଁ...." କଥା ଶେଷକରି ଖିଲ୍ ଖିଲ୍ ହୋଇ ହସିଉଠିଲା ସ୍ମିତା । ପୁଣି କହିଲା, "ଆପଣଙ୍କ ଉପଦେଶ ପାଇଁ ଅଜସ୍ର

ଧନ୍ୟବାଦ ରଞ୍ଜନବାବୁ; କିନ୍ତୁ ଆଜିବନ ନ ବଦଳିବାର ଦୃଢ଼ତା ରଖି ତେବେ ଯାଇ ମୁଁ ଏ ଜଗତକୁ ଓହ୍ଲାଇଛୁ । ମୋର ଏ ଧରଣର ଝଡ଼ଝଞ୍ଜା-ଶାନ୍ତି କେତେ ଖଣ୍ଡକୁ ବେଶି ଚଢ଼ା କେବେ ଦରକାର ପଡ଼ିବନି ବୋଲି ମୁଁ ବିଶ୍ୱାସ କରେ · ହଉ··· ମୁଁ ଯାଉଛି···" ତାପର ପଲକ ନ ପଡ଼ୁଣୁ ଅଦୃଶ୍ୟ ହୋଇଗଲା ସେ ଦ୍ୱାର ବାଟେ । ତାର ଉପହାସ ଯେପରି ସେ ପର୍ଯ୍ୟନ୍ତ ଧ୍ୱନିତ ହେଉଥିଲା ଘରଆଡ଼େ । ଧୀରେ ମୁହଁରେ ଦାନ୍ତରେ ଦାନ୍ତ ଚାପି ନିଜର କ୍ରୋଧକୁ ଦମନ କରୁଥିଲା ରଞ୍ଜନ ।

× × × ସେଦିନ ରାତିରେ ବେଡ଼ରେ ଶୋଇ ପ୍ରଥମେ ସିଦ୍ଧାନ୍ତ ନେଇଥିଲା ଯେ ସେ ଏଠା'ର ଚାକିରି ଛାଡ଼ିଦେଇ ଚାଲିଯିବ । ବର୍ତ୍ତମାନ ଯେଉଁ ଧରଣର ଉତ୍ପାତ ଆରମ୍ଭ ହେଲାଣି ସେଥିରେ ଏ ଚାକିରି ଛାଡ଼ିବା ହିଁ ସମୀଚୀନ ହେବ, କିନ୍ତୁ ତାର ଆଦର୍ଶ ଅନୁଯାୟୀ ଗଠିତ ହୋଇଥିବା ଏପରି କେଉଁ ଅନୁଷ୍ଠାନରେ ଚାକିରିଟିଏ ମିଳିବା ସମ୍ଭବ ହେଲେ ତ ! ଯୁଗ ବଦଳିଛି । ମଣିଷର ଜୀବନଧାରା, ତାର ଚାଲିଚଳଣି ସବୁ ବଦଳିଛି । ଏ ଯୁଗରେ ଘରର ଲକ୍ଷ୍ମୀ ଯାଏ ବଫେ (buffet) ଡିନର୍‌ର ନିମନ୍ତ୍ରଣ ରକ୍ଷାକରିବାକୁ, ବିଭିନ୍ନ ଅନୁଷ୍ଠାନମାନଙ୍କରେ ଯୋଗଦେଲାବେଳକୁ ପର ସ୍ତ୍ରୀ, କିମ୍ବା ଅପରର ସ୍ୱାମୀ ସହିତ ବସିବା, ବୁଲିବା ହିଁ ପୁରୁଷ କିମ୍ବା ସ୍ତ୍ରୀ ପକ୍ଷରେ ହେଉଛି ଉଚିତ ଭଦ୍ରାମୀ । ଖବରକାଗଜରେ ସେ ପଢ଼ିଛି—ନାଇଟ୍ କ୍ଲବମାନଙ୍କର ବି ଅଭାବ ନାହିଁ ! ସହରର କଥିଲି ଶୁଣି ଭଲି ଯେଉଁ ବିଦେଶୀ-ସଭ୍ୟତାର ଛାୟା କ୍ରମେ କ୍ରମେ ମାଡ଼ିଆସୁଛି, କିଏ ଜାଣେ ଦିନେ ସେ ଏ ଦେଶର ! ଅତୀତର ଗୌରବ, ତାର ଧାର୍ମିକତା, ପବିତ୍ରତାକୁ ଲୁପ୍ତ ନ କରିବ·! ବହିରେ କାଗଜରେ ଏ ପର୍ଯ୍ୟନ୍ତ ପଢ଼ିଥିଲା ଖାଲି; କିନ୍ତୁ ଆଖିରେ ଦେଖିବା ଆଜି ଏ ପ୍ରଥମ । ରତ୍ନାର ଓ ସୁମିତ୍ରାର ଛବିଭଙ୍ଗୀ ଦେଖି ପ୍ରକୃତରେ ଆଜି ବିସ୍ମୟରେ ଅଭିଭୂତ ହୋଇପଡ଼ିଥିଲା ସେ । ଯିଏ ତାର ନାଁ କଣ ପ୍ରଗତି ? ଏ ଦେଶର ନାରୀ ଆଜି ଅଧିକ କାଳ ପର୍ଦ୍ଦାନସି ନହୋଇ ବାହାର କର୍ମକ୍ଷେତ୍ରରେ ଯୋଗ ଦେଇଥିଲା କଣ ଖାଲି ବେଶଭୂଷା ଓ ରୁଚିକୁ ଏହିପରି ବଦଳାଇବ ବୋଲି ? କୁଆଡ଼େ ଗଲା ସେ ଦେଶ ଓ ଦଶଙ୍କ ସେବା କରିବା ମନୋବୃତ୍ତି···ମହାପୁରୁଷମାନଙ୍କ ସେ ନୀତି ଉପଦେଶ ସବୁ ପୋଥିଗତ ହୋଇ ରହିଗଲା !

ହୁଏତ ଯେଉଁଠାକୁ ଗଲେ ବି ଏହିପରି ସମାନ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ । ନିଜକୁ ବଞ୍ଚାଇବା ପାଇଁ ନିଜର ବୁଦ୍ଧିକୁ ସବୁବେଳେ ଅସ୍ତ୍ରରୂପେ ବ୍ୟବହାର କରିବାକୁ ପଡ଼ିବ ଯେଉଁଠି ଗଲେ ହେଲେ···ରାତି ଶାରୀ କେତେବେଳେ ତା ଆଖିକୁ ନିଦ ଆସିଗଲା ସେ ଜାଣେନି ।

ଆରଦିନ ସକାଳୁ ସୁମିତ୍ରା ଆସି ତାର ଛୁଟି ଦରଖାସ୍ତ ଦେଲା—ସେ ଯିବ ଶିକାର ପାର୍ଟିରେ ଯୋ ଦେବାକୁ । ସୁମିତ୍ରାର କ୍ଲାସଟି ସେ ନିଜେ ନେବାକୁ ହେଲା । ଏହି

ଶ୍ରେଣୀର ଛାତ୍ରୀ ହେଉଛନ୍ତି ମଞ୍ଜୁଶ୍ରୀ । କାଲିର ଘଟଣାପରଠାରୁ ଏ ଝିଅଟି ପ୍ରତି ସ୍ନେହ ଜାତ ହୋଇଥିଲା ତା ମନରେ; ମା'ର ସ୍ନେହ, ଆଦର, ସେବା କଣ ସେ ଜାଣିନି । ସେଇ ସେବା ଓ ସ୍ନେହରୁ ବଞ୍ଚିତ ଯେଉଁ ବାଳକାଟି, ତା ପ୍ରତି ଗଭୀର ମମତା ରହିବା ଉଚିତ । ମଞ୍ଜୁକୁ ପାଠକୁ ଡାକି ଟିକିଏ ଆଦର କଲା ସେ ।

ଛୁଟି ଘଣ୍ଟା ବାଜିବା ପରେ ମୁହଁ ହାତ ଧୋଇ ନିଜ ଘରଟିରେ ସେ ବସିଛି, ସ୍କୁଲର ପରିଚାରିକା ଆସି ଖବର ଦେଲା—ଜମିଦାର ବାବୁଙ୍କ ଲୋକ ଗାଡ଼ି ନେଇ ଆସିଛି ତାକୁ ନେବା ପାଇଁ । କଥାଟା ଶୁଣି ବିରକ୍ତିରେ ଭ୍ରୂକୁଞ୍ଚିତ କଲା ସେ । ଚଟି ଦୁଇଟା ପାଦରେ ଗଳାଇ ବାହାରକୁ ଆସିଲାକ୍ଷଣି ଡ୍ରାଇଭରଟି ବଢ଼ାଇଦେଲା ଛୋଟିଏ ଚିଠି । ସଂକ୍ଷିପ୍ତ ଚିଠି—ଶିକାର ସାରି ଏଇକ୍ଷଣି ସେମାନେ ଆସି ପହଞ୍ଚିଛନ୍ତି । ବେଡମିନ୍‌ଟନ୍ ଖେଳିବାର ଆୟୋଜନ ହେଉଛି, ସ୍ମିତା ଯିମିତି ଦୟା କରି ନିମନ୍ତ୍ରଣ ରକ୍ଷା କରେ ।

ସୌଭାଗ୍ୟବଶତଃ ସ୍କୁଲର ଛମାସିକା ପରୀକ୍ଷା ଚାଲିଥିଲା, ଖାତାଗୁଡ଼ିକ ଦେଖିବାର କାରଣ ଦର୍ଶାଇ ସିବାକୁ ଅସ୍ୱୀକାର ଜଣାଇ ଗାଡ଼ି ଫେରାଇଦେଲା ସେ ।

ସମସ୍ତ ରାତି ସାଢ଼େ ଛଅଟା କି ଆଠଟା ହେବ । ନିଜ ଘରେ ଗ୍ଲୋବ ଟେବୁଲଟି ସାମନାରେ ବସି ନିଜର ନିର୍ଦ୍ଦିଷ୍ଟ କାର୍ଯ୍ୟଗୁଡ଼ିକ ସାରିବାରେ ବ୍ୟସ୍ତ ଥିଲା ସେ; ହଠାତ୍ କେତେଗୁଡ଼ିଏ ଚଟିର ଏକଜାତି ଚଟ୍‌ପଟ୍ ଚଟ୍ ଶବ୍ଦ ଶୁଣି ଚୌକି ଛାଡ଼ି ଠିଆହେଉ ନ ହେଉଣୁ ଘରେ ପ୍ରବେଶ କଲେ ସୁକୁମାର ବାବୁ । ତାଙ୍କ ପଛରେ ରଞ୍ଜନ ଓ ମୀନକେତନ । ସେମାନଙ୍କ ପଛରେ ପରିଚାରିକା ଓ ଜଗୁଆଳ ଦୁହେଁ ମିଶି ଚୌକି ତିନୋଟି ନେଇ ପହଞ୍ଚିଲେ ।

ମନେ ମନେ ବିରକ୍ତ ହେଲେ ବି ମୁହଁରେ ବାଧ୍ୟ ହୋଇ ସୌଜନ୍ୟ ପ୍ରକାଶ କରିବାକୁ ପଡ଼ିଲା ସ୍ମିତାକୁ । ସୁମିତା ଓ ମାଳତିକୁ ପହଞ୍ଚାଇଦେବାକୁ ଆସିଥିଲେ ସେମାନେ । ଅନେକ କ୍ଷଣ ବସି ଗପସପ କରିବାକୁ ଲାଗିଲେ—ଅଧିକାଂଶରେ ସ୍କୁଲର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ନେଇ । ଗୋଟିଏ କଥା ଦେଖି ସ୍ମିତା ଆଶ୍ଚର୍ଯ୍ୟ ଅନୁଭବ କଲା ଯେ କାଲିର ଚପଳ୍ୟ ଆଜି ନାହିଁ ସେମାନଙ୍କ କଥା ଭାଷାରେ । ସେମାନଙ୍କ ସୁସଂଯତ ବ୍ୟବହାରରେ ସ୍ମିତା ଏତେ ମୁଗ୍ଧ ହୋଇପଡ଼ିଲା ଯେ ଥରକ ପାଇଁ ସେ ଅନୁତାପ ମଧ୍ୟ କଲା କାଲି ରଞ୍ଜନକୁ ଦେଇଥିବା ଆଘାତ କଥା ଭାବି ।

× × × ଗାଡ଼ିରେ ଫେରିଲାବେଳକୁ କଥା ଆରମ୍ଭ କଲେ ସୁକୁମାର ବାବୁ, 'ରଞ୍ଜନ, ଜୀବନରେ ତୁ ଇମିତି ଅଦ୍ଭୁତ ଝିଅର ସଂସ୍ପର୍ଶରେ କେବେ ଆସିଛୁ ?'

ସିଗାରେଟ୍ ଧୂଆଁ ମୁହଁବାଟେ ବାହାର କରି ରଞ୍ଜନ କହିଲା, "ଗଣ୍ଡା ଗଣ୍ଡା । ମୋର ଏ ଚବିଶ ବର୍ଷର ଜୀବନରେ ଇମିତି କେତେ ସତୀସାଧ୍ୱୀ ଦେଖିଛି । ଗୋଟାଏ ଫଣ୍ଡା-ମେଣ୍ଟାଲ୍ (fundamental) କଥା ତୁ ଧରିନେଉନୁ ? ଆରେ ଯିଏ ଘରଛାଡ଼ି ଆସିଛି ସେ ନିଷ୍ଟୟ ଥରେ ଅନ୍ତତଃ ପାପ କରିଛି ତ ? ବିନା କଳଙ୍କରେ ଭଦ୍ର ଘରର ଝିଅ ବାହାରକୁ

ଆସେନା । ନାସ୍, ଏଥିରୁ କ ସେମାନଙ୍କର ସାଧୁତା ପ୍ରମାଣିତ ହୋଇଯାଉନ ? ···
ଆରେ...ଆଖିରେ ଧୂଳି ଦେବାକୁ ଏକ ମାତ୍ର ଧରନ୍ତି ସେମାନେ, ବୁଝିଲୁ ?

ସ୍ତ୍ରୀ କଥା ଗ୍ରନ୍ଥ—ଏବେ କେଉଁ ସ୍ତ୍ରୀଲୋକଟା ଗୋଟାଏ ଭଲ ଶୁଣେ । ସେ ସତୀ-
ସାବିତ୍ରୀ ଯୁଗ ଗଲାଣି । ଦେଖିନୁ....ଆଜି ଆଗରେ ରହି ଦେବାକୁ···ସେ ଜଣେ ସୋସାଇଟି
ଲେଡ଼ି....' ହସି ହସି ବେଦମ୍ ହୋଇଗଲା ରଞ୍ଜନ । ପୁଣି କଥା ଆରମ୍ଭ କଲା, 'ସେଥର ତ
ତତେ ବମ୍ବେରେ କେତେ ଇମିତ ସୋସାଇଟି ଭଦ୍ର ମହିଳାଙ୍କ ସଙ୍ଗେ ପରିଚୟ କରାଇ
ଦେଇଥିଲି...' ପୁଣି ହସିଲା ସେ ।

ସିଗାରେଟ୍‌ର ପାଉଁଶ ଝାଡ଼ୁ ଝାଡ଼ୁ ଗୋଟାଏ ହାତରେ ଷ୍ଟିଅରିଂ ଧରି କହିଲା
ମୀନକେତନ, ''ସଲା ଯା, ଅଶ୍ଳୀଳଟା ଏବେ କଣ ଭଲଥିଲାକରେ ? ସବୁବେଳେ ମାଇପି-
ଗୁଡ଼ାକ ସେଇଆ ! ହଁ, କେଉଁଠି କେମିତି ଗୋଟାଏ ଦୋଟାଏ ସତୀ ସାବିତ୍ରୀ ଥିଲେ
ଅବଶ୍ୟ; କିନ୍ତୁ କୁନ୍ତୀ ଦ୍ରୌପଦୀ ଭଳି ମହିଳାଙ୍କର ବି ଅଭାବ ନଥିଲା । ତେବେ ହଁ,
ସେବର ସେ ସମାଜକୁ ତାରିଫ କରିବାକୁ ହେବ—ପାଞ୍ଚ ପାଞ୍ଚଟା ସ୍ୱାମୀ ଥାଇ ମଧ୍ୟ
ସେମାନଙ୍କୁ ସତୀ ଆଖ୍ୟା ଦିଆଯାଇଥିଲା....''

'କଥାଟେ ଭଲ କଥାଟେ କହିଲା ମୀନକେତନ···' ହୋ ହୋ ହୋଇ ହସିଉଠି
ସୁକୁମାର ବାବୁ କହିଲେ; କିନ୍ତୁ ବର୍ତ୍ତମାନର ସମସ୍ୟା ହେଉଛି—ଆମ ଦ୍ରୌପଦୀଙ୍କୁ ସେ
ଜନ୍ତୁଟା ବୁଝାଇପାରିଲେ ତ...'

ନାଳ କରି ଓଠ ଦୁଇଟା ମଝିରେ ସିଗାରେଟ୍‌ଟାକୁ ଚପି ଧରି କହିଲା ରଞ୍ଜନ, 'ସିଧା
ଆଙ୍ଗୁଳିରେ ଘିଅ ଉଠେନି, ବୁଝିଲୁ ସୁକୁମାର, ଏଥିପାଇଁ ଆମକୁ ଗୋଟାଏ ପରିକଳ୍ପନା
ତିଆରି କରିବାକୁ ପଡ଼ିବ....'

''ବାବାରେ...ଯିମିତି ଚାଣକ୍ୟ ଓ ଟେକ୍ନିସିଆନ୍ ଥିଅଛି, ସେ କଣ ସହଜରେ ଧରାଦବ,
ନା ?' କହିଲା ମୀନକେତନ ।

ବାହାର ଜଗତ ସମ୍ବନ୍ଧରେ ଧୀରେ ଧୀରେ ସ୍ମିତାର ଜ୍ଞାନ ଉନ୍ମେଷ ଲାଭକରିଆସୁଥିଲା
ସତ; କିନ୍ତୁ ଏ ପର୍ଯ୍ୟନ୍ତ ଜ୍ଞାନ ତାର ଆଦ୍ଧାର ସେହି ପରିସରକୁ ସମ୍ପୂର୍ଣ୍ଣ ପାରି ନଥିଲା, ଯେଉଁଠିକି
ସେ ଜାଣିପାରନ୍ତା—ଏ ଦୁନିଆରେ ଠାଏ ଠାଏ ଭଦ୍ରତା ଓ ସୌନ୍ଦର୍ଯ୍ୟର ମୁଖୋସ୍ ତଳେ
ଶଇତାନ ତାର ସମସ୍ତ ଭୟାନକତା ଓ ବୀଭତ୍ସତାକୁ ଧରି ଲୁଚିରହିଥାଏ । ଜାଣିନଥିଲା
—ଭଲ ହେଉ୍‌ ମନ୍ଦ ହେଉ, କାହାକୁ ସହଜରେ ବିଶ୍ୱାସ କରିଯିବାଟା ହେଉଛି ମଣିଷର
ସବୁଠାରୁ ବଡ଼ଧରଣର ମୂର୍ଖାମି ।

× × ସେଦିନ ଛୁଟିଘଣ୍ଟା ବାଜିବାର କିଛି ସମୟ ପରେ କ୍ଲାସରୁ
ବାହାରି ଦୀର୍ଘ ସ୍କୁଲ ବାରଣ୍ଡା ଅତିକ୍ରମ କରି ଯାଉଥିଲା ସ୍ମିତା । ହଠାତ୍ ପଛପଟୁ ଶୁଣିଲା

ଗୋଟିଏ କ୍ଷୀଣ ସ୍ୱର, 'ଗୁରୁମା' । ଚମକି ପଡ଼ିବା ପରି ଦେଖିଲା—ବାରଣ୍ଡା ଧାରରେ ଥିବା-ଖମ୍ବ ଆଡୁଆଳରେ ଝିଅଟି ଠିଆହୋଇଛି । ଯିମିତି ଡାକଦେଇ ଲୁଚିଯିବାକୁ ଚେଷ୍ଟା କରୁଛି ସେ । ଦି' ପାହୁଣ୍ଡ ପଛକୁ ଦେଖିଲା—ଗୌରୀ ଠିଆହୋଇଛି । ମଞ୍ଜୁର ଶ୍ରେଣୀର ଏହି ଛାତ୍ରୀଟି ତାର ଅତି ପ୍ରିୟ, କାରଣ ଅତି ବୁଦ୍ଧିମତୀ । ଯେତେବେଳେ ମଝିମଝିରେ ସେ ଯେଉଁ ଶ୍ରେଣୀରେ ନିଜେ ପଢାଉଛି କିମ୍ବା ପରୀକ୍ଷା କରୁଛି, ଏଇ ଝିଅଟିର ବୁଦ୍ଧିର ପ୍ରଖରତା ତାକୁ ମୁଗ୍ଧ କରିଦେଇଛି । ଆଜି ସକାଳେ ତ ତା'ଠାରୁ ଚମତ୍କାର ଉତ୍ତରଟିଏ ଶୁଣି ଆଗ୍ରହାତିଶଯ୍ୟରେ ନିଜ ପାଖକୁ ଟାଣିଆଣି ତା ମୁଣ୍ଡରେ ହାତ ବୁଲାଇଦେଇଥିଲା । ଗୌରୀ ପ୍ରତି ଆଗ୍ରହ ରହିବାର ଆଉ ଗୋଟିଏ କାରଣ ବି ଅଛି; ନିଜର ଉଦ୍ୟମରେ ହିଁ ସେ ଅସ୍ପୃଶ୍ୟ ଜାତିର ଝିଅ କେତୋଟି ସ୍କୁଲକୁ ଆସିବାର ବନ୍ଦୋବସ୍ତ କରାଇଥିଲା ଅବଶ୍ୟ ସୁକୁମାରବାବୁଙ୍କୁ ଅନୁରୋଧ କରି । ଜନ୍ଧିଆନାଙ୍କ ଛାତ୍ରୀ ଥିଲାବେଳେ ତା ମନରେ ଯେଉଁ କେତୋଟି ବାସନା ଜାତ ହୋଇଥିଲା, ଅସ୍ପୃଶ୍ୟତା ନିବାରଣ ହେଉଛି ତହିଁ ମଧ୍ୟରୁ ଗୋଟିଏ । 'ମତେ ଡାକିଲୁ ଗୌରୀ ?' ପାଖକୁ ଯାଇ ପଚାରିଲା ସେ । କିନ୍ତୁ ଗୌରୀ ମୁହଁଟି ତଳକୁ କରି ଚୁପ୍ ହୋଇରହିଲା । 'କିଲେ କଥା କହୁନୁ ? କାହିଁକି ଡାକିଲୁ ଶୁଣେ ?" ତେବେ ବି ଗୌରୀ ନୀରବ ରହିଲା ।

'ଯୁନାଝିଅ ପରା...କହ....ଏତେ ସଙ୍କୋଚ କରିବାର କଣ ଅଛି ଯେ ? କଣ ଦରକାର ଶୁଣେ' । ଆଦରରେ ତା ମୁଣ୍ଡ ଉପରେ ହାତ ରଖିଲା ସେ ।

ଏଥର ଟିକିଏ ସାହସ ସଂଗ୍ରହ କରି ଝିଅଟି କହିଲା—ଗୁରୁମା, ମୋ ମା'ର ଦେହ ବଡ଼ ବେମାର ...'

'କଣ ହେଇଛି ?'

'ଜର ହେଇଛି । କେତେ ଦିନ ହେଲା ହେଲାଣି । କିଛି ଖାଇପାରୁନି....ବାନ୍ତି କରୁଛି ।'

'ଘରେ କଣ ଆଉ କେହି ନାହାନ୍ତି ?'

'ନା...'

'ବାପା ?

'ବାପା ମୋର ନାହିଁ ଗୁରୁମା, ମରିଯାଇଛି...'

'ଓ...'ଅପ୍ରସ୍ତୁତ ହୋଇଗଲା ସିଏ ତା ।

'ତମେ ଟିକେ ଭଲ ଓଷ ଦେଇପାରିବନି ଗୁରୁମା ?'

କ୍ଷୁଦ୍ର ଶିଶୁର ଏ ସରଳ ପ୍ରଶ୍ନରେ ବ୍ୟଥିତ ହୋଇଗଲା ତା ଅନ୍ତର । 'ମୁଁ କଣ ଡାକ୍ତର ହେଇଛି, ମା ?'

ଲୁହ ଛଳ ଛଳ ଆଖି ଦୁଇଟି ଉଠାଇ ଅବିଶ୍ୱାସ କରିବା ଭଙ୍ଗୀରେ ବାଳିକା କହିଲା, "ତମେ ଏତେ ପାଠ ପଢ଼ିଛ ଗୁରୁମା, ଔଷ ଦେଇପାରିବନି କାହିଁକି ?"

ଏ ପ୍ରଶ୍ନରେ ପ୍ରକୃତରେ ଦୁଃଖ ଜାତହେଲା ସ୍ନିଗ୍ଧାର । ତିକିଏ ଭାବି ଗୌରୀକୁ ଆଶ୍ୱାସନା ଦେଇ କହିଲା ଯେ, "ଆଚ୍ଛା, ତୁ ଟିକିଏ ଠିଆ ହେଇଥା ଏଠି, ମୁଁ ମୁହଁ ହାତ ଧୋଇ ଆସେ, ତୋ ସଙ୍ଗେ ଯାଇ ମା'କୁ ତୋର ଦେଖିଆସିବି ।"

ସ୍ନିଗ୍ଧାର ଏ ପ୍ରସ୍ତାବକୁ ବିଶ୍ୱାସ କରିପାରିଲା ନାହିଁ ଗୌରୀ, ସେଥିପାଇଁ ତା ମୁହଁରୁ ଆପେ ଆପେ ବାହାରି ପଡ଼ିଲା, "ମତେ ଠକେଇ ଦଉଚ ଗୁରୁମା ?"

ସସ୍ନେହରେ ତାର ଗାଲ ଦୁଇଟାକୁ ଚିପିଦେଇ ସ୍ନିଗ୍ଧା କହିଲା, 'ନାଇଁମ...ସତ ।'

'ତମେ ଆମ ଘରକୁ ଯିବ ?'

'ହଁ ପରା, ତୋ ମାକୁ ଟିକେ ଦେଖିଆସିବି ।'

'ହେଲେ....ହେଲେ...'ଢୋକ ଗିଳି ଗୌରୀ କହିଲା, 'ଆମ ଘର ତ ମନ୍ତ୍ରୀଘର ଭଳି ବଡ଼ଘର ନୁହେଁ । ନାଇଁ ନାଇଁ ଗୁରୁମା, ତମେ ଯାଅନି, ବଡ଼ ଅସନା ଜାଗା ।'

ତାର ଶ୍ରେଷ୍ଠ ମଥାଟିକୁ ହଲାଇ ହଲାଇ ପ୍ରତିବାଦ ଜଣାଇଲା ସେ । କହିଲା, 'ତମେ ଖାଲି ଔଷ ଟିକେ ଦିଅ, ମୁଁ ନେଇଯିବି । ମତେ ବତେଇଦେଲେ—କେତେ ପାନ ଔଷ ଦବାକୁ ହବ-ମୁଁ ଦେଇଦେବି ଯେ...'

ସ୍ନିଗ୍ଧା କହିଲା, 'କଣ ବେମାରି ହେଇଚି ଆଗ ନ ଜାଣିଲେ ଔଷ କମିତି ଦେବି ଗୌରୀ ? ଭଲ ବୋକା ଝିଅଟେ ତ....'

ସେତେବେଳକୁ ଆନନ୍ଦିତ ହେବା ପରିବର୍ତ୍ତିରେ ବିଷଣ୍ଣ ହୋଇଯାଇଥିଲା ଗୌରୀର ଛୋଟିକ ମୁହଁଟି ।

ସ୍ନିଗ୍ଧା ପ୍ରସ୍ତୁତ ହୋଇ ବାହାରି ପଡ଼ିଲା । ସାଙ୍ଗରେ କେବେବେଳେ ବାଟରେ ଆଉ ଗୋଟାଏ ଦେଲେ କଥା କହିପାରିଲାନି ଗୌରୀ । ନଈ କୂଳେ କୂଳେ ଯେଉଁ ରାସ୍ତାଟି ଯାଇଛି ସେଥିରେ ଗା କୋଡ଼ିଏ ପ୍ରାୟ ଝଣ୍ଟେ ଦୂର ଗଲେ ଅସ୍ପୃଶ୍ୟମାନଙ୍କର ଶ୍ରେଷ୍ଠ ପଲ୍ଲୀଟି । ସାମାନ୍ୟ କେତେଟା ଘର ଲାଗାଲାଗି ହୋଇ ରହିଛି । ସ୍ନିଗ୍ଧା ଭାବୁଥିଲା ଓ ଦେଖୁଥିଲା ସ୍ଥାନଟିର ସ୍ନିଗ୍ଧ ସୌନ୍ଦର୍ଯ୍ୟ । ଆସିଲାଠାରୁ କେବେହେଲେ ଦିନେ ବାହାରକୁ ବାହାରିନି ଯେ । ବୁଲିବାକୁ ଯେତେବେଳେ ଇଚ୍ଛାହୋଇଛି ସ୍କୁଲ ପାଖ ଖେଳପଡ଼ିଆଟିରେ ଟିକେ ବୁଲିଛି । ଅବଶ୍ୟ ଅନ୍ୟ ଶିକ୍ଷୟିତ୍ରୀମାନେ ବରାବର ସାନ୍ଧ୍ୟଭ୍ରମଣରେ ଯାଆନ୍ତି । ସେମାନେ କହୁଥିବାରୁ ସେ ଶୁଣିଛି ଯେ ଗ୍ରାମର ଏ ଦିଗଟି ଅତି ସୁନ୍ଦର । ବିସ୍ତୃତ ପ୍ରାନ୍ତର । ଦୂରଦିଗନ୍ତରେ କୃଷ୍ଣ ସବୁଜ ବନାନୀର ରେଖା ତରଙ୍ଗାୟିତ ଭଙ୍ଗୀରେ ଯେପରି ସୃଷ୍ଟି କରିଛି ପ୍ରକୃତିର ଅନବଦ୍ୟ ରୂପ । ନଦୀ ଆରପାରିରେ ବିସ୍ତୃତ ଧାନକ୍ଷେତ । ଧାନକଟା ସରିଛି, ରହିଛି

କେବଳ ରୁକ୍ଷ ମୂଳଗୁଡ଼ିକ । ତାର ଡାହାଣପଟକୁ ବରାବର ଆମ୍ବତୋଟାଟିଏ । ଏପଟେ ବି ଖଣ୍ଡା କଡ଼େ କଡ଼େ ଧାନକ୍ଷେତ । ଦୂରରେ ଦୂରରେ କେଉଁଠି କେଉଁଠି ଛଣ ସବୁ ରଖାଯାଇଛି ଗଦା କରି ସମସ୍ତ ସୁବିଧା ଦେଖି ଚାଷୀମାନେ ନିଜ ନିଜ ଘରକୁ ବୋହି-ନେବେ । ବହୁତ ଦୂରରେ ସେଇଁ ପର୍ବତଟି ଦିଶୁଛି ତାର କୋଳକୁ ଆଉଜି ଠିଆ-ହୋଇଥିବା କେତୋଟି କୁଡ଼ିଆଘରୁ ଧୂଆଁ ଉଠୁଛି ଉପରକୁ କୁଣ୍ଡଳୀକୃତ ହୋଇ ।

ମନୋମୁଗ୍ଧକର ଏହିସବୁ ଦୃଶ୍ୟ ଦେଖି ଯାଉ ଯାଉ ଗୌରୀର ପଡ଼ାରେ ଉପସ୍ଥିତ ହେଲ ସେ, ଆଉ ଉପସ୍ଥିତ ହେଲାକ୍ଷଣି ସାଙ୍ଗେ ସାଙ୍ଗେ ତାକୁ ଘେରିପକାଇଲେ କେତୋଟି ବିସ୍ମିତ ସ୍ତ୍ରୀ ଓ ପୁରୁଷ । ଏଭଳି ଅଭାବିତ ଘଟନା ସେମାନେ ତାଙ୍କ ଜୀବନରେ ଦେଖି-ନାହାନ୍ତି । ହଠାତ୍ ଏତେଗୁଡ଼ିଏ ଲୋକଙ୍କର ସମ୍ମୁଖୀନ ହୋଇ ଅପ୍ରସ୍ତୁତ ଓ ଲଜ୍ଜିତ ଅନୁଭବ କଲା ସ୍ମିତା । ଗୌରୀ ତ ଏକାବେଳେ କାଠ ପାଲଟିଯାଇଛି ଯିମିତ । କୌଣସି-ମତେ ଅପ୍ରସ୍ତୁତ ଭାବଟା କଟାଇ ସ୍ମିତା ଯେତେବେଳେ କହିଲା, 'କାହିଁ ତୋ ଘରଟା କେଉଁଠି ଦେଖେଇଲୁ...ମତେ ଚଞ୍ଚଳ ଫେରିଯିବାକୁ ହବ ସେ...'

ଗୌରୀ ନୀରବରେ ଆଙ୍ଗୁଠି ଦେଖାଇଲା ଗୋଟିଏ ନୁଆଁଣିଆ କୁଡ଼ିଆ ଆଡ଼କୁ । ମୁଣ୍ଡଟିକୁ ଯଥାସାଧ୍ୟ ତଳକୁ କରି ଝଟକିନା ସେ ଘର ଭିତରକୁ ପଶିଗଲା ସ୍ମିତା । ପ୍ରଥମେ ତ ଆଲୁଅରୁ ଅନ୍ଧାର ଭିତରକୁ ଯାଇଥିବାରୁ କିଛି ଦେଖିପାରିଲା ନାହିଁ, ତାପରେ ଆସ୍ତେ ଆସ୍ତେ ଆଖି ଅଭ୍ୟସ୍ତ ହେବାରୁ ଦେଖିଲା—ମାଟି ଚଟାଣ ଉପରେ ମଇଳା କନ୍ଥାଟିଏ, ତା ଉପରେ ଶୋଇରହିଛି ଗୋଟିଏ ନାରୀ, ନା ନାରୀ କହିଲେ ଭୁଲ୍ ହେବ, ଗୋଟିଏ କଙ୍କାଳ । ମଇଳା ଶତଛିନ୍ନ ଲୁଗାଟିଏ ପଡ଼ିଛି ତା ଉପରେ । ସେ ଘୁମେଇଛି କି ନାହିଁ ଦେଖିପାରିଲାନି ସ୍ମିତା । ଗୋଟାଏ କଣକୁ ଚୁଲିଟିଏ ଓ ତା ପାଖରେ ଗଡ଼ୁଛି ଦୋଟା ମାଟିହାଣ୍ଡି । ଟିଣ କଂସା ଖଣ୍ଡିକ ଉପରେ ଭଙ୍ଗା ଟିଣଆଳୀଟା ରଖି ଘୋଡ଼ଣ ଘୋଡ଼ା ହୋଇଛି । ଆଉ ଗୋଟିଏ କଣକୁ ଗଉରୀର ସମ୍ପଦଗୁଡ଼ିକ—କେତୋଟା ବହି ଆଉ ଭିଡ଼ିଟିଏ । ସ୍ମିତା ଘରଆଡ଼ର ପରିବେଶକୁ ଦେଖିଲା ପରେ ପୁଣି ରୋଗିଣୀ ଆଡ଼କୁ ଚାହିଁଲା— ନିଷ୍ପନ୍ଦ ଦେହଟିକୁ ଚାହିଁ ତାର ଭୟହେଲା—ସ୍ତ୍ରୀଲୋକଟି ବଞ୍ଚିଛି ତ ?

ଏ ଦୃଶ୍ୟ ବି ସମ୍ପୂର୍ଣ୍ଣ ନୂଆ ତା ଆଖିକୁ । ବହିମାନଙ୍କରେ ସେ ପଢ଼ିଛି ଅବଶ୍ୟ ଦାରିଦ୍ର୍ୟର ବର୍ଣ୍ଣନା, କିନ୍ତୁ ଆଖିଆଗରେ ଦେଖିନି କେବେ । ଦାରିଦ୍ର୍ୟ ମଣିଷକୁ କେଡ଼େ ଅସହାୟ କରିଦିଏ ସତେ ! ମା ପାଖରେ ପଶିହୋଇ ବସିପଡ଼ି ଗୌରୀ ଡାକିଲା, "ମା— ମା ଆଲୋ" । ଜଡ ଦେହରେ ଜାଗିଲା କ୍ଷୀଣସ୍ପନ୍ଦନ । କ୍ଷୀଣକଣ୍ଠରେ ନାରୀଟି କହିଲା, "ଗଉରୀ...ଆଇଲୁ କଲେ ମା । ଇସ୍କୁଲ୍‌ରୁ ଛୁଟି ହେଇଗଲା ?"

"ଗୁରୁମା ତତେ ଦେଖିବାକୁ ଆସିଚନ୍ତି ।"

"କଣ କହିଲୁ ?" ସେ ବୁଝିପାରିଲାନି ।

"ଗୁରୁମାଙ୍କୁ ହାତରେ ଆଣିଚ, ତତେ ଦେଖି ଔଷ ଦେବେ ।"

"କିଏ ? ବଇଦ ଆଇଚନ୍ତି ?"

"ନାଇଁଲୋ"—ଗଉଣି ଟିକିଏ ହାଟିକିରି କହିଲା, "ଆମ ଇସ୍କୁଲର ମାଷ୍ଟ୍ରାଣୀ ପରା, ସେଇ ବଡ଼ ଗୁରୁମାଙ୍କ କଥା ତତେ କହୁନଥିଲି ? ସେ ଆସିଚନ୍ତି ।"

ଏଥର ରୋଗିଣୀ ଆଖିଦୁଇଟି ଖୋଲି ସ୍ମିତା ଆଡ଼କୁ ଚାହିଁଲା, ଯେପରି ଚାହିଁଲା ଧଡ଼ପଡ଼ହୋଇ ଉଠିବସିବାକୁ, କିନ୍ତୁ ପରେ ତାହା ଅସମ୍ଭବ ଜାଣି କହିଲା ଖାଲି ତୁଣ୍ଡରେ, "କୁହାର ହଉଚ ମା, ସେଇ ବାହ୍ମାଣୀଟା ତମକୁ ଆଣି ଏ ଘର ଭିତରେ ଠିଆ କରେଇ ଦେଇଚ ! ବଡ଼ ଧନ୍ଦ ହେଇଗଲାଣି ସତରେ, ଦୁ'ମାସ ଉପରେ ହେଇଗଲାଣି ବାଧିକ ପଡ଼ି । ଟିକେ ଭଲ ଔଷ ଥିଲେ ହଅନ୍ତା ହେଲେ···ଆଉ କିଛୁନାହିଁ...ମୁଁ ମରିଗଲେ ଏ ଝିଅଟାକୁ କିଏ ଦେଖିବ···?"

ତାର ଆଖିକୋଣରୁ ଦୁଇଧାର ଲୁହ ଗଡ଼ିପଡ଼ିଲା । ଦୁଆର ମୁହଁରେ ସେତେବେଳକୁ ଠୁଳ ହୋଇଗଲେଣି ସାହିର ଲୋକେ । ବୁଢ଼ୀଟିଏ ବାହାରି କହିଲା, "ସତରେ ସାଆନ୍ତାଣୀ, କି ଭୂତପ୍ରେତ ଧଇଲା ଯେ କେତେ ଗୁଣିଆ କଲୁ, ଔଷ କଲୁ, କାହିଁରେ କିଛି ହେଲାନି । ଦୁମାସ ହେଲା ତୋରାଣୀ ମୁଠାଏ ନହେଲେ ପେଜ ଟିକିଏ ଖାଇ ଏତେ ବଡ଼ ମଣିଷଟା କଡ଼ଲଗା ହେଇଗଲା । ପିଲାଟା ଆଜି ମୋ ଘରେ, କାଲି ତା ଘରେ ମୁଠାଏ ମୁଠାଏ ଖାଇ ପଡ଼ିଚି । କଣ ହବ ? କଣ ସେ କରିବ ?"

କଣ ହେବ ସତରେ ? ସ୍ମିତା ନିଜେ ନିରୁପାୟ । ଖାଲି ଶୁଖିଲା ସହାନୁଭୂତି ଆଉ ବଡ଼ ଜୋର୍‌ରେ କେତେଟା ଟଙ୍କା ଦେଇପାରନ୍ତି ସେ । କିନ୍ତୁ ଏ କ୍ଷେତ୍ରରେ ଆବଶ୍ୟକ ସୁଚିକିତ୍ସା, ଆବଶ୍ୟକ ଜଣେ ଭଲ ଚିକିତ୍ସକ, ଜଣେ ଦୟାଳୁ ଚିକିତ୍ସକ । ଚିକିତ୍ସକ କଥାଟି ମନେପଡ଼ିବା ସଙ୍ଗେ ସଙ୍ଗେ ବିଦ୍ୟୁତ୍‌ଗତିରେ ମନେପଡ଼ିଲା ତାର ଗୋଟିଏ ମୁହଁ, ଦୁଇଟି ବୁଦ୍ଧି ଦୀପ୍ତ, ଦୟା ଓ କରୁଣାରେ ପରିପୂର୍ଣ୍ଣ ଉଜ୍ଜ୍ୱଳ ଆଖି । ଆଃ, ଆଜି ଏଠାରେ ଯଦି ସୁବ୍ରତ ଥାଆନ୍ତା ! ଦୀନ ଦୁଃଖୀଙ୍କ ସେବାପାଇଁ ସବୁବେଳେ ଆଗ୍ରହୀ ସେ ।

କେତେ ମୁହୂର୍ତ୍ତପାଇଁ ସ୍ମିତା ସ୍ଥାନ କାଳ ପାତ୍ର ସବୁ ଭୁଲିଗଲା ।

ସ୍ମିତାକୁ ନୀରବ ଦେଖି ସମସ୍ତେ ନୀରବ ହୋଇଯାଇଥିଲେ । ହଠାତ୍ ସେ ନିସ୍ତବ୍ଧତା ଉପଲବ୍ଧିକରି ବାସ୍ତବକୁ ଫେରିଆସିଲା ସ୍ମିତା । ପଚାରିଲା, "ଗାଁ କବିରାଜଙ୍କଠୁ ଔଷଧ ଦେଇଛ ?"

"ହଁ ମା, ଭଲହେଲାନି ସେଥିରେ, ପଇସା କେତେ ଅକାରଣରେ ଗଲା ।" ସେହି ବୁଢ଼ୀଟି କହିଲା ।

"ଆଚ୍ଛା, ମୁଁ ଦେଖେ କଣ ଯଦି ବ୍ୟବସ୍ଥା କରିପାରିବି..."

ଅନ୍ଧାରୁଆ ନୁଆଣିଆ ଘର ଭିତରେ ଠିଆହୋଇ ରୁନ୍ଧିହେଲାଭଳି ଲାଗୁଥିଲା ତାକୁ । ବାହାରକୁ ବାହାରି ଆସିଲା ସେ । ଶୀତଦିନର ବେଳ, ସୂର୍ଯ୍ୟ ପ୍ରାୟ ବୁଡ଼ିଗଲେଣି କହିଲେ ଚଳେ, ଏଇକ୍ଷଣି ମାଡ଼ିଆସିବ ଅନ୍ଧାର । ବୋଧେ ଭାବାବେଗର ବଶବର୍ତ୍ତୀ ହୋଇ ସେ ଗୌରୀ ସଙ୍ଗେ ଚାଲିଆସିଥିଲା ସତ, କିନ୍ତୁ ଫେରିବା ବିଷୟରେ ତାର ଆଦୌ ଖିଆଲ ହୋଇନି । ଏଠୁ ଯାଇ ସ୍କୁଲ ପାଖରେ ପହଞ୍ଚିଲାବେଳକୁ ନିଶ୍ଚୟ ରାତି ହୋଇଯିବ ସେଥିରେ ସନ୍ଦେହ ନାହିଁ । ଥରେ ଭାବିଲା—ଅନୁରୋଧ କରିବ ଏମାନଙ୍କ ଭିତରୁ ଜଣେ କେହି ସ୍ତ୍ରୀଲୋକଙ୍କୁ ତା ସହିତ ଯିବାକୁ । କିନ୍ତୁ କାଳେ ଭୂତ ଭୟରେ ସେମାନେ ଅସ୍ୱୀକାର କରିବେ କି କଣ ବିଚାରି ଆଉ ସେକଥା ଜଣାଇପାରିଲାନି । ଗୌରୀକୁ ବ୍ୟସ୍ତ ନ ହେବାକୁ ଉପଦେଶ ଦେଇ ଦ୍ରୁତଗତିରେ ଫେରିଲା ସେ । ରାସ୍ତା ଏକାବେଳକେ ନିର୍ଜନ । 'ଗୋଧୂଳିର ରକ୍ତାଭ ଆଲୋକ ମଳିନ ନିଷ୍ପ୍ରଭ ଦିଶୁଛି । ଅଣ୍ଟା ପଡ଼ିଗଲାଣି ଏବଠାରୁ । କାନିଟାକୁ ନିଜ ଦେହରେ ଭଲକରି ଗୁଡ଼ାଇଦେଇ ଯେତେ ଚଞ୍ଚଳ ପାରେ ପାହୁଣ୍ଡ ପକାଇ ଅଗ୍ରସର ହେବାକୁ ଲାଗିଲା ସେ; କିନ୍ତୁ ଅଳ୍ପଦୂର ଯିବା ପରେ ହଠାତ୍ ପଛରେ ଜୋତାର ମଚ୍ ମଚ୍ ଶବ୍ଦ ଶୁଣି ଆଶଙ୍କାରେ ପୂରିଗଲା ତା ମନଟା । ମୁହଁ ଫେରାଇ ଚାହିଁ ସେ କିନ୍ତୁ ଅପେକ୍ଷାକୃତ ଆଶ୍ୱସ୍ତ ହେଲା—ହାତର ସୌଖୀନ୍ ଶିଙ୍ଗବାଡ଼ିଟାକୁ ଘୁରାଇ ଘୁରାଇ ସୁକୁମାରବାବୁ ଆସୁଥିଲେ ! ନିଶ୍ଚୟ ତାଙ୍କର ସାନ୍ଧ୍ୟଭ୍ରମଣ ଶେଷକରି ଆସୁଥିଲେ ସେ । ନମସ୍କାର ଜଣାଇଲା ସ୍ମିତା । ସ୍ମିତାକୁ ସେ ସମୟରେ, ସେ ସ୍ଥାନରେ ଏକାକୀ ଦେଖି ବିସ୍ମୟର ସୀମା ରହିଲାନି ସୁକୁମାରବାବୁଙ୍କର । ପ୍ରତିନମସ୍କାର ଜଣାଇଲା ପରେ ସେ ପଚାରିଲେ ମଧ୍ୟ ସେକଥା । ଚାଲୁ ଚାଲୁ ଗୌରୀ-ଘଟିତ କଥାସବୁ ଗୋଟି ଗୋଟି କରି କହିଲା ସ୍ମିତା, ଆଉ ଶେଷରେ ଟିକେ ଜୋରର କଲଭଳି କହିଲା ଯେ, ଯେଉଁ ଡାକ୍ତର ମଝି ମଝିରେ ସ୍ୱର୍ଣ୍ଣଲତାଙ୍କୁ ପରୀକ୍ଷା କରିବାକୁ ଆସନ୍ତି, ସେହି ଡାକ୍ତରଙ୍କୁ ଦୟାକରି ସୁକୁମାରବାବୁ ଆଣନ୍ତୁ । ସେ ଦେଖି ଗୌରୀର ମା'କୁ ଚିକିତ୍ସା କରିବେ । ତାର ସେ ପିଲାଳିଆ ମୁହଁଟିକୁ ମୁଗ୍ଧ ଦୃଷ୍ଟିରେ ଚାହିଁ ସୁକୁମାର କହିଲେ, 'ଆପଣ ସତେ କେଡ଼େ ସରଳ ସ୍ମିତାଦେବୀ ! କଳ୍ପନା ଓ ବାସ୍ତବ ଭିତରେ ଯେ ଆକାଶ ପାତାଳ ପ୍ରଭେଦ । ସେଠାରୁ ଯେ ଡାକ୍ତରଙ୍କୁ ଆଣାଇ ମୁଁ ଯଦି କହେ, ଗୌରୀର ମାଆକୁ ଚିକିତ୍ସା କରିବାକୁ, ସେ ମତେ ଉପହାସ କରିବେ ଅଚେତ୍ କହିବେ ମୋର ବୁଦ୍ଧି ବିଭ୍ରମ ଘଟିଛି । ସେ କୁଡ଼ିଆ ଭିତରକୁ ଆପଣ କମିତି ଯାଇପାରିଲେ, ତା ଆଶ୍ଚର୍ଯ୍ୟ । ଭାବିଛନ୍ତି ଡାକ୍ତର ରାଜି ହେବେ ସେ କୁଡ଼ିଆ ଭିତରକୁ ଯିବାକୁ ? କେବେ ନୁହେଁ, ବରଂ ଯଦି କହନ୍ତି, ଲୋକ ଦେଇ ରେଲ୍ ଗାଡ଼ିରେ ପଠାଇ-ଦେବି, ବାଲେଶ୍ୱର ସରକାରୀ ଡାକ୍ତରଖାନାରେ ଚେଷ୍ଟାକଲେ ଜାଗା ଦେଇପାରନ୍ତି ତାକୁ ।'

କାତର ଭାବରେ କହିଲା ସ୍ମିତା, 'ସେ କଣ ମାଆମାନ କଲା ଭଳି ଅବସ୍ଥାରେ ଅଛନ୍ତି ସୁକୁମାରବାବୁ ? ଏକାବେଳେ କଙ୍କାଳସାର ହୋଇପଡ଼ିଛନ୍ତି । ନେଉ ନେଉ ତ ତାର ଜୀବନ ଗୁଡ଼ିଯିବ । ବିଚାରୀ ଝିଅଟା, ସଂସାରରେ ଆଉ ତାର କେହି ନାହାନ୍ତି...' । ଆଖି ଦୁଇଟି ସଜଳ ହୋଇଗଲା ସ୍ମିତାର ।

'ଆପଣଙ୍କ ହୃଦୟ ତ ଦେଖୁଛି ଫୁଲଠାରୁ ନରମ...'

'ଖାଲି ମୁଁ ନୁହେଁ, ଆପଣ ବି ଯଦି ଦେଖନ୍ତେ ତାହେଲେ ନିଶ୍ଚୟ ବିଚଳିତ ଅନୁଭବ କରନ୍ତେ । ମୋର କଣ ମନେହେଲା ଜାଣନ୍ତି ସୁକୁମାରବାବୁ, ଆମ ଦେଶର—ଏଇ ଯେଉଁ ସୁନ୍ଦର ସହର ସବୁ, ବଡ଼ ବଡ଼ କଳକାରଖାନା, ସୁସଜ୍ଜିତ ରାଜଧାନୀ ଏ ସବୁ ଖାଲି ତାର ବାହାରର ଚକଚକ୍ୟଭରା ପୋଷାକ । ଭାରତର ଆତ୍ମା ହେଉଛି ଏଇ ଛୋଟ କୁଡ଼ିଆ-ଗୁଡ଼ିକ ଆଉ ତାର ଦୁଃଖ, ଦାରିଦ୍ର୍ୟ ରୋଗ ପ୍ରପୀଡ଼ିତ ଅଧିବାସୀଗଣ । ଏଇ ସବୁ ହେଉଛି ଭାରତର ଆତ୍ମା । ଆଜି ମୁଁ ମୋ ଦେଶର ଆତ୍ମାକୁ ଦେଖିଛି ସୁକୁମାରବାବୁ ।' ନିଜର ଭାବୋଚ୍ଛ୍ୱାସରେ ବିଭୋର ହୋଇ କହିଯାଉଥିଲା ସେ । ସୁକୁମାରବାବୁ ଶୁଣୁଥିଲେ କି ନାହିଁ ସେକଥାକୁ ଲକ୍ଷ୍ୟ ନଥିଲା ତାର ।

ହଠାତ୍ ସୁକୁମାରବାବୁ କହିଲେ, 'ଆପଣ ତ ଦୁନିଆର ସମସ୍ତଙ୍କ ଦୁଃଖରେ ଦୁଃଖ ଅନୁଭବ କରୁଛନ୍ତି ସ୍ମିତାଦେବୀ, କିନ୍ତୁ ମୁଁ ଦେଖୁଛି ମୋର ବେଳକୁ ଆପଣଙ୍କର ଛଳେ-ହେଲେ ସହାନୁଭୂତି ରହୁନି...ନିଜକୁ ମୁଁ ବଡ଼ ହତଭାଗ୍ୟ ମନେକରୁଛି ପ୍ରକୃତରେ...' ।

ସରଳ ଭାବରେ ସ୍ମିତା ଉତ୍ତର ଦେଲା, 'ନା ନା, ଯା ଆପଣଙ୍କର ଭୁଲ ଧାରଣା । ମୁଁ ଅନେକଥର ଆପଣଙ୍କ କଥା ଭାବେ । ପ୍ରକୃତରେ ଯାହାଙ୍କ ସ୍ତ୍ରୀ ଚିରରୁଗ୍ଣା ହୁଅନ୍ତି ତାଙ୍କ ଜୀବନଟାଯାକ ଯେ ଅଶାନ୍ତିରେ କଟେ, ଏକଥା କିଏ ନଜାଣେ ?...କିନ୍ତୁ...'

କଥାଟା ଠିକ୍ ବାଟକୁ ଗଡ଼ କରୁଛି ଦେଖି ଖୁସି ହୋଇଗଲେ ସୁକୁମାରବାବୁ । ତେଣୁ ସ୍ମିତାର କଥା ଶେଷ ହେବାକୁ ନଦେଇ କହିଲେ ସେ, 'ପ୍ରକୃତରେ ମୋ ଜୀବନଟା ବ୍ୟର୍ଥ ହୋଇଗଲା କହିଲେ ଚଳେ । ପ୍ରଚୁର ଧନସମ୍ପତ୍ତି ଥିଲେ କଣ ହେବ, ମଣିଷର ପାରିବାରିକ ସୁଖଶାନ୍ତି ହେଉଛି ସବୁଠାରୁ ବଡ଼ ଜିନିଷ....'

'ତା ସତ...' ଅନ୍ୟମନସ୍କ ଭାବରେ କ୍ଷୁଦ୍ର ଉତ୍ତର ଦେଲା ସ୍ମିତା । ହଠାତ୍ ତା ମନରେ ଉଙ୍କିଥିଲା ଗୌରୀର ସେଇ ଅନୁନୟ ଭରା ମୁହଁଟି । କାଲିକି କଣ କହି ତାକୁ ଉତ୍ତର ଦେବ ସେ ? ଭାବିଲା ସ୍ମିତା ..ଅର୍ଥର ଅଭାବ ହେତୁ ଆଜି ଗୌରୀ ମାର ଏ ଦଶା, ଆଉ ପ୍ରଚୁର ଅର୍ଥ ଥାଇ ମଧ୍ୟ ସ୍ୱର୍ଣ୍ଣଲତାଙ୍କର ସେଇ ସମାନ ଦଶା । ବିଚିତ୍ର ବିଧାନ ଈଶ୍ୱରଙ୍କର । ଏ ସଂସାରରେ ଲୋକେ ଯେ କେତେ ପ୍ରକାରର ଦୁଃଖରେ ଦୁଃଖୀ ତାହା କେହି କଳନା କରିପାରିବେନି । ମଞ୍ଜୁଶ୍ରୀ ଆଉ ଗୌରୀ....ଦୁହିଁଙ୍କର ବେଦନା କଣ ସମାନ ନୁହେଁ ? କିନ୍ତୁ ଦୁହିଁଙ୍କର ଅବସ୍ଥିତିରେ ଅଛି ଆକାଶ ପାତାଳ ପ୍ରଭେଦ ।

"ଆପଣ ତାହେଲେ ମୋ ପାଇଁ ଦୁଃଖ ଅନୁଭବ କରନ୍ତି ?" ଏ ପ୍ରଶ୍ନଟା ପ୍ରାୟ ଦୁଇଥର ପଚାରିବାକୁ ହେଲା ସୁକୁମାର ବାବୁଙ୍କୁ । ଶେଷ ଥରର ପ୍ରଶ୍ନରେ ହଠାତ୍ ଥତମତ ହୋଇ ଉତ୍ତର ଦେଲା ସ୍ମିତା, "ହଁ....ନିଶ୍ଚୟ..."

"କିନ୍ତୁ କାହିଁକି ?"

ସୁକୁମାରବାବୁଙ୍କର ପ୍ରଶ୍ନରେ ଏ ଧରଣରେ ଟିକିଏ ବିସ୍ମିତ ହୋଇ କହିଲା ସେ, "ଦୁଃଖ ଲାଗିବନି ? ଭଗବାନଙ୍କ ଦୟାରୁ ଧନ, ସମ୍ପଦ, ସ୍ୱାସ୍ଥ୍ୟ ସବୁ ଅଛି ଆପଣଙ୍କର, କିନ୍ତୁ ସବୁ ଥାଇ ମଧ୍ୟ ମନରେ ସବୁବେଳେ ଗୋଟାଏ ଅଶାନ୍ତି, ଗୋଟାଏ ଚିନ୍ତା ଲାଗିରହିଛି । ମଞ୍ଜୁର ମାଙ୍କୁ କି ବେମାରି ହେଇଛି, ମୁଁ ଜାଣେନା, ତେହେଲେ ବି...."

ବାଧାଦେଇ କଥାଟାକୁ ଆଡେଇଦେଇ ସୁକୁମାରବାବୁ କହିଲେ, "ଜାଣି ଆଉ ଲାଭଟା କଣ ? ମୁଁ ମୋର ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିଛି, ମୋର କର୍ତ୍ତବ୍ୟ କରିଛି, ଆଉ ମୋର କରିବାର କିଛି ନାହିଁ । ପ୍ରକୃତରେ ନିଜକୁ ଥରେ ଥରେ ଏତେ ଅସହାୟ, ଏତେ ଏକାକୀ ମନେ ହୁଏ....ସେଥିପାଇଁ···" ସୁକୁମାରବାବୁ ମୁହୂର୍ତ୍ତିକପାଇଁ କଥା ବନ୍ଦ କଲେ, ଅଭିନୟଟା ଠିକ୍ ମନଲାଖି ହେଉଛି କି ନାହିଁ ପରୀକ୍ଷା କଲେ, ତାପରେ ପୁଣି କହିଲେ, "ଆପଣ ଯଦି ସାହାଯ୍ୟ କରନ୍ତେ...."

କଥାଟା ଶୁଣି ଆକାଶରୁ ଯେପରି ତଳେ ପଡ଼ିଲା ସ୍ମିତା । କହିଲା, "ମୁଁ ? ମୁଁ କ'ଣ ସାହାଯ୍ୟ କରିବି ?" ନିର୍ବୋଧ ପରି ପଚାରିଲା ସେ ।

କଣ୍ଠ ପରିଷ୍କାର କରି ସୁକୁମାର ବାବୁ କହିଲେ, 'ସିଧା ସଳଖ ସତକଥାଟା କହୁଛି ସ୍ମିତା । ସେହି ଗାଡ଼ିରେ ତମକୁ ଦେଖିଲାଦିନୁ ମୁଁ ସ୍ଥିର କରିଛି—ତମେ ନହେଲେ ମୋର ଚଳିବନି । ରେଜେଷ୍ଟ୍ରି ମେରେଜ୍ କରିବାକୁ ମୁଁ ରାଜିଅଛି । ତମେ ଯଦି ଅନୁମତି ଦିଅ...."

ସ୍ମିତା ଚୁଲୁ ଚୁଲୁ ଠିଆହୋଇପଡ଼ିଲା । କଥାଟା ଶୁଣି ନିଜ କାନକୁ ମଧ୍ୟ ଯିମିତି ବିଶ୍ୱାସ କରିପାରୁନି ସେ । ସାମନାର ଏହି ଲୋକଟା ପ୍ରତି ନିଜର ଆଶ୍ରୟଦାତା ରୂପେ ଯାହା କିଛି ଶ୍ରଦ୍ଧା ସମ୍ମାନ ତା ମନଭିତରେ ଏପର୍ଯ୍ୟନ୍ତ ଜମିରହିଥିଲା ସବୁ ଯେପରି ସେଇଠି ସେ ବାଟଧୂଳି ଉପରେ ଲୋଟିପଡ଼ିଛି ।

ସୁକୁମାରବାବୁ ବି ଅଟକିଗଲେ । ପଚାରିଲେ, "କଣ ଠିଆହୋଇପଡ଼ିଲ ଯେ ?"

ନିଜକୁ ସମ୍ଭାଳିନେଇ ସ୍ମିତା କହିଲା, ମୁଁ ଅବାକ୍ ହୋଇଗଲି ସତରେ । ଏକଥା ଆପଣଙ୍କ ମୁହଁରୁ ଶୁଣିବି ବୋଲି ମୁଁ ଆଦୌ କଳ୍ପନା କରିପାରିନି ।"

"କାହିଁକି କଥାଟା କଣ ଏତେ ଅସମ୍ଭବ ?"

"ନିଶ୍ଚୟ । ମୋର ସମବେଦନା ଜଣାଇବା ଯେ ଆପଣଙ୍କୁ ଏଭଳିରେ ପ୍ରବର୍ତ୍ତିତ କରାଇବ, ଏକଥା ମୁଁ ଜାଣିପାରିନଥିଲି । ଆପଣଙ୍କ ପ୍ରତି ମୋର ସହାନୁଭୂତି

ଅଛି, ଠିକ୍ ମଣ୍ଡ୍ର ପ୍ରତି ମଧ ସିମିତ ଅଛି, ଆଉ ମଣ୍ଡ୍ରର ମା'ଙ୍କ ପ୍ରତି ମଧ । ମୋ କଥା ଶୁଣନ୍ତୁ, ସେ ହେଉଛି ଆଲୋଚନାର ବାହାରେ । କିନ୍ତୁ ନିଜର ସ୍ତ୍ରୀଙ୍କ ଏ ଅବସ୍ଥାରେ ଛାଡ଼ି ଆପଣ ଅନ୍ୟ ବିବାହ କରିବା କଥା ଭାବିପାରୁଛନ୍ତି କିପରି ? ମଣ୍ଟୁ ତ ଅଛି, ତାକୁ ଗଢ଼ିବା ଆହୁରି ନିଜ ମାଆଙ୍କ ଯତ୍ନ ତ ସେ ପାଇପାରୁନି..."

ସିଂହାର ଏ ଉକ୍ତ ଅରଣ୍ୟରୋଦନ ଭଳି ହିଁ କାମକଲା । ଅପାତ୍ରରେ ଦାନ ଦେଲେ ଯେପରି ବ୍ୟର୍ଥ ହୁଏ, ଅଯୋଗ୍ୟ ଲୋକକୁ ଉପଦେଶ ଦେଲେ ବି ସେହିପରି ବ୍ୟର୍ଥ ହୁଏ । ଯାହାର ଯେପରି ରୁଚି, ଯାହାର ଯେପରି ଦୃଷ୍ଟିଭଙ୍ଗୀ, ସେହି ଅନୁସାରେ ମଣିଷ ନିଜ ନିଜର ଗୋଟିଏ ପରିସର ଗଢ଼ିଛି ଏ ସଂସାରରେ । ତା ମଧ୍ୟରେ ସେହି ପରିସର ହିଁ ହେଉଛି ଉତ୍କୃଷ୍ଟ । ଯେଉଁପାଇଁ କେତେ କହେ ମୌନକରିବା ଭଲ । ଏତେ ସହଜରେ ଯଦି ନ୍ୟାୟକୁ, ସତ୍ୟମାର୍ଗକୁ ମଣିଷ ମାନିନିଅନ୍ତା ତେବେ ଦୁନିଆର ରୂପ ଅନ୍ୟପ୍ରକାର ହୋଇଥାନ୍ତା ।

ସିଂହାର ସାଧୁ ଉପଦେଶ ଶୁଣି ମନେ ମନେ ହସୁଥାନ୍ତି ସୁକୁମାର ବାବୁ । ସିଂହା ଜାଣେନି ସ୍ୱର୍ଣ୍ଣଲତାଙ୍କ ମୂଲ୍ୟ କେତେ କମ୍ ତାଙ୍କ ଆଖିରେ । ଖାଲି ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ ହେବାପାଇଁ ଜାଣି ଜାଣି ଚତୁର ସୁକୁମାରବାବୁ ବାହାହୋଇଥିଲେ ସ୍ୱର୍ଣ୍ଣଲତାଙ୍କୁ । ନାରୀଜାତି ପ୍ରତି କେବେ କସ୍ମିନ୍‌କାଳେ ତାଙ୍କର ଶ୍ରଦ୍ଧା ନଥିଲା । ତାଙ୍କ ଦୃଷ୍ଟିରେ ସେ ବି ଗୋଟାଏ ବିଳାସର ସାମଗ୍ରୀ ମାତ୍ର । ସୁକୁମାରବାବୁଙ୍କୁ ଅତି ବୁଦ୍ଧିମାନ୍ ବୋଲି ଧରିନିଆଯାଇପାରେ, କାରଣ ସେ ନିଜର ଉଚ୍ଛୃଙ୍ଖଳ ସ୍ୱଭାବ-ଚରିତ୍ରକୁ ଅତି ବିନୀତ ଭଦ୍ରତାର ମୁଖୋସ୍ ଦ୍ୱାରା ବେଶ୍ ସୁନ୍ଦର ରୂପେ ଲୁଚାଇ ରଖିପାରନ୍ତି ।

ସୁକୁମାର ବାବୁ ହସିଲେ ଯା ବିଚାରି ଯେ—ନିଜର ମତ ଅନୁସାରେ ସ୍ୱାଧୀନ ଜୀବନ ଯାପନର ପ୍ରଣାଳୀକୁ ସହଜ କରିବାପାଇଁ ସେ କିପରି ଲାଗିପଡ଼ି ଜମିଦାରଙ୍କ ଏକମାତ୍ର ଆଦରିଣୀ ଉତ୍ତରାଧିକାରିଣୀଟିକୁ ରୁଗ୍‌ଣା କରାଇ ପାରିଛନ୍ତି ! ମିଛରେ ଡାକ୍ତର ଡକାଇ ଆଣି, ପରେ ଡାକ୍ତରଙ୍କ ମତ ବୋଲି ଯେତେପ୍ରକାରର ସବୁ ଅଦ୍ଭୁତ ବେମାରର ତାଲିକା ଦେଇ ଭୟଭୀତ କରାଇଛନ୍ତି ସ୍ୱର୍ଣ୍ଣଲତାଙ୍କୁ ପ୍ରତି ମୁହୂର୍ତ୍ତରେ । ସୁସ୍ଥ ସ୍ତ୍ରୀକୁ ଶଯ୍ୟାଶାୟିନୀ ହୋଇ ରହିବା ପାଇଁ ବାଧ୍ୟ କରିଛନ୍ତି ଦିନ ଦିନ ଧରି । ପିତାଙ୍କ ସ୍ୱର୍ଗ ଗମନର କେତୋଟା ବର୍ଷ ଭିତରେ ଅଧାପାଗଳି ହୋଇଯାଇଛନ୍ତି ସ୍ୱର୍ଣ୍ଣଲତା ।

ଏଣେ ଚିକିତ୍ସକଙ୍କ ଆଗମନର ଘନଘଟା ଦେଖି ଲୋକେ ଉଚ୍ଛ୍ୱସିତ ଭାବରେ ପ୍ରଶଂସା କରିଛନ୍ତି ସୁକୁମାରବାବୁଙ୍କୁ । ତାଙ୍କର ପତ୍ନୀ-ସ୍ନେହ ଓ କର୍ତ୍ତବ୍ୟପରାୟଣତା କୁଆଡ଼େ ଅତୁଳନୀୟ । ସବୁ ପ୍ରକାର ଚେଷ୍ଟାର ବିରାମ ନାହିଁ । ଛ'ମାସକୁ ଥରେ କେତେମାସ ପାଇଁ ସେନେଟୋରିୟମ୍ ବା ସ୍ୱାସ୍ଥ୍ୟନିବାସକୁ ଯିବାକୁ ପଡ଼େ ସ୍ୱର୍ଣ୍ଣଲତାଙ୍କୁ । ସୁକୁମାର ବାବୁ

ସାଙ୍ଗରେ ନେଇଯାଆନ୍ତି । କେହି ଜାଣିପାରନ୍ତିନି ଯେ ସେଠାରେ ସେହି ଦୁଃସାଧ ରୋଗର ରୋଗୀମାନଙ୍କ ମେଳରେ ସ୍ୱର୍ଣ୍ଣଙ୍କୁ ଛାଡ଼ିଦେଇ କରୁଣ କାମର ଦ୍ୱାହି ଦେଇ ସିଧା ସୁକୁମାର ବାବୁ ଟିକେଟ୍ କାଟନ୍ତି ବମ୍ବେକୁ ନହେଲେ କେବେ କେବେ କଲିକତାକୁ, ଦିଲ୍ଲୀକୁ । ଏପରି ସବୁ ଇନ୍ଦ୍ରପୁରୀ ଯେ ସେହି ସ୍ଥାନମାନଙ୍କରେ ବାଛି ରଖିଛନ୍ତି, ଯାହା ମଝିରେ ନିଜକୁ ଭସାଇଦେଇହେବ ସବୁପ୍ରକାର ବିଳାସିତାର ସୁଅରେ । କୌଣସି ବାଧା ନ ଥାଏ, କୌଣସି ବନ୍ଧନ ନଥାଏ । କେହି ଜାଣିବାକୁ ବି ନଥାନ୍ତି ।

କଥାରେ ଅଛି ଯଦି ଅପରାଧୀ ମୂର୍ଖ ବ୍ୟକ୍ତି ହୁଏ ତେବେ ତାର ଅବା ଧରାପଡ଼ିବାର ସମ୍ଭାବନା ଥାଏ । କିନ୍ତୁ ବୁଦ୍ଧିମାନ୍, ଶିକ୍ଷିତ ବ୍ୟକ୍ତି ଯଦି ଅପରାଧୀ ହୁଏ ତେବେ ତାକୁ ଧରିବାଟା ଅଧିକ ଅସାଧ୍ୟ ହୋଇପଡ଼େ । ତେଣୁ ଜମିଦାରବାବୁଙ୍କର ଏ ସ୍ୱରୂପଟି ନୂଆ ଗାଁର ସମସ୍ତଙ୍କ ନିକଟରେ ଅପରିଚିତ ।

ସ୍ତ୍ରୀ ହୋଇ ନିଜେ ସ୍ୱର୍ଣ୍ଣ ବି ଚହ୍ନିପାରିନାହାନ୍ତି । ସମୟ ସମୟରେ ରହସ୍ୟମୟ ମନେହେଲେ ମଧ୍ୟ ସେ ରହସ୍ୟ ଭେଦ କରିବା ଶକ୍ତି ନୁହଁନ୍ତି ତାଙ୍କୁ । କେବେ କେବେ ଭାବନ୍ତି ସୁକୁମାରବାବୁ ଅତି ଯତ୍ନ କରୁଛନ୍ତି, କେବେ ଭାବନ୍ତି ବୋଧହୁଏ ଅବହେଳା କରୁଛନ୍ତି, କିନ୍ତୁ ପ୍ରକୃତ ଘଟଣା ଜାଣିବାର କୌଣସି ଉପାୟ ନଥିଲା । ହତଭାଗିନୀ ସ୍ୱର୍ଣ୍ଣଲତାଙ୍କର କ୍ରମଶଃ ପରିବର୍ତ୍ତିତ ମସ୍ତିଷ୍କ ଓ ଚେହେରାକୁ ଦେଖି ମନେ ମନେ ଏକ ନିଷ୍ଠୁର ଆନନ୍ଦ ଅନୁଭବ କରୁଥାନ୍ତି ସୁକୁମାର ବାବୁ । ଦ୍ୱିଗୁଣ ଉତ୍ସାହରେ ଲାଗିପଡ଼ନ୍ତି ସ୍ତ୍ରୀଙ୍କର ମସ୍ତିଷ୍କ ବିକୃତି ସମ୍ବନ୍ଧରେ ଆହୁରି କିଛି ମିଥ୍ୟା-ପ୍ରମାଣ ସଂଗ୍ରହ କରିବାରେ । ଶିକାରଟାକୁ ସିଧାସଳଖ ନ ମାରି ତାକୁ ଖେଳାଇ ଖେଳାଇ ଅଧିକ ଛଟପଟ କରି ଆହୁରି ଅଧିକ ଯନ୍ତ୍ରଣା ଦେଇ, ଆଉ ସେହି ଯନ୍ତ୍ରଣାରୁ ଜାତ ହେଉଥିବା କଷ୍ଟକୁ ଦେଖି ଏକ ଅଦ୍ଭୁତ ପ୍ରକାର ତୃପ୍ତି ଅନୁଭବ କରନ୍ତି ଏକଜାତିର ମନୁଷ୍ୟମାନେ । ସେମାନଙ୍କୁ ମନୁଷ୍ୟ ରୂପଧାରୀ ଦାନବ କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । ସେହି ଦାନବଶ୍ରେଣୀର ମାନବ ହେଉଛନ୍ତି ସୁକୁମାର ବାବୁ । ମନୁଷ୍ୟୋଚିତ କୌଣସି ଗୁଣ ତାଙ୍କର ନଥିଲା । କନ୍ୟା ମଞ୍ଜୁ ସହିତ ବି 'ବାପା' ବୋଲି ଡାକିବା ଛଡ଼ା ଆଉ ଅନ୍ୟ କିଛି ସମ୍ବନ୍ଧ ନାହିଁ । ଏ ଅନିୟମିତ ଜୀବନଧାରା ଭିତରେ ଅଭାଗିନୀ ବାଳିକାଟି କିଛି ଥଇକୂଳ ପାଏନି । ନିଜ ଖିଆଲ ଅନୁସାରେ କେବେ କେଉଁ ବାନ୍ଧବୀ ନିକଟରେ ସୁକୁମାରବାବୁ ଛାଡ଼ିଦିଅନ୍ତି ତାକୁ ନ ହେଲେ ଯେଉଁ ହୋଟେଲର ବାସିନ୍ଦା କରି ରଖନ୍ତି ନିଜ ପାଖରେ । ଅତି ପିଲାବେଳୁ ସେ କିପରି ଚାଲିଥିଲା କେଜାଣି, ଜ୍ଞାନ ହେଲାଦିନୁ ଏହି ଅବସ୍ଥା ଆଉ ପରିସ୍ଥିତିରେ ବଢ଼ିଆସିଛି ସେ । କୌଣସି ବୟସ୍ୟରେ

କେବେ ପାଟି ନ ଫିଟାଇବାର ଚମତ୍କାର ଶିକ୍ଷା ତାକୁ ଦେଇଛନ୍ତି ସୁକୁମାରବାବୁ । ବାପାଙ୍କୁ ସେ ଯମ ଭଳି ଭୟ କରୁଥିଲା ଆଉ ସେ ଦାରୁଣ ଭୟ ତାକୁ ପ୍ରାୟ ମୂକ କରିଦେଇ ଥିଲା କହିଲେ ଚଳେ । ଯନ୍ତ୍ରଚାଳିତ ପୁତୁଳିକା ପରି ଚଳପ୍ରଚଳ କରୁଥିଲା ସେ ।

ଏହା ହେଉଛି ସୁକୁମାରବାବୁଙ୍କର ଆତ୍ମପରିଚୟ । ତାଙ୍କର ସେ ଅସାଧାରଣ ଚାତୁରୀ ଭିତରେ ବାଟ କାଟିପାରିବ କିଏ ନା ସ୍ମିତା ଭଳି ନିରୀହା ସ୍ତ୍ରୀଲୋକଟିଏ ? ସୁକୁମାର ବାବୁଙ୍କର ହୋ ହୋ ହୋଇ ହସିବାକୁ ଇଚ୍ଛା ହେଉଥିଲା । ଅନେକ ନାରୀଙ୍କ ସଂସ୍ପର୍ଶରେ ଆସିଛନ୍ତି ସେ । ସ୍ମିତାଭଳି ପରମାସୁନ୍ଦରୀ ନହେଲେ ମଧ୍ୟ ତାଠାରୁ ଢେର୍ ଢେର୍ ଅଧିକ ବୁଦ୍ଧିମତୀ ଝିଅଙ୍କୁ ଦେଖିଛନ୍ତି ସେ ।

ଏ ସମୟରେ ଦୂରରୁ ଦୁଇଜଣ ଲୋକ କଥାବାର୍ତ୍ତା ହୋଇ ଆସୁଥିବା ଭଳି ମନେ ହେଲା । ସୁକୁମାରବାବୁ କୋମଳ କଣ୍ଠରେ କହିଲେ, 'ଚାଲ ସ୍ମିତା, ଲୋକଗୁଡ଼ାକ ଆସୁଛନ୍ତି ଏଆଡ଼କୁ । ଆମ ଦୁ'ଜଣଙ୍କୁ ଏପରି ଭାବରେ ରାସ୍ତା ମଝିରେ ଅନ୍ଧାରରେ ଠିଆ-ହୋଇଥିବାର ଦେଖିଲେ ଭଲଧାରଣା ନିଶ୍ଚୟ ହେବନି ସେମାନଙ୍କ ମନରେ··· ନା କଣ କହୁଛ ?' ସେ ହସିଲେ । ଅନ୍ଧାର ହୋଇ ସ୍ମିତା ଦେଖିପାରିଲାନି ସୁକୁମାରବାବୁଙ୍କର ସେହି ନୀରବ, ସର୍ପ-କୁଟିଳ ସଇତାନୀ ହସ; କିନ୍ତୁ କଥାଗୁଡ଼ିକ ତୀରର ମୁନ ଭଳି ଭେଦିକଲା ତା' ମନଭିତରେ । ଏତେବେଳେ ଯାଇ ସେ ଉପଲବ୍ଧି କଲା—ଯଦି କେହି ଗ୍ରାମବାସୀ ଏହିପରି ତାକୁ ଏକୁଟିଆ ସୁକୁମାରବାବୁଙ୍କ ସଙ୍ଗେ ଦେଖିବ ତାହେଲେ କଣ ଭାବିବ ସେ ? ଏକଥା ଚିନ୍ତାକରି ନିହାତି ସଙ୍କୁଚିତ ହୋଇପଡ଼ିଲା ସେ । ନୀରବରେ ଚାଲିବା ଛଡ଼ା ଅନ୍ୟ ଉପାୟ କିଛି ନଥିଲା । ଟର୍ଚ୍ଚ ଆଲୁଅରେ ପଥ ଦେଖାଇ ସାଙ୍ଗରେ ଚାଲିବାକୁ ଲାଗିଲେ ସୁକୁମାରବାବୁ । ଲୋକ ଦୁଇଟି ଅତିକ୍ରମ କରି ଗଲା ପରେ ପୁଣି କଥାର ପୂର୍ବ ଖିଅ ଧରି କହିଲେ ସେ, 'ସେଇଥିପାଇଁ ତ ମୁଁ କହୁଛି...ତୁମେ ତ ମଞ୍ଜୁକୁ ମଧ୍ୟ ସ୍ନେହକର, ମୋ ପ୍ରସ୍ତାବରେ ରାଜିହେଲେ ତାର ବି କଣ ମଙ୍ଗଳ ହେବନି ? ତୁମେ ମତେ ବିଶ୍ୱାସ କର ସ୍ମିତା, ପ୍ରକୃତରେ ମୁଁ ତୁମକୁ ଅତ୍ୟନ୍ତ ଭଲପାଏ । ମୁଁ ତୁମର ଅଶାନ୍ତ ଇଚ୍ଛାର ଜାଣିବାକୁ ଚାହେଁନା ।'

ସୁକୁମାରବାବୁଙ୍କର ସାହସ ଦେଖି ସ୍ମିତାର ମୁହଁରୁ ବାକ୍ୟ ସ୍ଫୁରିଲାନାହିଁ ଯେପରି । ଅତି କଷ୍ଟରେ ସେ କହିଲା, 'ଆପଣ ମତେ ଏତେ ସହଜରେ ଅପମାନଦେବାକୁ ସାହସ କରି-ପାରିଲେ ସୁକୁମାରବାବୁ ! ଖାଲି ଆପଣ ମୋର ଆଶ୍ରୟଦାତା ବୋଲି...ନହେଲେ ··' ନହେଲେ ଯେ ସେ କଣ କରିଥାନ୍ତା ସେ କଥା ନିଜେ ବି ଭାବିପାରିଲାନି ।'

'ଆହା, ତୁମେ ମତେ ଭୁଲ୍ ବୁଝୁଛ କାହିଁକି ଯେ ? ମୁଁ ତୁମର କିଛି ଅସମ୍ମାନ କରିବାକୁ ଚାହୁଁନି । ଅଧିକନ୍ତୁ ମୋ ସ୍ତ୍ରୀର ସମ୍ମାନ ଦେବାକୁ ଚାହୁଁଛି । ତୁମର ଏ

ଅନଭୀଷ୍ଟ ଜୀବନ ଯାପନ ଅପେକ୍ଷା ମେ କଣ ବେଶ୍ ଭଲ ନୁହେଁ ? ନିଜକୁ ଯେତେ ଭଲ ବିଚାରିଲେ ବି ଲୋକେ ତ ଆଉ ମାନିବେନି...ଭଦ୍ରଘର ଝିଅ ଗୃହତ୍ୟାଗ କରି ଆସିଲେ ...'

'ଚୁପ୍ କରନ୍ତୁ...' ଆହତା ଫଣିନୀ ପରି ଚିତ୍କାର କରି ଉଠିଲା ସ୍ମିତା ।

'ତେବେ ତମେ କଣ ଘର ଛାଡ଼ି ଆସିନ ?' ଆତି ଶାନ୍ତ କଣ୍ଠରେ ପଚାରିଲେ ସୁକୁମାରବାବୁ ।

ତାଙ୍କର ସେ ଶାନ୍ତ କଣ୍ଠର ଭିତରେ ଲୁଚିରହିଥିବା ବିଦ୍ରୂପକୁ ଉପଲବ୍ଧି କରି ଦୃପ୍ତ-କଣ୍ଠରେ ସ୍ମିତା କହିଲା, 'ହଁ, ଘର ଛାଡ଼ି ଆସିଛି....'

'ସମସ୍ତଙ୍କ ଅଜ୍ଞାତରେ ଯେ ଆସିଛ ଏକଥା କଣ ସତ ନୁହେଁ ?'

'ନିଶ୍ଚୟ ସତ ।'

'ସ୍ୱାପରେ ଆଉ ସତ୍ ବୋଲି ନିଜକୁ ପ୍ରମାଣିତ କରିବାର ଆସ୍ପର୍ଦ୍ଧା ରଖିଛ ?'

'ନିଶ୍ଚୟ !!' ଦାନ୍ତରେ ଦାନ୍ତ ଚିପିଧରି କହିଲା ସ୍ମିତା, 'ବୁଝିଲେ ସୁକୁମାରବାବୁ, ଯାହାର ଦୃଷ୍ଟିକୋଣ ଯିମିତି ସେ ସିମିତି ଦେଖେ ଦୁନିଆଟାକୁ ।'

'ତାହେଲେ ସତ୍ କାରଣଟାକୁ ବୁଝାଇ ଦିଅ ନା...'

'କାହିଁକି ?' ଗର୍ଜି ଉଠିଲା ସ୍ମିତା । କହିଲା, 'ଆପଣ କିଏ ? କି ଅଧିକାର ଅଛି ଆପଣଙ୍କର ମୋର ବ୍ୟକ୍ତିଗତ ଜୀବନ ନେଇ ଆଲୋଚନା କରିବାକୁ ? ଆପଣ ଦୟାକରି ଦେଇଥିବା ଏ ଚାକିରୀରୁ ଇସ୍ତଫା ଦେଇ କାଲି ସକାଳେ ମୁଁ ଏ ଜାଗା ଛାଡ଼ି ଚାଲିଯିବି । ଚାକିରୀ ଟଣ୍ଡେ ଦେଇଛନ୍ତି ବୋଲି ଆପଣଙ୍କର ଧାରଣା ଯେ ମୁଣ୍ଡ କିଣି ନେଇଛନ୍ତି... ନୁହେଁ ?'

ରାଗରେ ଥରୁଥିଲା ସ୍ମିତାର ସର୍ବାଙ୍ଗ ଆଉ ସେଥିପାଇଁ ତାର ପଦକ୍ଷେପ ବି ହୋଇ-ପଡ଼ୁଥିଲା ଅତି କ୍ଷିପ୍ର । ଘରଗୁଡ଼ିକ ଦିଶିଗଲାଣି । ଜଣେ କେହି ଲଣ୍ଠନ ଧରି ଆସୁଥିଲା ସେ ରାସ୍ତାରେ । କିନ୍ତୁ ସମୟ କଟିଗଲା ଚୁପ୍‌ଚାପ୍ ଅବସ୍ଥାରେ । ସୁକୁମାରବାବୁ ଦେଖିଗଲେ ନିଜକୁ ଏ—ସ୍ମିତାକୁ ହାତମୁଠା ଭିତରକୁ ଆଣିବା ଚେଷ୍ଟା କରୁ କରୁ ସେ ଯେ ଖସି ଚାଲି-ଯିବାକୁ ବସିଲାଣି । ଠିକ୍ ଏ ଭାବି ନିଜର ଚତୁରତାକୁ ପ୍ରୟୋଗ କଲେ ସେ । କହିଲେ, 'ମୁଁ ବଡ଼ ଦୁଃଖିତ ମିସ୍ ମିତ୍ର, ପ୍ରକୃତରେ ମୁଁ ଚାହିଁ ନଥିଲି କୌଣସି ପ୍ରକାର ଅପମାନ ଦେବାକୁ ଆପଣଙ୍କୁ । ନିଜ ଅଜାଣତରେ ଯଦି ଅପରାଧ କରିଥାଏ ତେବେ କ୍ଷମାକରିବେ । ଆପଣ ଜାଣନ୍ତି ଭଲପାଇବାଟା ମଣିଷକୁ ଅନ୍ଧରେ ପରିଣତ କରେ । ମୋର ପ୍ରସ୍ତାବ ମୁଁ ପ୍ରତ୍ୟାହାର କରିନେଉଛି ।'

ସ୍ମିତା ନୀରବ ରହିଲା । ଏ କଥାର ଉତ୍ତର ବା ସେ କଣ ଦେଇଥାନ୍ତା ? ସୁକୁମାର ବାବୁଙ୍କ ମୁହଁ ତ ସେ ଦେଖିପାରୁନଥିଲା; କିନ୍ତୁ ତାଙ୍କ କଣ୍ଠସ୍ୱରରୁ ମନେହେଉଥିଲା ସେ ଅତ୍ୟନ୍ତ ଦୁଃଖିତ ।

'ସତରେ କଣ ଏଇଥିପାଇଁ ଆପଣ ନୂଆ ଗାଁ ଛାଡ଼ି ଚାଲିଯିବେ ସ୍ମିତାଦେବୀ ? ତାହେଲେ ମୁଁ କିନ୍ତୁ ସାରାଜୀବନ ଅନୁତାପ କରିବି । ସ୍କୁଲର ପ୍ରଭୂତ କ୍ଷତି ହୋଇଯିବ । ଆପଣ ଆସିଲା ପରେ ଅନେକ ଉନ୍ନତି ହୋଇଛି । ଅସ୍ପୃଶ୍ୟତା ନିବାରଣ ହୋଇଛି, ଅମ୍ବର ଚରଖାରେ ସୂତା କଟା ଶିକ୍ଷା ଦିଆଯାଉଛି । ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନର ଭାରତ ଭଳି ଏ ଛୋଟ ଗାଁଟିକୁ ଗଢ଼ି ଦେଇଥାନ୍ତେ ଆପଣ । କଥା ଥିଲା ନୈଶ ବିଦ୍ୟାଳୟ ଖୋଲି ପୌଢ଼ାମାନଙ୍କୁ ଶିକ୍ଷାଦେବା । ପ୍ରାଥମିକ ଚିକିତ୍ସା ବି ଶିଖାଇ ଦେଇଥାନ୍ତେ । ଚେଷ୍ଟାକରି ହୁଏତ ଡାକ୍ତରଖାନାଟିଏ ବି କରିଥାନ୍ତେ; କିନ୍ତୁ ଆପଣ ଚାଲିଯିବେ ଯଦି ଏ ନୂଆ ଗାଁ ପଡ଼ିରହିବ ସିମିତି ଅନ୍ଧାରରେ । ଏ ପର୍ଯ୍ୟନ୍ତ ଯେତେ ପ୍ରଧାନଶିକ୍ଷୟିତ୍ରୀ ରହିଛନ୍ତି ସେମାନେ ତାଙ୍କର ଅବଶ୍ୟ କର୍ତ୍ତବ୍ୟକର୍ମଠାରୁ ଟିକିଏ ହେଲେ ଅଧିକ କାମ କରିବାର ଆଗ୍ରହ ଦେଖାଇ ନାହାନ୍ତି, ଗାଁ ଲୋକଙ୍କ ସେବା କରିବା ତ ବହୁତ ଦୂରର କଥା ।'

ସୁକୁମାରବାବୁଙ୍କର ସେ ବ୍ୟଥିତ, ଅନୁତପ୍ତ କଣ୍ଠସ୍ୱର ଯେପରି ଧ୍ୱନିତ ହେବାକୁ ଲାଗିଲା ବାରମ୍ବାର । ନାରୀର ପ୍ରଧାନ ଦୋଷ ହେଉଛି ଅନ୍ୟର ସାମାନ୍ୟ ଦୁଃଖ ପ୍ରଦର୍ଶନରେ ବ୍ୟାକୁଳ ହୋଇପଡ଼େ ତାର ଅନ୍ତର । ତାର ସ୍ୱଭାବସିଦ୍ଧ କୋମଳ ପ୍ରବୃତ୍ତି ତାର ହୃଦୟକୁ ଆହୁରି ଅଧିକ ଦୁର୍ବଳ କରେ । ଦୁଃଖୀକୁ ଆନନ୍ଦ ଦେବାର, ପୀଡ଼ିତକୁ ସେବା କରିବାର ଏକ ସ୍ୱାଭାବିକ ମନୋବୃତ୍ତି ନେଇ ଜନ୍ମିଥିଲା ସେ, ଆଉ ଏହି ଦୁର୍ବଳତା ପାଇଁ ସମସ୍ତ ସମୟରେ ଜୀବନରେ ତାକୁ ସହିବାକୁ ପଡ଼େ ଅପୂରଣୀୟ କ୍ଷତି । ସୁକୁମାର ବାବୁ ଯାହା କହୁଥିଲେ ତାହାର ସତ୍ୟତା ସେ ଉପଲବ୍ଧି କରୁଥିଲା । ଏହି ପଲ୍ଲୀଗାଁଟିର ମାଟି, ପାଣି, ପବନ ସଙ୍ଗେ କିପରି ଏକ ମାୟାସୂତ୍ରରେ ଜଡ଼ିତ ହୋଇପଡ଼ିଛି ସେ । ଏହାକୁ ଛାଡ଼ି ଚାଲିଯିବା ନିଶ୍ଚୟ ବେଦନାଦାୟକ ହେବ । ଅନେକ ସମୟରେ ଟିକିଏ ଅବସର ପାଇଲେ ଆପେ ଆପେ ତାର ମନକୁ ଅଧିକାର କରେ ଏହି ଗାଁଟି । ବସି ବସି ସେ ସ୍ୱପ୍ନ ରଚନା କରେ ତାର ଆଦର୍ଶର । ଗାନ୍ଧିଜୀଙ୍କ ଲେଖାଗୁଡ଼ିକ ତାର ପ୍ରାୟ ମୁଖସ୍ଥ ହୋଇସାରିଛି କହିଲେ ଚଳେ । ସେହି ମହାନ୍ ପୁରୁଷଙ୍କ ନିର୍ଦ୍ଦେଶ କ୍ରମେ ଗୋଟିଏ ଅନୁନ୍ନତ ପଲ୍ଲୀଗ୍ରାମକୁ ଆଦର୍ଶ କରି ଗଢ଼ିଦେବାର ସ୍ୱପ୍ନ ଦେଖି ଦେଖି ସେ ବିଭୋର ହୋଇପଡ଼େ । ଖାଲି ସ୍କୁଲରେ ନୁହେଁ, ଘରେ ଘରେ ଚରଖା ବୁଲିବ, ତନ୍ତ ଚାଲିବ । ସମସ୍ତେ ଖଦୀ ବସ୍ତ୍ର ପିନ୍ଧିବେ, ପ୍ରତ୍ୟେକ କୁଟୀର ଆଗରେ କେତୋଟି ଶାଗ ପଟାଳୀ, କେତୋଟି ପରିବା ଗଛ ଥାଇ ସୁନ୍ଦର ଛୋଟ ଛୋଟ ବଗିଚା ସବୁ ହସିଉଠୁଥିବ । ଜଣେ ହେଲେ କେହି ନିରକ୍ଷର ରହିବେ ନାହିଁ; ସମସ୍ତେ ସାକ୍ଷର, ସମସ୍ତେ ସ୍ୱାବଲମ୍ବୀ । ଗାଁଟିରେ କଳଗୋଳର ଶବ୍ଦ ହିଁ ଶୁଣାଯିବ ନାହିଁ । ସମବାୟ

ସମିତିମାନ ପ୍ରତିଷ୍ଠିତ ହେବ । କୃଷକମାନେ ଏକାଠି ଫସଲ ସଂଗ୍ରହ କରିବେ, ଏକାଠି ସେସବୁର ବାଣ୍ଟାବଣ୍ଟନ କରିବେ; ଆସନ୍ତା ବର୍ଷ ପାଇଁ ସାଇତି ରଖିବେ ବିହନ । ଜଣକ ଘରେ ଅଭାବ ଦେଖାଦେଲାକ୍ଷଣି ଅନ୍ୟ ଦଶଜଣ ହସି ହସି ସାହାଯ୍ୟ କରିବାକୁ ଆଗେଇ ଆସିବେ । ଜଣକର ଆଖିରୁ ଲୁହ ଝରିଲା କ୍ଷଣି ଅନ୍ୟ ଦଶଜଣଙ୍କ ଆଖିରୁ ଲୁହ ଝରିବ ।

ପାଠ ପଢ଼ାଇବା ସୁଯୋଗରେ ସେ ଏ ଗାଁ ଲୋକମାନଙ୍କ ଭିତରେ ଧୀରେ ଧୀରେ ଜାଗ୍ରତ କରାଇବ ଏକତାର ସେହି ଚେତନା । ସେମାନଙ୍କୁ ସେହି ମହାନ୍ ପ୍ରେମରେ ଉଦ୍‌ବୁଦ୍ଧ କରାଇବ । ଶ୍ରେଷ୍ଠ ଶ୍ରେଷ୍ଠ ବଳଗୁଡ଼ିକ ପରିଣତ ହେବ ବିରାଟ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ରରେ, ଦିଗନ୍ତ-ପ୍ରସାରୀ ସବୁଜିମା ଖେଳି ଯାଉଥିବ ପବନର ସ୍ପର୍ଶରେ । ସମ୍ମିଳିତ ଉଦ୍ୟମ ଫଳରେ କର୍ମଶକ୍ତି ଶହେଗୁଣ ବଢ଼ିଯିବ—ଘରେ ଘରେ ଅପରିମିତ ଶସ୍ୟ-ଭଣ୍ଡାର । ଘରଆଡ଼ ପରିଷ୍କାର ପରିଚ୍ଛନ୍ନ । ବାପୁଜୀଙ୍କର ପ୍ରତ୍ୟେକ ନିର୍ଦ୍ଦେଶକୁ ଶିକ୍ଷାଦେବ ସେ, ପ୍ରାଣପଣ ଚେଷ୍ଟା କରିବ ତାଙ୍କର ସ୍ୱପ୍ନର ଭାରତକୁ ଏହି ଶ୍ରେଷ୍ଠ ଗାଁଟିରେ ରୂପଦେବାକୁ । ଜଣେ ଲୋକର ବି ଅଭାବ ନଥିବ—ଆଃ କି ଚମତ୍କାର ପରିକଳ୍ପନା !

ନିଜର ଭାବରେ ନିଜେ ବିଭୋର ହୋଇ ଘଣ୍ଟା ଘଣ୍ଟା ବିତାଇ ଦେଉଥିଲା ସେ । ଆଜି ଆଉ ଥରେ ବାଟ ଚାଲୁ ଚାଲୁ କିଛିକ୍ଷଣ ପାଇଁ ସେଇ ଏକା ସ୍ୱପ୍ନରେ ବୁଡ଼ିଗଲା ସେ ।

ଔଷଧ ଧରୁଛି ଦେଖି ଦ୍ୱିଗୁଣ ଉତ୍ସାହରେ କହିଲେ ସୁକୁମାର ବାବୁ, "ନା ନା, ଆପଣ ସତରେ ଚାଲିଯାଆନ୍ତୁନି ସିଂତା ଦେବୀ । ଆପଣ ମତେ ଦଣ୍ଡ ଦେଇପାରନ୍ତି; କିନ୍ତୁ ନୂଆ ଗାଁକୁ ତ୍ୟାଗ କରିଯିବାର କୌଣସି ଅଧିକାର ନାହିଁ ଆପଣଙ୍କର । ହେଉଛି ମୁଁ ପ୍ରତିଜ୍ଞା କଲି —ଆପଣ ନଡାକିଲା ପର୍ଯ୍ୟନ୍ତ ମୁଁ ଆଉ କଦାପି ଆସିବିନି ଆପଣଙ୍କ ସାମନାକୁ ।"

ଧୀରେ ଧୀରେ ସିଂତା କହିଲା, "ସୁକୁମାର ବାବୁ, ମୋ ବିଷୟରେ ଆପଣଙ୍କର ଯେଉଁ ଧାରଣା ହୋଇଛି, ତାହା ଜାଣି ମଧ୍ୟ ଆଉ ଅଧିକ ଦିନ ଏଠାରେ ରହିବା ଅନୁଚିତ ବୋଲି ମୁଁ ଭାବୁଛି । ଆପଣ ଯଦି ମତେ ନୀଚସ୍ତରର ବୋଲି ଭାବିପାରିଲେ, କିଏ ଜାଣିଛି ଏ ନୂଆଗାଁର ସମସ୍ତେ ମୋ ବିଷୟରେ ସେଇ କଥା ଭାବୁନଥିବେ ?"

"ଆଉ ଅଧିକ ଲଜ୍ଜା ଦିଅନ୍ତୁନି । ଦୁଃଖରେ, ରାଗରେ ସେତେବେଳେ କଣ ନାଇଁ କଣ କହିଦେଇଛି । ସବୁବେଳେ ଅଶାନ୍ତି ଆଉ ମନକଷ୍ଟ ଭିତରେ ଚାପି ହୋଇ ରହି ମୋର ସ୍ୱଭାବଟା କେମିତି ଅଶୋଭନୀୟ ହୋଇପଡ଼ିଛି । ଏଥରକ ପାଇଁ କ୍ଷମାକରନ୍ତୁ ସିଂତା ଦେବୀ । ଦେଖିବେ ଏ ପ୍ରକାର ଭୁଲ୍ ଆଉ ଜୀବନରେ କେବେ ଦ୍ୱିତୀୟଥର ପାଇଁ କରିବିନି ।"

ସ୍କୁଲ୍ କ୍ରମେ ନିକଟ ହୋଇଆସୁଥିଲା । ଯେ କୌଣସି ମତେ ସିଂତାର ଉତ୍ତର ଆଦାୟ କରିବାକୁ ପଡ଼ିବ ସ୍କୁଲ ଭିତରେ । ତେଣୁ ସୁକୁମାରବାବୁ ଆଉଥରେ କହିଲେ, "କଣ କହୁଛି

ଛିନ୍ନେଇନାହାନ୍ତି ସେ ? ଆପଣଙ୍କ ମୁହଁରୁ ଉତ୍ତର ନ ପାଇଲାପର୍ଯ୍ୟନ୍ତ ମୋ ମନରେ ଶାନ୍ତି ଆସିବନି....କହନ୍ତୁ ସିବେନ ।"

ଧୂର୍ତ୍ତ ସୁକୁମାରବାବୁଙ୍କର କୌଶଳ କାର୍ଯ୍ୟକାରୀ ହେଲା । ଶେଷକୁ ଦ୍ୱିଧାଗ୍ରସ୍ତ ଭାବରେ ସିଏ ତା କହିଲା; "ମୁଁ ରହିବି ।"

ଆର ଦିନ ସକାଳୁ ପଶୁଚରିକାଟିକୁ ପଠାଇ ଗାଁ କବିରାଜଙ୍କୁ ଡକେଇଆଣିଲା ସେ ଏବଂ ତାଙ୍କୁ କହିଲା, ଯେ ଦସ୍ତାକର ଗୌରୀ-ମାର ଚିକିତ୍ସାର ଭାର ନିଅନ୍ତୁ । ସେଥିପାଇଁ ଆବଶ୍ୟକ ହେଉଥିବା ସମସ୍ତ ଅର୍ଥ ନିଜ ହାତରୁ ସେ ଦେବ । ସାଗୁ ଓ ବାର୍ଲି କିଛିଏ କିଣିଆଣି ଗୌରୀହାତରେ ପଠାଇଲା । ନିପଟ ମଫସଲ ଗାଁଟିରେ ସାଗୁ ବାର୍ଲି ମିଳିବା ବି ଭାଗ୍ୟର କଥା—ପାଚିଲା ଫଳ ମିଳିବା ତ ଦୁରାଶା ମାତ୍ର ।

ଏହିପରି କେତୋଟି ସାମାନ୍ୟ ସାହାଯ୍ୟ ଛଡ଼ା ଆଉ ଅଧିକ କିଛି କରିବା ତା ପକ୍ଷରେ ଅସମ୍ଭବ । ଥରେ ଦୁ'ଥର ତା ଘରକୁ ଯାଇ ରୋଗିଣୀଟିକୁ ଦେଖିଆସିବା ଇଚ୍ଛା ମନରେ ଜାତହେଲେ ମଧ୍ୟ ସେ ଆଉ ଗଲାନାହିଁ—ଅକାରଣରେ କାହିଁକି ଆଶାଯୁକ୍ତ କରିବ ଲୋକଗୁଡ଼ିକୁ ? ସେ ନିଜେ ଜାଣେ ସେ କେତେ ଅସମର୍ଥ । କିନ୍ତୁ ଗୋଟିଏ କଥା ଭାବି ସେ ସ୍ଥିରକଲା ଯେ, ଯେ କୌଣସିମତେ ହେଉ ଗୋଟିଏ ଡାକ୍ତରଖାନା ସେ ଏହି ଗାଁରେ ସ୍ଥାପନ କରାଇବ । ନିଜେ ଦ୍ୱାର ଦ୍ୱାର ବୁଲି ଚନ୍ଦା ମାଗିବ, ବାକି ସରକାରଙ୍କ ନିକଟକୁ ଗ୍ରାମବାସୀଙ୍କ ସ୍ୱାକ୍ଷରରେ ପଠାଇବ ଗୋଟିଏ ଆବେଦନ ପତ୍ର । ଦେଶ ଅଳ୍ପ କିଛି ଦିନ ହେଲା ମାତ୍ର ସ୍ୱାଧୀନ ହୋଇଛି । ଯୋଜନାରେ ଗ୍ରାମାଞ୍ଚଳର ଉନ୍ନତି ପ୍ରଧାନ ଲକ୍ଷ୍ୟ ହୋଇଥିଲେ ବି ଏହି ବିରାଟ ଦେଶର କେଉଁ ଅନ୍ଧକାରରେ ଥିବା ଲକ୍ଷ ଲକ୍ଷ ଗ୍ରାମଗୁଡ଼ିକର ହଠାତ୍ ଉନ୍ନତି କରିଦେବା ଯେ କୌଣସି ସରକାର ପକ୍ଷରେ ଏକ ଅସମ୍ଭବ କଥା । ନିଜପାଇଁ ନିଜେ ଗଢ଼ିବାର ଶିକ୍ଷା ଦେବା ଆରମ୍ଭ କରିବ ସେ । ବିନା ଚିକିତ୍ସାରେ ଯତ୍ନର ଅଭାବ ହେତୁ, ପଥ୍ୟର ଅଭାବ ହେତୁ କେତେ ଲୋକ ଯେ ପୋକମାଛି ଭଳି ମରିଯାଉଥିବେ ସେ କଥା କିଏ ଜାଣୁଛି ? ତା'ର ଡାକ୍ତରଖାନା ବସାଇବା ସ୍ୱପ୍ନ ଯଦି ସଫଳ ହୋଇପାରିବ ତାହେଲେ ଆଖପାଖ ଗାଁଗୁଡ଼ିକ ବି ଉପକୃତ ହେବେ ।

ବସି ବସି ସେ ନିଜର ପରିକଳ୍ପନାକୁ ଠିକଣା କରି ସଜାଡ଼ିବାକୁ ଲାଗିଲା । ପ୍ରଥମେ ଗ୍ଟେଟିଆ କାଗଜ ଖଣ୍ଡେ ଖଣ୍ଡେ ଯୋଗାଡ଼କରି ନିଜର ଉଦ୍ଦେଶ୍ୟ ଲେଖି ପ୍ରତ୍ୟେକ ଛାତ୍ରୀ ହାତରେ ସେମାନଙ୍କ ଅଭିଭାବକମାନଙ୍କ ପାଖକୁ ପଠାଇବାକୁ ପଡ଼ିବ । ଏକଥା ମନକୁ ଆସିଲାକ୍ଷଣି ସୁମିତ୍ରା ଓ ଅନ୍ୟ ଜଣେ ଶିକ୍ଷୟିତ୍ରୀଙ୍କୁ ଡକେଇପଠାଇଲା ସେ ନିଜ କୋଠରୀକୁ ।

ସେ ଠିକ୍ ଜାଣିଥିଲା, ତାର ଉଦ୍ଦେଶ୍ୟ ଜଣାଇଲାକ୍ଷଣି ପ୍ରକାଶ୍ୟରେ ନ ହସିଲେ ବି ସେମାନଙ୍କ ମୁହଁରେ ଫୁଟିଉଠିବ ଅବିଶ୍ୱାସ ଓ ପରିହାସ । ଘଟିଲା ବି ସେଇଆ । ବୟସ୍କା ଜଣେ କହିଲେ, "ପାଗଳ ହେଲେ ମିସ୍ ମିଶ୍ର, ଡାକ୍ତରଖାନାଟେ ବସାଇବା କଣ ସହଜକଥା ହୋଇଛି ? କେତେ ଉଦ୍ୟମ ଦରକାର, କେତେ ଟଙ୍କା ଦରକାର, ସେ ସବୁ କୁଆଡୁ ସମ୍ଭବ ହେବ ?"

ଶାନ୍ତଭାବରେ ହସି କହିଲା ସ୍ମିତା, "ସମ୍ଭବ ହେବ କି ନାହିଁ ତା ଭଗବାନଙ୍କ ଉପରେ ଛାଡ଼ିଦେବା କଥା । ଗୀତାରେ ପଢ଼ି ଯେ କହିଛନ୍ତି—ଫଳର ଆଶା ରଖନା, କର୍ମ କରିଯାଅ । ଆଉ ଆପଣଙ୍କ ବାଇବେଲ୍‌ରେ ବି ତ ଅଛି....ନିଜେ ଯୀଶୁ କହିଛନ୍ତି—ଦୀନ, ଦରିଦ୍ର ରୋଗୀଙ୍କ ସେବାହିଁ ଭଗବାନଙ୍କ ସେବା । ଆପଣମାନେ ଯଦି ମିଳିମିଶି ମତେ ସାହାଯ୍ୟ କରନ୍ତି ତେବେ ମୁଁ ନିଶ୍ଚୟ କୃତକାର୍ଯ୍ୟ ହେବି । ସତ୍‌କାର୍ଯ୍ୟ ପାଇଁ ଚେଷ୍ଟା କଲେ ତାହା କେବେ ବିଫଳ ହେବନି ମିସ୍ ଦାସ ।"

ସୁମିତ୍ରା କଟାକ୍ଷ ନିକ୍ଷେପ କଲା, "ଆପଣ ଯେତେବେଳେ ପ୍ରସ୍ତାବ ଦେଉଛନ୍ତି, ଆମ ସୁକୁମାରବାବୁ ତ ସର୍ବପ୍ରଥମେ ସାହାଯ୍ୟ କରିବାକୁ ଆଗେଇ ଆସିବେ । ତାଙ୍କଠାରୁ ପ୍ରଚୁର ଅର୍ଥ ମିଳିବ...ଏ ବିଷୟରେ ସନ୍ଦେହ ନାହିଁ..."

ତାର କଥାଗୁଡ଼ିକ ଭିତରେ ପ୍ରଚ୍ଛନ୍ନ ଭାବରେ ରହିଥିବା ବିଷାକ୍ତ ଇଙ୍ଗିତଗୁଡ଼ିକ ଉପଲବ୍ଧି କଲେ ମଧ୍ୟ ଶାନ୍ତକଣ୍ଠରେ କହିଲା ସ୍ମିତା, "ସେ ଯଦି ଅର୍ଥ ସାହାଯ୍ୟ ଦିଅନ୍ତେ ତାହେଲେ ଆଉ ଅସୁବିଧାର ପ୍ରଶ୍ନ ଉଠିବନି । ଖୁବ୍ ଭଲ ହେବ, ଅତି ସହଜରେ କାର୍ଯ୍ୟଟି ହୋଇଯିବ । ସୁକୁମାରବାବୁଙ୍କ ସ୍ତ୍ରୀଙ୍କ ନାଁରେ ଶିକ୍ଷାଶ୍ରମଟା ହୋଇଛି । ଆମେ ସୁକୁମାର ବାବୁଙ୍କ ନାଁ ଅନୁଯାୟୀ ଡାକ୍ତରଖାନାଟିର ନାମକରଣ କରନ୍ତେ ।"

ସ୍ମିତାର ଧୀରକଣ୍ଠର ସେ ଉତ୍ତର ଓ ଶାନ୍ତଗମ୍ଭୀର ମୁହଁଟିକୁ ଚାହିଁ ସୁମିତ୍ରାର ମନରେ ଏକୀଭୂତ ହୋଇଥିବା ସାହସ ଉଭେଇଗଲା କୁଆଡ଼େ । ସୁକୁମାରବାବୁ ଯେ ସ୍ମିତାର ଏକାନ୍ତ ଅନୁରକ୍ତ ହୋଇପଡ଼ିଛନ୍ତି, ତାହା ଜାଣିବାକୁ ବାକିନଥିଲା ତାର । ସ୍ମିତା ଆସିବା ପର୍ଯ୍ୟନ୍ତ ସୁକୁମାରବାବୁଙ୍କ ପ୍ରିୟପାତ୍ରୀ ହିସାବରେ ସ୍କୁଲ୍ ଉପରେ ତାର ଅସାଧାରଣ କର୍ତ୍ତୃତ୍ୱ ଥିଲା । ଅନ୍ୟମାନେ ତାକୁ ଭୟ କରି ଚଳୁଥିଲେ । କିନ୍ତୁ ସ୍ମିତା ଏଠାକୁ ଆସିବାପରେ ମୂଲ୍ୟ ତାର ବହୁତ କମିଯାଇଛି । ସେଦିନ ଶିକାରପାର୍ଟିରେ ଗଲାବେଳେ ସେ ସବୁରି ମୁହଁରେ ଶୁଣିଛି ସ୍ମିତାର ରୂପ ଓ ଗୁଣର ଉଚ୍ଛ୍ୱସିତ ପ୍ରଶଂସା । ମନ ଭିତରେ ଈର୍ଷା ତାର ଦକ୍ ଦକ୍ ହୋଇ ଜଳିଉଠିଛି । ତେଣୁ ସେଦିନ ନିଜ ମନରୁ ଉଦ୍ଭବ କରି ଅନେକ ମିଥ୍ୟା କଥା ବି ସ୍ମିତା ନାଁରେ ସେମାନଙ୍କୁ କହିବାକୁ ଭୁଲିନି । ତେବେବି ସ୍ମିତାପ୍ରତି ଥିବା ଆସକ୍ତି ସେମାନଙ୍କ ମନରୁ ଦୂର କରିପାରିନି ସେ । ମନେ ମନେ ଜଳି ଜଳି ଯେତେବେଳେ

ସୁଯୋଗ ପାଇଛି, ବାହାରେ ଅନ୍ୟ ସମସ୍ତଙ୍କ ଆଗରେ ସୁକୁମାର ବାବୁ ଓ ସ୍ମିତାକୁ ନେଇ ନାନାପ୍ରକାର କଥା କହିବାକୁ ସୃଷ୍ଟି କରିନ ।

ଏ ହେଉଛନ୍ତି ସୁମିତ୍ରା ।

ପୁଣି ଦୃଢ଼ଭାବରେ ସ୍ମିତା କହିଲା, "ଯାଆନ୍ତୁ ତ ମିସ୍ ପାଣି···ସୁମିତ୍ରା ତୁମେ ବି ଯାଅ । ନିଜ ନିଜ ଶ୍ରେଣୀରେ ଯେତେ ଜଣ ରୋଗୀ ଅଛନ୍ତି ହିସାବ କରି ଲେଖା ଖଣ୍ଡେ ଖଣ୍ଡେ ଲେଖିଦିଅ । ଆଜି ଦଶଟା ଭିତରେ ହେବା ଦରକାର । ମୋ ପାଖକୁ ଆଣିଲେ ମୁଁ ଦସ୍ତଖତ କରିଦେବି, ତାପରେ ସବୁ ବାଣ୍ଟି ଦେବା ।"

ସମସ୍ତେ ଉଠିଗଲେ । ଟେବୁଲ ପାଖକୁ ଚୌକିଟିକୁ ଟାଣିନେଇ ନିଜେ ସେ ଲେଖି-ବସିଲା—ସର୍ବପ୍ରଥମେ ସୁକୁମାରବାବୁଙ୍କ ପାଖକୁ ଚିଠି ଖଣ୍ଡେ । ଡାକ୍ତରଖାନା ବସାଇବାର ପରିକଳ୍ପନା ଜଣାଇ ପ୍ରାର୍ଥନା କଲା ତାଙ୍କର ସମସ୍ତପ୍ରକାର ସାହାଯ୍ୟ । ଚିଠିଟି ବନ୍ଦକରି ପିଅନ୍‌ଟିକା ହାତରେ ସାଙ୍ଗେ ସାଙ୍ଗେ ପଠାଇଦେଲା ସୁକୁମାରବାବୁଙ୍କ ନିକଟକୁ । ତାପରେ ଲାଗିପଡ଼ିଲା ପରିକଳ୍ପିତ ଚିକିତ୍ସାଳୟର ଗୋଟିଏ ମୋଟାମୋଟି ଖସଡ଼ା ତିଆରି କରିବାକୁ । ଆଖପାଖ ଗାଁର ହିସାବ, ନୂଆ ଗାଁର ଅବସ୍ଥିତି, କେଉଁଟି କେଉଁ ଷ୍ଟେସନରେ ଓହ୍ଲାଇ ଆସିବାକୁ ପଡ଼େ, ଅଧିବାସୀମାନଙ୍କ ଦାରିଦ୍ର୍ୟଗ୍ରସ୍ତ ଅବସ୍ଥା, ବିଶେଷତଃ ହରିଜନଙ୍କ ଦୁର୍ଦ୍ଦଶା କଥା ବର୍ଣ୍ଣନା କଲା ସେ । ଚିକିତ୍ସା ଯେ ଏଠାରେ ସ୍ୱପ୍ନ ଭଳି ଅବାସ୍ତବ ସେହି କଥା ବି ଜଣାଇଲା । ସରକାରଙ୍କ ସ୍ୱାସ୍ଥ୍ୟବିଭାଗ ଠିକଣାରେ ସେ ଏ ଚିଠି ପଠାଇବ । ଏଥିରେ ସବୁ ଅଧିବାସୀଙ୍କ ସ୍ୱାକ୍ଷର ରହିବ ତାର ବିନୀତ ଆବେଦନ ସହିତ । ଚିକିତ୍ସାଳୟ ଓ ଚିକିତ୍ସକଙ୍କର ଜରୁରୀ ପ୍ରୟୋଜନ ଉପରେ ଗୁରୁତ୍ୱ ଦେବ ସେ ।

ଏ ନୂଆ ପରିକଳ୍ପନା କଥା ଭାବି ତା ମନଟା ବେଶ୍ ଉତ୍ତେଜିତ ହୋଇରହିଲା ସାରା ସକାଳଟା । କିପରି ଏ ଅସାଧ୍ୟ ସାଧନ କରିବ, କିପରି ଉପକାର କରିବ ଲୋକଙ୍କର, ଗୌରୀର ମା ଭଳି ଅସହାୟ ଅବସ୍ଥାରେ ପଡ଼ିରହିବାକୁ ହେବନି କାହାରିକୁ ଏ ଗାଁରେ ।

ଚିଠି ସୁକୁମାରବାବୁ ଖୋଲିଥିଲେ ଆଗ୍ରହରେ, ଯଦିଓ ମନ ତାଙ୍କର ଆନ୍ଦୋଳିତ ହୋଇଥିଲା ଆଶାରେ ଓ ଆଶଙ୍କାରେ, ପ୍ରଥମେ ଭାବିଲେ ସ୍ମିତା ତାଙ୍କର କାଲିର ପ୍ରସ୍ତାବକୁ ହୁଏତ ସ୍ୱୀକାର କରିଛି; ପରେ ପରେ ଭାବିଲେ ହୁଏତ ଇସ୍ତଫା-ପତ୍ର ଦେଇଛି । ଚିଠିକୁ ଖୋଲି ତତ୍‌କ୍ଷଣି ସବୁ ଆଶା-ଆଶଙ୍କା ପାଣି ଫାଟିଗଲା ଯେପରି । ଗୋଟାଏ ତୁଚ୍ଛା ନୀରସ ବିଷୟ; କଣ ନା ଗୋଟାଏ ଡାକ୍ତରଖାନା ବସାଇବାର ପରିକଳ୍ପନା । 'ଧେତ୍' କହି ଚିଠିଟିକୁ ଟେବୁଲ ଉପରକୁ ଫୋପାଡ଼ିଦେଲେ ସେ । ତାପରେ ଭାବିଲେ—ସ୍ମିତାର କି ଗର୍ବ, କି ଆସ୍ପର୍ଦ୍ଧା ! ଏପର୍ଯ୍ୟନ୍ତ ତାଙ୍କ ଅଧୀନସ୍ଥ କର୍ମଚାରୀ କେହି ଏ ଭଳି

ସାହସ କରିନାହାନ୍ତି, ନିଜେ ସେ ଏ ପ୍ରସ୍ତାବ ନେଇ ଆସିପାରିଲା ନାହିଁ, ପରିଶ୍ରମିକା ହାତରେ ପଠାଇଲା । କାଲି ଏତେ ଦମ୍ଭ କରି ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଆଜି ପୁଣି ତାଙ୍କର ଦୟା ପ୍ରାର୍ଥନା କରିଚ୍ଛ ! କିଷ ନା ଦାତବ୍ୟ ଚିକିତ୍ସାଳୟ କରିବ ଗାଁରେ । ରତ୍ନା ଯାହା କହୁଥିଲା ସତ—ସିତା ବୋକା, ମଫସଲି, ଅଦ୍ଭୁତ କଥାଗୁଡ଼େ ମୁଣ୍ଡ ଭିତରେ ଧରି ରଖିଥିବା ମୂର୍ଖଟାଏ । ସୁକୁମାର ବାବୁ କେଉଁଠି ଆଉ ଦାତବ୍ୟ-ଚିକିତ୍ସାଳୟ କେଉଁଠି ?

ଶୂନ୍ୟ ଘରଟିକୁ ଚମକାଇଦେଇ ସୁକୁମାରବାବୁ ହସିଉଠିଲେ । ସେ ହସ ଶବ୍ଦରେ ଆଶ୍ଚର୍ଯ୍ୟ ହୋଇ ଧାଇଁଆସିଲେ ପରିଗ୍ରହିକା ଦୁଇଟି । ହାତ ହଲାଇ ନୀରବରେ ସେମାନଙ୍କୁ ବିଦା କଲେ ସୁକୁମାର ବାବୁ । ତାପରେ ପୁଣି ଗୋଟାଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ । ସିଗାରେଟ୍‌ର ଧୂଆଁ ଖେଳିଗଲାପରି କଥାଗୁଡ଼ିକ ଖେଳିଯାଉଥିଲା ତାଙ୍କ ମନ ଭିତରେ···ଗାଁରେ ଯେଉଁ କେତେଟା ଲୋକ ଅନ୍ତତଃ ପ୍ରତିବର୍ଷ ମରୁଛନ୍ତି ସେହି କେତେଟା ମରିବେନି । ଶ୍ୱଶୁର ତ ନାଗରିକ ଶିକ୍ଷାଶ୍ରମ କରି ଗାଁଲୋକଙ୍କୁ ଅନେକ ସାହସୀ କରାଇ ଦେଇଯାଇଛନ୍ତି, ଫଳରେ ପୂର୍ବଭଳି ଅଖଣ୍ଡ କର୍ତ୍ତୃତ୍ୱ ରହିନାହିଁ । ମୂର୍ଖଲୋକଗୁଡ଼ାକ ଯାହା ବା ମାନୁଛନ୍ତି ଆଉ କଣ ମାନିବେ ଦି ଅକ୍ଷର ପଢ଼ିଲେ ? ସବୁକାଳେ ଦଳେ ଶାସକ ହେବାକୁ ଯେପରି ମୂର୍ଖ କେତୋଟି ଥିବା ଦରକାର ତ । ତାଙ୍କ ଗାଁର ଲୋକଗୁଡ଼ିକ ଅତି ଚମତ୍କାର । ଯଦିଓ ଜମିଦାରୀ ଉଚ୍ଛେଦ ଆଇନ୍ ପ୍ରଚଳିତ ହୋଇଥିଲେ ବି ସେ ତାଙ୍କର ପ୍ରାପ୍ୟ ଠିକ ଠିକ୍ ପୂର୍ବପରି ପାଇଆସୁଛନ୍ତି । ପ୍ରଜାମାନଙ୍କ ଆଖିରେ ସେ ଜଣେ ମହାମାନବ । ପୂର୍ବର ଜମିଦାରମାନଙ୍କୁ ସେମାନେ ଯେପରି ଶ୍ରଦ୍ଧା ସମ୍ମାନ ଦେଇ ପୂଜା କରିଆସୁଥିଲେ ଏବେ ବି ସେ ଅନ୍ଧବିଶ୍ୱାସକୁ ଠିକ୍ ସେହିଭଳି ରଖିଛନ୍ତି ମନ ଭିତରେ । ଏମାନଙ୍କୁ ଯଦି ସ୍କୁଲ କଲେଜ ବସାଇ ଶିକ୍ଷିତ କରିଦିଆଯାଏ, ଡାକ୍ତରଖାନା ବସାଇ ସେମାନଙ୍କ ମନରୁ ରୋଗର ଭୟ ଦୂର କରିଦିଆଯାଏ, ତାହେଲେ କେତେଟା ଦିନ ଭିତରେ ସେମାନେ ନିଜେ ନିଜେ ତ ଜଣେ ଜଣେ ବଡ଼ ମଣିଷ ହୋଇଯିବେ, ସ୍ୱାଧୀନ ଚିନ୍ତା କରିଶିଖିବେ, ଶିଖିବେ ନ୍ୟାୟ ଓ ଅନ୍ୟାୟର ବିଗ୍ଭର କରିବାକୁ । ସେତେବେଳେ ସେମାନଙ୍କୁ ସମ୍ଭାଳିବ କିଏ ? ଆଖିସାମନାରେ ଏଭଳି ହଜାର ହଜାର ଉଦାହରଣ କିଷ ସେ ଦେଖିନାହାନ୍ତି ? ଦେଶର ଚାରିଆଡ଼େ ଧର୍ମଘଟ ଧର୍ମଘଟ ବୋଲି ଡାକ ପଡ଼ିଛି । ସବୁଠାରେ ଆନ୍ଦୋଳନ, ସବୁ କଥାରେ ବିପ୍ଳବ । ସେ ସବୁଥିରୁ ଏପର୍ଯ୍ୟନ୍ତ ତାଙ୍କର ସୌଭାଗ୍ୟବଶତଃ ଦୂରେଇ ରହିଛି ଏ ଜମିଦାରି ଖଣ୍ଡିକ । ଥାଆନ୍ତୁ ଏମାନେ ଏହିପରି, ଯେତେ ଦିନ ଏ ଅନ୍ଧାର ଭିତରେ ରହିପାରିବେ ସେତେ ମଙ୍ଗଳ, ଥରେ ଅନ୍ଧାର ଭିତରୁ ଆଲୁଅକୁ ଆସିଲେ ଅର୍ଥାତ୍ ପଶୁତ୍ୱରୁ ମଣିଷତ୍ୱକୁ ଆସିଲେ ଆଉ ସେ ପୂର୍ବାବସ୍ଥାକୁ ଫେରିଯିବେନି, ଯିବାକୁ ଚାହିଁବେନି ତାହା ଧ୍ରୁବସତ୍ୟ ।

ଲମ୍ବା ଦର୍ପଣରେ ପ୍ରତିଫଳିତ ହୋଇଥିବା ନିଜର ସୁଗଠିତ, ବଳିଷ୍ଠ ଦୀର୍ଘାବୟବକୁ ଚାହିଁ ନିଜ ମନକୁ ମନ ଗର୍ବ ଅନୁଭବ କଲେ ସୁକୁମାରବାବୁ । ଭାବିଲେ···ରୂପକଥାର ରାଜପୁତ୍ର କଣ ତାଙ୍କଠାରୁ ଅଧିକ ସୁନ୍ଦର ? କେବେ ନୁହେଁ । ମନେ ମନେ ହସିଲେ ସେ ...କାଲିର ଘଟଣା ସତ୍ତ୍ୱେ ସ୍ମିତା ନିକଟରେ ସେ ଜଣେ ମହାନ୍ ବଦାନ୍ୟ ବ୍ୟକ୍ତି ହୋଇ ରହିଛନ୍ତି ତ ! ଏହା ତାଙ୍କର ସୁନ୍ଦର ଚେହେରାର କରାମତି ନିଶ୍ଚୟ···ଏଥିରେ ଭିନ୍ନମତ ହେଲେ ସନ୍ଦେହ ନାହିଁ । କିନ୍ତୁ...କିନ୍ତୁ ସ୍ମିତା ଖାଲି ଗୌରବ ଦେଉଛି, ଭଲପାଉନି ନୁହେଁ । ତାଙ୍କର ଏହି ସୁନ୍ଦର ଚେହେରାପାଇଁ ନିଜେ ଯାଚିହୋଇ ଅନେକ ତରୁଣୀ ତାଙ୍କ ପାଦତଳେ ଲୋଟିଛନ୍ତି, ଭିକ୍ଷା କରିଛନ୍ତି ତାଙ୍କର କରୁଣା; କିନ୍ତୁ ସ୍ମିତା ? ସେ ଓଲଟି ପଦାଘାତ କରୁଛି ତାଙ୍କର ପ୍ରେମକୁ···'

ଏକଥା ମନେହେବା କ୍ଷଣି ମୁହୂର୍ତ୍ତିକ ଭିତରେ ବିକୃତ ହୋଇଗଲା ସୁକୁମାରବାବୁଙ୍କ ସୁନ୍ଦର ଚେହେରା । ରୁଦ୍ଧରାଗରେ ଆହତ ସିଂହ ଭଳି ଗର୍ଜି ଉଠିଲା ତାଙ୍କ ହୃଦୟ । ଦୟା, କ୍ଷମା, ସ୍ନେହରେ ଭରି ରହିଥିବା ପରି ମନେହେଉଥିବା ସୁନ୍ଦର ଆଖି ଦୁଇଟିରେ ଯେପରି ଅଗ୍ନିପିଣ୍ଡ ଭଳି ଜଳି ଉଠିଲା ପ୍ରତିହିଂସା । ହାତ ଦୁଇଟାକୁ ପରସ୍ପର ସହିତ ଆବଦ୍ଧକରି ରୁଦ୍ଧ ଆକ୍ରୋଶରେ ଘରର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ପଦଚାରଣ କରିବାକୁ ଲାଗିଲେ ସେ । ...ତାର ଗର୍ବକୁ ଚୂର୍ଣ୍ଣ କରିଦେବାକୁ ଚାହାନ୍ତି ସେ—ଯେ କୌଣସି ଉପାୟରେ ହେଉ—ଛଳେ ବଳେ କୌଶଳେ ସ୍ମିତାକୁ ହାତମୁଠା ଭିତରକୁ ଆଣିବାକୁ ପଡ଼ିବ । ତାକୁ ପାଇବା ନିହାତି ଦରକାର ତାଙ୍କର ।

ଉତ୍ତେଜନାରେ ସୁଗୌର ମୁହଁ ତାଙ୍କର ଆରକ୍ତ ହୋଇଯାଇଥିଲା । କପାଳର ନୀଳ ଶିରାଗୁଡ଼ିକ ଦପ୍ ଦପ୍ ହୋଇ କମ୍ପିତ ହେଉଥିଲେ । ନିଜକୁ ସ୍ୱାଭାବିକ ଅବସ୍ଥାକୁ ଫେରାଇ ଆଣିବାକୁ ତାଙ୍କୁ ଦୀର୍ଘ ସମୟ ଲାଗିଥିଲା । ହୃଦୟ ମନ ଚାହୁଁଥିଲା ଗୁପ୍ତ ସ୍ଥାନରୁ ପାନୀୟ ବୋତଲ କାଢିଆଣି ତାର ସହାୟତାରେ ନିଜକୁ ଟିକିଏ ସୁସ୍ଥ କରିବାକୁ; କିନ୍ତୁ ସେ ଅବସ୍ଥାରେ ବି ନିଜର ଉଚ୍ଛୃଙ୍ଖଳ ମନକୁ ଲଗାମ୍ ଧରି ଅଟକାଇଲେ ସେ । ପରିଚାରକ ଓ କର୍ମଚାରୀଙ୍କ ଉପସ୍ଥିତିରେ ମାତାଲ ହୋଇ ନିଜର ସମ୍ମାନ ହାନି କରିବା ଭଳି ମୂର୍ଖ ବ୍ୟକ୍ତି ସେ ନୁହନ୍ତି ।

ଉପରବେଳା ପ୍ରତ୍ୟୁତ୍ତରରେ ସୁକୁମାରବାବୁ ସ୍ମିତାପାଖକୁ ଯେଉଁ ଚିଠି ଲେଖିଲେ ସେଥିରେ ଅର୍ଥ ଦାନ କରିବାକୁ ଆଦୌ ଅସ୍ୱୀକାର କରି ନଥିଲେ; ବିନୀତ ଭାବରେ ଟିକିଏ ସମୟ ପ୍ରାର୍ଥନା କରିଥିଲେ । ସ୍ମିତାର ସାଧୁ ଉଦ୍ୟମକୁ ପ୍ରଶଂସା କରିଥିଲେ ପଞ୍ଚମୁଖ ହୋଇ ।

ଚଠି ପାଇ ଆନନ୍ଦିତ ହେଲ ସିତା । ସୁକୁମ ରବାବୁଙ୍କ ପ୍ରଶଂସାତ୍ମକ ଅଧିକ ଶ୍ରଦ୍ଧାରେ ମନଟା ଭରି ଉଠିଲ ତାର । ଉତ୍ସାହରେ ସେ ସେହି ଚଠିଟିକୁ ସହକର୍ମିଣୀମାନଙ୍କୁ ଦେଖାଇଲ ।

ସୁକୁମାରବାବୁଙ୍କଠାରୁ ଉତ୍ସାହ ଓ ପ୍ରଶଂସା ମିଳଲ । କନ୍ତୁ ଛାତ୍ରୀମାନଙ୍କ ଅଭିଭାବକ-ମାନଙ୍କଠାରୁ କୌଣସି ଉତ୍ସାହ କ ସାହାଯ୍ୟ ମିଳଲନାହିଁ । ଏପର କ ଯେଉଁ ସ୍ୱାକ୍ଷର ଟିକକ ଉପରେ ତାର ସମ୍ପୂର୍ଣ୍ଣ ପରକଳ୍ପନା ନର୍ଭରକରୁଥିଲ, ସେହି ସ୍ୱାକ୍ଷରଟିକକ ଦେବାକୁ ବ ସମସ୍ତେ ଅସ୍ୱୀକାର କଲେ । ବରଂ, ଅନନ୍ଦଙ୍କ ପଲ୍ଲୀବାସୀଙ୍କ ଆଖିମୁହଁରେ ସନ୍ଦେହର ଛାୟା ଦେଖାଦେଲ । ସ୍ୱାକ୍ଷର ବା ଟିପଚିହ୍ନ ଯେପର ଗୋଟାଏ ମୂର୍ତ୍ତିମନ୍ତ ସର୍ବନାଶ ସେମାନଙ୍କ ପକ୍ଷରେ ! ଏକମାତ୍ର ସେମାନଙ୍କର ପ୍ରଭୁ ଜମିଦାର ସାଆନ୍ତଙ୍କ ନର୍ଦ୍ଦେଶରେ ଯେମାନେ ଏହି ଟିପଚହ୍ନ ବା ସ୍ୱାକ୍ଷର ନର୍ଭୟରେ ଦେଇପାରନ୍ତେ, ତାଛଡ଼ା ଅନ୍ୟ କାହାର କଥାରେ ନୁହେଁ ।

ମନେ ମନେ ଆହତ ଅନୁଭବ କଲ ସିତା, ତେବେ ବ ହତୋତ୍ସାହ ହୋଇପଡ଼ିଲ ନାହିଁ । ନା, ଏଭଳ କାମ ହୋଇପାରବନ । ବାହାରକୁ ବାହାରବାକୁ ପଡ଼ିବ ତାକୁ; ଦ୍ୱାର ଦ୍ୱାର ବୁଲ ଯେ ଭିକ୍ଷା ମାଗିବ ! କଥାଟା ମନକୁ ଆସିଲକ୍ଷଣି ପ୍ରଥମେ ଟିକଏ ଲଜ୍ଜିତ ଅନୁଭବ କଲ ସେ । ବଡ଼ ସଙ୍କୋଚ ଲାଗିବ...କନ୍ତୁ କରବାକୁ ପଡ଼ିବ । ଦୁଇଟିଦନଟିଏ ଦେଖି ଅବଶେଷରେ ବାହାରପଡ଼ିଲ ସେ ସାଙ୍ଗରେ ଅନ୍ୟ ଦୁଇଜଣଙ୍କୁ ନେଇ । ପାଦ ଦୁଇଟି ଯେପର ଆଗକୁ ଚାଲିବାକୁ ଚାହୁଁ ନଥିଲେ, ସବୁଠକ କୁଣ୍ଠା ଆସି ବାଧା ଦେବାକୁ ଚାହିଁଲ । କୌଣସି ମତେ ଭଗବାନଙ୍କ ନାମ ସ୍ମରଣ କର ମନରୁ ସେ କୁଣ୍ଠା ଓ ସଙ୍କୋଚକୁ ଦୂର କରଦେବାକୁ ପ୍ରାଣପଣ ଚେଷ୍ଟା କଲ ।

ସାଧାରଣତଃ ଗାଁଗୁଡ଼ିକ ଯେପର ରହିଥାଏ ସେହିପର ରାସ୍ତାର ଦୁଇକଡ଼ରେ ଘରଘର-ଗୁଡ଼ିକ ରହିଛି ଲଗାଲଗି ହୋଇ । ପ୍ରାୟ ଅଧିକାଂଶ ଗ୍ରାମବାସୀ କୃଷ କରନ୍ତି । ଯେଉଁ କେତୋଟି ବ୍ରାହ୍ମଣଘର ରହିଛି, ସେମାନଙ୍କର ଜୀବିକା ହେଲ ଆଖପାଖ ଦଶଟା ଗାଁରେ ଯଜମାନଗିରି କରବା ଅର୍ଥାତ୍ ପୌରୋହିତ୍ୟ କରବା । ଆଉ କେତେ ଜଣ ଦେବୋତ୍ତର ସମ୍ପତ୍ତି ଓ ଦେବତାଙ୍କର ରକ୍ଷଣାବେକ୍ଷଣର ଭାର ନେଇ ସେଥିରେ ଚଳନ୍ତି । ପୂର୍ବତନ ଜମିଦାରଙ୍କ ଅମଳରେ ଏହି ବ୍ରାହ୍ମଣମାନଙ୍କ ଅବସ୍ଥା ବେଶ୍ ସ୍ୱଚ୍ଛଳ ଥିଲ, କାରଣ ଜମିଦାର ଅତ୍ୟନ୍ତ ଦେବ ବ୍ରାହ୍ମଣ ଭକ୍ତ ଥିଲେ । ବର୍ତ୍ତମାନ ଆଉ ସେତେ ସ୍ୱଚ୍ଛଳ ନୁହେଁ, ଦୁଃଖ କଷ୍ଟେ ଚଳବାକୁ ପଡ଼େ । ସର୍ବପ୍ରଥମେ ଏହିପର ଜଣେ ଗୃହସ୍ଥ ଘରର ଦ୍ୱାରସ୍ଥ ହେଲ ସିତା । କଛି କ୍ଷଣର ଅଭିଜ୍ଞତା ପରେ ତା ମନର ଧାରଣା ବଦଳଗଲ ସମ୍ପୂର୍ଣ୍ଣ ରୂପେ ।

ମନ ଭିତରେ ଅତି ଯତ୍ନରେ ସେ ଯେଉଁ ଆକାଶଚୁମ୍ବୀ ସୌଧଟିକୁ ଗଢ଼ିଥିଲା, ତାହା ନିମିଷକ ମଧ୍ୟରେ ଭୂମିଶାୟୀ ହୋଇଗଲା । କଳ୍ପନା ଓ ବାସ୍ତବ ଭିତରେ ବହୁତ ପ୍ରଭେଦ —ବହୁତ ପ୍ରଭେଦ ! ସେମାନଙ୍କ ଶ୍ରେଷ୍ଠ ଦଳଟିକୁ ଦେଖି ପ୍ରଥମେ ସେମାନେ ବିସ୍ମିତ ହୋଇଥିଲେ, ପରେ ପଡ଼ଟି ମହିଳାଙ୍କ ଗ୍ରହାଣୀରେ ଯେ ସନ୍ଦେହ ଘନୀଭୂତ ହୋଇ-ଉଠିଲା, ତାହା ଜାଣିବାକୁ କଷ୍ଟ ହେଲନାହିଁ ସ୍ମିତା ପକ୍ଷରେ । ଅତି କଷ୍ଟରେ ଅତି ଭଦ୍ର ଓ ବିନୀତ ଭାବରେ ସ୍ମିତା ସେତେବେଳେ ଡାକ୍ତରଖାନାଟିଏ କରାଇବାର ଉଦ୍ଦେଶ୍ୟ ଓ ତାର ଉପକାରିତା ବିଷୟରେ ବୁଝାଇଲା, ପ୍ରତ୍ୟୁତ୍ତରରେ ସେ ଶୁଣିଲା ଯେ ଡାକ୍ତରଖାନାର ଆବଶ୍ୟକତା ଆଦୌ ନାହିଁ ସେମାନଙ୍କର; ସେମାନେ ବେଶ୍ ଚଳିଯାଉଛନ୍ତି, କିଛି ଅସୁବିଧା ହେଉନି ତ । ଗାଁ ବୈଦ୍ୟ ଅଛନ୍ତି । ଯାହାର ବଞ୍ଚିବା କଥା ସେ ଯିମିତିହେଲେ ବଞ୍ଚିବ, ଯାହାର ଆୟୁଷ ସରିଯିବ ତାକୁ, ଡାକ୍ତରଖାନା କଲେ ବି କିଏ ବଞ୍ଚେଇଁହବ ? ମିଛରେ ସେ ହାଡ଼ି ପାଣଙ୍କ ଔଷଧ ପାଣି ଖାଇ ଜାତି ମାରିହେବ । ଏବେ ତ ସେ ଗାନ୍ଧୀ ମହାତ୍ମା ଆସିଲୁଠୁ ଆଉ ଜାତି ବୋଲି ଯାହା ବାକି ଅଛି ! ସେତକ ବି ଗଲେ ଖାଲି ନର୍କରେ ପଡ଼ିବା ହିଁ ସାର ହେବ ।

ଘରର ବୁଢ଼ୀଟି ପୁଣି ମୁହଁ ମୋଡ଼ି କହିଲେ, 'ଆହେ ଝିଅ, ସେଇଥିପାଇଁ ପରା ନାତୁଣୀଟା ଯାହା ଦି' ଅକ୍ଷର ପଢୁଥିଲା ଇସ୍କୁଲ ଯାଇ, ତମେ ତ ଯାହା କଲ, ଏ ଖିରସ୍ତାନ ମାଷ୍ଟ୍ରାଣୀଙ୍କ ଅମଳରେ ଯାହା ହେଇ ନଥିଲା, ତମେ ବ୍ରାହ୍ମଣଘର ଝିଅ ଆସି ସେଇଆ କଲ; ହାଡ଼ି ପିଲାଙ୍କୁ ଆଣି ଇସ୍କୁଲରେ ପୂରାଇଲ । ଆଉ କଣ କରନ୍ତି, ନାତୁଣୀଟାର ନାଁ କଟେଇ ଆଣିଲି ...'

ଆହତ କଣ୍ଠରେ ସ୍ମିତା କହିଲା, 'ଆଜିକାଲି ଆଉ ହାଡ଼ି ପାଣ ବୋଲି କହିବାକୁ ଅଛି ମାଉସୀ ? ସରକାର ତ ଆଇନ୍ କରିଦେଇଛି । ଏକଥା ଜାଣିଲେ ଆମକୁ ଦଣ୍ଡ ଦେବ । ସେକଥା ଛାଡ଼ନ୍ତୁ । ଆମର ଶାସ୍ତ୍ରରେ ପରା ଅଛି, ନିଜେ ମହାଲକ୍ଷ୍ମୀ ଚଣ୍ଡାଳଘରେ ପୂଜା ପାଇ-ଥିଲେ ! ହାଡ଼ିମାନେ କଣ ମଣିଷ ନୁହନ୍ତି ?' ପୂର୍ବପରି କହିଲେ ବୁଢ଼ୀଟି,'ସେ ଶାସ୍ତ୍ରର କଥା, ଶାସ୍ତ୍ରରେ ଥାଉ, ତା ବୋଲି ଆମେ ଜାଣି ଜାଣି ଏଇଆ କରିବୁ ? ଆଉ କିଛି ବାକି ନାହିଁ ପରା କହିଲ, ଧର୍ମ ଗଲା, ଏଥର ସବୁ ବୁଡ଼ିବ ।'

ସ୍ମିତା ଆଉ ଖୋଜିପାରିଲାନି କଣ ଉତ୍ତର ଦେବ ଏ କଥାର । ଯୁଗ ଯୁଗ ଧରି ଯେଉଁ ଅନ୍ଧବିଶ୍ୱାସ ଚେର ମାଡ଼ି ଭୂଇଁରେ ରହିଯାଇଛି ତାକୁ କଣ ଏକାଥରକେ ଉପୁଡ଼ାଇ ଦିଆ-ଯାଇ ପାରିବ ? ଏ ପରିବାରଟି ଏଥିପାଇଁ ଯେ ମୂଳରୁ ତା ଉପରେ ଅସନ୍ତୁଷ୍ଟ, ଏକଥା ଜାଣିପାରିଲା ସେ । ନିରାଶ ହୋଇ ଫେରିବାକୁ ପଡ଼ିଲା । ତାର ସତ୍ ଉଦ୍ୟମର ପ୍ରଥମ ପଦକ୍ଷେପ ବ୍ୟର୍ଥ ହୋଇଛି ଭାବି ସେ ଦବିଗଲା । ଅନ୍ୟମନସ୍କ ଭାବରେ ନିଜର ଚଟି ଦୁଇଟା

ନ ନେଇ ସେ ଚାଲି ଆସିଥିଲା କିଛିଦୂର ପର୍ଯ୍ୟନ୍ତ··· ହଠାତ୍ ମନେପଡ଼ିବାରୁ ଅନ୍ୟମାନଙ୍କୁ ଅପେକ୍ଷା କରିବାକୁ କହି ସେ ଫେରିଲା । ଦ୍ୱାର ପାଖକୁ ଯାଇ ଚଟି ଦୁଇଟା ଆଣିଲାବେଳକୁ ଘର ଭିତରର କଥାବାର୍ତ୍ତା ତା କାନ ଭିତରେ ପଶି ଯେପରି ସେଇଠି ସେ ଚଟାଣ ସଙ୍ଗେ ଗୁନ୍ଥି ଦେଲା ତାକୁ । କଥାବାର୍ତ୍ତାଗୁଡ଼ିକ ଏହିପରି ଚାଲିଥିଲା—ଆଲୋ, ଏଇ ମାଇକିନିଆ ଆସି ଆମ ଜମିଦାରବାବୁଙ୍କୁ ସାରିଦେଲା । ନ ଦେଲେ ଏତେ କାଳ ହେଲା କେବେ ହାଡ଼ି ଡିମିକିଙ୍କୁ ଇସ୍କୁଲରେ ପୂରାଇଥିଲେ ସେ ? ଏବେ ସ୍ତ୍ରୀର କଥାରେ ପଡ଼ି ଏଇସ୍ବା କଲେ । କଲିକତାରୁ ନା କୋଉଠୁ ପରା ବାବୁ ଆଣିଛନ୍ତି ସ୍ତ୍ରୀକୁ ସଙ୍ଗରେ ଧରି !’

‘ଆଲୋ ଆଈ, ରୂପ ଭଲା ରୂପ ତ ! ସତେ ମ କେଡ଼େ ସୁନ୍ଦର ଦେଖିବାକୁ ’

‘ଆଲୋ ଛାଡ଼୍, ରୂପ କଣ ଧୋଇ ଖାଇବୁ ? ଗୁଣ ତ ଇମିତି ! ହେଇ ଆଜି ସକାଳେ ମରା ନାଥିଆ କହୁଥିଲା, ସେଦିନ ଅଧରାତିରେ କୁଆଡ଼େ ଚରୁ ବାବୁଆଣୀ ନଈକୂଳ ଆଡ଼ୁ ଫେରୁଥିଲେ । ଆହା, ବାବୁ ତ ଆମର ଇମିତି ନଥିଲେ . କୋଉଁଠୁ ଆସି ଇଏ ଜୁଟିଲା ।’

ସ୍ମିତାର ମନେହେଲା ଦିନର ସବୁ ଆଲୁଅ ଯିମିତି ହଠାତ୍ ଲିଭିଯାଇଛି, ଚାରିଆଡ଼େ ଖାଲି ଅନ୍ଧାର । କାନ୍ଥଟାରେ ହାତ ଭରିଦେଇ କୌଣସିମତେ ନିଜର ଅବସ୍ଥାରୁ ନିଜକୁ ବଞ୍ଚାଇନେଲା ସେ । ଟିକିଏ ଦମ୍ ନେଲାପରେ ନୀରବରେ ଚଟି ଦୁଇଟା ହାତରେ ଧରି ଫେରିଆସିଲା ରାସ୍ତାକୁ । ଇଚ୍ଛା ହେଉଥିଲା ନିର୍ଜନ ଜାଗାଟେ ପାଆନ୍ତା ଯଦି ଆଖିର ଅସରନ୍ତି ଲୁହକୁ ମୁକ୍ତି ଦିଅନ୍ତା—କିନ୍ତୁ ସେ ଉପାୟ ନାହିଁ ।

ଏଇ ତେବେ ଜନତା—ଗଣଦେବତା ! ଯାହାର ଦୁଃଖ, ଦାରିଦ୍ର୍ୟ, ଅଭାବ, ଅଜ୍ଞାନତାରେ ନିଷ୍ପେଷିତ କରୁଣ ମୂର୍ତ୍ତି ଦେଖି ଦୂରେ କାନ୍ଦୁଥିଲା ତା ଅନ୍ତର, ଯାହାଙ୍କ ପାଇଁ ପ୍ରତିଜ୍ଞା କରିଥିଲା ଯେତେ କଷ୍ଟ ପଛକେ ହେଉ ନିଜେ ସହି ସେମାନଙ୍କ ଉନ୍ନତି କରିବ, ସେମାନଙ୍କର ଉପକାର କରିବ—ଏଇ ହେଉଛି ତାଙ୍କର ପ୍ରକୃତ ରୂପ । ସବୁ ଉତ୍ସାହ ଯେପରି ଗୋଟିଏ ମୁହୂର୍ତ୍ତରେ ଉଭେଇଯାଇଛି । ସେ ପାଖକୁ ଆସିଲା ପରେ ତାର ଅସମ୍ଭବ ଭାବରେ ପାଂଶୁ ଦିଶୁଥିବା ମୁହଁକୁ ଚାହିଁ ଅନ୍ୟମାନେ ଏକାସଙ୍ଗରେ ପ୍ରଶ୍ନ କଲେ, ‘କଣ ହେଇଛି ଆପଣଙ୍କର ? ମୁହଁଟା କାହିଁକି କଳା ଦିଶୁଛି ··ଦେହ ଖରାପ ଲାଗୁନି ତ ?’

‘ମୁଣ୍ଡଟା ହଠାତ୍ ଘୁରାଇଦେଲା । ମୋର ତ ପୁଣି ମଝି ମଝିରେ ମୂର୍ଚ୍ଛା ହେଇଯିବା ରୋଗ ଅଛି, ତେଣୁ ଭାବିଲି···’ ବଡ଼ କ୍ଳାନ୍ତ କଣ୍ଠରେ କହିଲା ସ୍ମିତା ।

‘ଦେଖିଲେ, ମୁଁ କହୁଥିଲି ନା, ଏମାନଙ୍କଠୁ କିଛି ଉପକାର ମିଳିବନି । କଣ ଆଉ ଗୋଟାଏ ଘରକୁ ଯିବା ନା ଫେରିଯିବା ? ଆପଣଙ୍କ ଦେହ ଭଲ ଲାଗୁନି, ତାପରେ ସମସ୍ତେ ତ ଏଇଆ କହିବେ ।’

ସ୍ମିତାର ବଡ଼ ଇଚ୍ଛାହେଲା କହ୍ନୁବ ଫେରିଯିବାକୁ; କିନ୍ତୁ ଏତେ ସହଜରେ ସେ ଯଦି ଫେରିଯାଏ, ତାହେଲେ ଏହି ସହକର୍ମିଣୀମାନେ ତାକୁ କଣ ଉପହାସ କରିବେନି ? ନିଜର ବିବେକ କଣ ଧିକ୍କାର କରିବନି ? ପ୍ରଥମରୁ ପରାଜୟ ସ୍ୱୀକାର କଲେ ଜୀବନରେ କେବେ-ହେଲେ ସେ ଗଢ଼ିପାରିବ ନାହିଁ ବାପୁଜୀଙ୍କ ସ୍ୱପ୍ନର ଭାରତ । ବିଜ୍ଞ ପଣ୍ଡିତମାନେ ସେଥିପାଇଁ ଆଗରୁ ଉଚ୍ଚ ଆଦର୍ଶର ପଥ କଣ୍ଟକମୟ ବୋଲି କହିଛନ୍ତି...ପ୍ରତି ପଦକ୍ଷେପରେ ପାଦ ରକ୍ତାକ୍ତ ହେବ; କିନ୍ତୁ ମନରେ ଦୃଢ଼ତା ରଖି ଆଗେଇବାକୁ ପଡ଼ିବ ତାକୁ । ମହାତ୍ମା ଗାନ୍ଧୀଙ୍କ ଅମରବାଣୀଗୁଡ଼ିକୁ ମନେ ପକାଇ ନୂତନ ଶକ୍ତି ଲଭ କରିବାକୁ ଚେଷ୍ଟାକଲା ସେ ।

"ଗୁରୁମା....କୁଆଡ଼େ ଯାଉଛ ?" ଶିଶୁକଣ୍ଠର ଆହ୍ୱାନ ଶୁଣି ସେ ଚାହିଁଲା । ଘରଟି ଆଗରେ ଅମସ୍ତଗଛର ବାଡ଼ ଦିଆଯାଇଛି । ଛୋଟ ବାଉଁଶ ତାଟିରେ ତିଆରି ଦ୍ୱାରଟିକୁ ଅଧା ଖୋଲି ଯେଉଁ କିଶୋରୀଟି ଚାହିଁଥିଲା, ସେ ହେଉଛି ନଳିନୀ । ମନରେ ନୂତନ ଆଶା ଧରି ସ୍ମିତା ପଶିଲା ସେ ଘରେ । ନଳିନୀର ଗୁରୁମା ରୂପେ ତାଙ୍କୁ ବହୁତ ଆଦର ଓ ସମ୍ମାନ ମିଳିଲା । ଯଦିଚ ସେ ନିଃସନ୍ଦେହ ଥିଲା ଯେ ଗତଥର ଭଳି ଏଥର ବି କୌଣସି ଫଳ ମିଳିବନି, ତଥାପି ଯନ୍ତ୍ରଚାଳିତ ପରି ନିଜର ଉଦ୍ଦେଶ୍ୟ ଜଣାଇଲା ସେ । କିନ୍ତୁ ଦେଖାଗଲା—ଗୌରୀ ମା'ର ଦୁର୍ଦ୍ଦଶା ବର୍ଣ୍ଣନା କଲାବେଳକୁ ଝରଝର ହୋଇ ଲୁହ ଝରିପଡ଼ିଲା ସାମନାରେ ବସିଥିବା ନାରୀଟିର ଆଖିରୁ । ନଳିନୀର ଜନନୀ ସେ । ଆଖି ଲୁହରେ ଭସୁଭସୁ ସେ କହିଗଲେ, ଅତୀତ ଜୀବନର ଦୁଃଖମୟ ଇତିହାସ—ଦଶବର୍ଷର ପୁଅ, ଆଖି ଆଗରେ ଚାହୁଁ ଚାହୁଁ ଚାଲିଯାଇଛି । ଆଗରୁ ବିଶ୍ୱାସ ଥିଲା ବୋଲି କବିରାଜଙ୍କ ଦୁଆରେ ମୁଣ୍ଡ ପିଟିଦେଇଥିଲେ ବି ସେ ଆସିନାହାନ୍ତି ଦେଖିବାକୁ । ବିନା ଔଷଧରେ, ବିନା ଚିକିତ୍ସାରେ ଏତେ କଅଁଳ ପ୍ରାଣଟା ଚାଲିଗଲା ସିନା ! ଆଜି ଯଦି ଭଲ ଡାକ୍ତରଖାନାଟେ ଥାଆନ୍ତା ଗାଁରେ, ଡାକ୍ତରବାବୁ ଥାଆନ୍ତେ, ତାହେଲେ ଏହା କଣ ଘଟିଥାନ୍ତା ? ଏ କବିରାଜ ଏତେ ଦୁଷ୍ଟପ୍ରକୃତିର ଲୋକ ଯେ ପାଖଗାଁର କବିରାଜ ଡକାଇ ଆଣିବାରେ ବି ବାଧା ଦେଲେ । ଆହା, ସ୍ମିତାର କଥା ଯଦି ସତ ହୁଅନ୍ତା, ଏ ଗାଁର କେଡ଼େ ମଙ୍ଗଳ ହୁଅନ୍ତା । ସେମାନେ ଅବଶ୍ୟ ବେଶି କିଛି ସାହାଯ୍ୟ ଦେଇପାରିବେନି; କିନ୍ତୁ ନିଜର ଅବସ୍ଥାକୁ ଚାହିଁ ନିଶ୍ଚୟ କିଛି ଦେବେ । ଧାନଟିକି ବିକ୍ରୀ ହେଲାକ୍ଷଣି ଟଙ୍କାଟା ପଠାଇଦେବେ ସ୍ମିତା ପାଖକୁ । ଏ ଭଳି ଆଶା ଓ ନିରାଶାର ଢେଉ ଭିତରେ ସ୍ମିତାର ଉଦ୍ୟମ କ୍ଷୀଣ ରୂପ ଧରି ଗଢ଼ିଉଠୁଥିଲା ଧୀରେ ଧୀରେ ।

ସେଦିନ ଶନିବାର । ଗୌରୀ ଆସି ନଥିବାରୁ ଶଙ୍କିତ ହୋଇ ଖିଅପିଆ ସରିବା ପରେ ସ୍କୁଲର ପରିଚାରିକାଟିକୁ ସାଙ୍ଗରେ ନେଇ ସେ ବାହାରିଲା ଗୌରୀର ଘରଆଡ଼େ । ଖରାଟା ଦେହକୁ ବେଶ୍ କାଟୁଛି । ଛତା ତଳେ ମୁଣ୍ଡ ପୋତି ବୋଧହୁଏ ଡାକ୍ତରଖାନା ବିଷୟ ଭାବି ଭାବି ଅନ୍ୟମନସ୍କ ଭାବରେ ଚାଲୁଥିଲା ସ୍ମିତା । ହଠାତ୍ ପରିଚାରିକାଟି କହିଉଠିଲା, 'ମା... ଆହା! କିଏ ମରିଗଲା କି.. ଦେଖିଲ ନିଆଁ କିମିତି ଜଳୁଚି ମଶାଣିରେ । ଆଙ୍ଗୁଠି ଦେଖାଇଲା

ସେ । ତାର ନର୍ଦ୍ଦେଶ କମେ ମୁହଁ ତୋଲି ସ୍ମିତା ଚାହିଁଲା । ନଈ ଆରପାଖରେ ସେ ଆମ୍ବ ବଗିଚ୍ଛ, ତାର କଡ଼ରେ ବୋଧହୁଏ ଶ୍ମଶାନଟା । ଝଡ଼ବେଳର ଝାଉଁଗଛ ଭିତରେ ଏକ-ପ୍ରକାର ଅଭୁତ ରୂପ ଧାରଣ କରି ଧୁ ଧୁ ହୋଇ ଜଳୁଚି ଚିତା । ସ୍ମିତାର ହୃଦ୍‌ଯନ୍ତ୍ରଟା ଧକ୍ ଧକ୍ ହେଲା କିମିତି । ସେଦିନର ସେହି ଶଯ୍ୟାଶାୟିନୀ ନାରୀଟିର ସେହି ଅସହାୟ ରୂପ ଭାସି-ଉଠିଲା ଆଖି ଆଗରେ—ଠିଆହୋଇପଡ଼ି ସେ ଚାହିଁ ରହିଲା ସେଇଆଡ଼କୁ । ପାଖଲୋକେ ବୋଧହୁଏ ଗଛ ବୁଦା ଆଡ଼ୁଆଳରେ ବିଶ୍ରାମ ନେଉଛନ୍ତି—କାରଣ କେହି ଦିଶୁନଥିଲେ । ଖାଲି ସୂର୍ଯ୍ୟ କିରଣର ପ୍ରଖରତାରେ କାଚଖଣ୍ଡ ଭଳି ଚକ୍ ଚକ୍ କରୁଥିଲା ବିସ୍ତୃତ ବାଲୁକା ଶଯ୍ୟା ଓ ତା ଉପରେ ଯେପରି ନିଃସଙ୍ଗ ଭାବରେ ଜଳିଯାଉଥିଲା ଚିତାଟି—ଏ ଜଗତରେ ସବୁ ଆଶା, ଆକାଂକ୍ଷା, ଐଶ୍ବର୍ଯ୍ୟ ଆଉ ଅଭାବ, ଦୁଃଖ ଆଉ ସୁଖର ଶେଷ ପରିଣତିର ଶେଷ ଚିହ୍ନ ।

ଧୁ ଧୁ କରୁଛି ପରିତ୍ୟକ୍ତ ଧାନକ୍ଷେତଗୁଡ଼ାକ । ଚାରିଆଡ଼େ ଏକ ଅଖଣ୍ଡ ନିସ୍ତବ୍ଧତା, ଅନନ୍ତ ଶୂନ୍ୟତା ଘେରି ରହିଛି । ତାରି ଭିତରେ ଜଳୁଥିବା ଚିତାଟି ଆଡ଼କୁ ଚାହିଁ ଆଜି ଅନେକ ଦିନ ପରେ ସ୍ମିତାର ଆଉ ଥରେ ଯେପରି ମନେହେଲା ବଡ଼ ନିଃସହାୟ, ବଡ଼ ନିଃସଙ୍ଗ ସେ ।

ପାଦ ଯେପରି ଚାହୁଁ ନଥିଲା ଆଗକୁ ଯିବାକୁ; ତଥାପି କୌଣସିମତେ ଅଗ୍ରସର ହେଲା ସ୍ମିତା । ଗୌରୀର କୁଡ଼ିଆ ଘରଟି ଆଗରେ ଠିଆହୋଇ ଆଶଙ୍କାଜଡ଼ିତ କଣ୍ଠରେ ଡାକିଲା, ଗୌ....ରୀ...'

କେହି ଉତ୍ତର ଦେଲେନାହିଁ । ତେବେ ବି ଯେପରି ଉତ୍ତର ପାଇଗଲା ସେ । ଖୋଲା ଦ୍ୱାର ବାଟେ ମୁହଁ ଗଳାଇ ଭିତରକୁ ଚାହିଁଲା—ସେଦିନ ପରି କଣ୍ଟି ସମସ୍ତ ଘର ଭିତରର ଅନ୍ଧାରକୁ ତା ଆଖି ଅଭ୍ୟସ୍ତ ହେଲାପରେ ଦେଖିଲା—ନା, ନିର୍ଦ୍ଦିଷ୍ଟ ସ୍ଥାନରେ ସେ ବିଛଣାଟି ନାହିଁ । ତାହେଲେ ସମସ୍ତ ସାଂସାରିକ ଯନ୍ତ୍ରଣାର କବଳରୁ ଉଦ୍ଧାର ପାଇଯାଇଛି ସେ ନାରୀଟି । ଦିନ ଦିନ କରି କଷ୍ଟ ଭୋଗିଲାପରେ ମିଳିଛି ତାକୁ ଚିର ବିଶ୍ରାମ । ଛଳ ଛଳ ଆଖିରେ ମୁହଁ ଫେରାଇଲାକ୍ଷଣି ଦେଖିଲା, ପଡ଼ିଶା ଘରର ବୋଧହୁଏ, ସ୍ତ୍ରୀଲୋକଟିଏ ଠିଆ-ହୋଇଛି ଅଳ୍ପ ପାଖରେ ।

'ଗୌରୀକି ଖୋଜୁଛ ମା ?' କହିଲା ସ୍ତ୍ରୀ ଲୋକଟି ।

ଗୌରୀ-ମା ବୋଧହୁଏ·· ? ସତ କଥା ବୋଲି ଜାଣିଲେ ସୁଦ୍ଧା ସ୍ମିତା କଥାଟି ଉଚ୍ଚାରଣ କରିପାରିଲା ନାହିଁ ।

'ହଁ ମା, ସେ ମରିଗଲା—ଗୌରୀ ଯାଇଚି ସାଙ୍ଗରେ···ଫେରୁ ଫେରୁ ତ କେତେ ଡେରି ହେବ ।'

'ଆଚ୍ଛା, ମୁଁ ତେବେ ଯାଉଛି···ଆଉଥରେ ଆସିବି ...'କହି ଫେରିଲା ସେ । ପରିସ୍ଥିତିଟା ଟିକିଏ ଦୁଃଖିତ ହେଲା ସତ; କିନ୍ତୁ ଏତେ ବାଟ ଏ ଖରାବେଳେ ସ୍ମିତା ତାକୁ ଚଲାଇଆଣି

ଦୃଷ୍ଟିଗୋଚର କରିଥିବାରୁ ବେଶ୍ ଅସନ୍ତୁଷ୍ଟ ବି ହେଲା, ତା ମୁହଁରୁ ଜଣାପଡୁଥିଲା ଯେ ସେ ମନେ ମନେ ବିରକ୍ତ ହୋଇଛନ୍ତି ।

ଦୁହେଁ ଫେରିଲେ—ବାଟଯାକ ପ୍ରାୟ ଚୁପ୍‌ଚାପ୍ ରହି ।

× × × ହୁଏ ତ କଥା ବାର୍ତ୍ତାରେ ନିମଗ୍ନ ଥିବାରୁ ସେମାନେ ଶୁଣିପାରି ନଥିବେ ତାର ଚଟିର ଶବ୍ଦ; କିନ୍ତୁ ସେ ଠିକ୍ ଶୁଣିପାରିଲା ସେମାନଙ୍କ କଥାବାର୍ତ୍ତା । ସୁମିତ୍ରା ଘରେ ଆଡ୍‌ଡାଟା ବସିଛି । ସମସ୍ତଙ୍କ କଣ୍ଠସ୍ୱରକୁ ଛପାଇଦେଇ ଧ୍ୱନିତ ହେଉଛି ସୁମିତ୍ରାର କଣ୍ଠସ୍ୱର, "ତମେ ସବୁ କହୁଥିଲ ମାଳତୀ ଅପା ଯେ ଏତେ ଉପବାସ, ଏତେ ନିଷ୍ଠା କରୁଛି ସେ ନିଶ୍ଚୟ ଭଲ-ହୋଇଥିବ....ହେଲେ ମୁଁ ଆଗରୁ କହୁନି···ବିରାଡ଼ି ଆଖି ବୁଜି ଦୁଧ ପିଇଲେ ଭାବେ ଦୁନିଆ ତାକୁ ଦେଖୁନି । ସତକଥା କେବେ ଲୁଚି ରହିବ ନା ? ମଲ୍ଲୀ ପରି ସକାଳେ କହୁଥିଲା, ଗାଁ ସାରା କଥାଟା ଜାଣିଲେଣି । ହେଲେ ସାହସ ଦେଖି ତ ମୁଁ ଅବାକ୍ ହୋଇଯାଉଛି ! ଗାଁ ଭିତରେ....ଖାସ୍ ଗାଁ ଲୋକଙ୍କ ଆଖି ସାମନାରେ···ଛି···ଛି....ଛି....କି କଦର୍ଯ୍ୟ କଥା ! ଆମକୁ ଆସି ଫେରେ କହୁଥିଲା କଣ ନା ଗୌରୀ ଘରକୁ ଯାଇଥିଲା...ମୂଳ ମତଲବଟା ଥିଲା ଅନ୍ୟ ପ୍ରକାର....ବୁଝିଛ ?" ଆଉ ଜଣେ ଟିପ ପଣୀ ଦେଲେ, "ଆଜ୍ଞା ଏବେ ତ ଫେରେ ସେଇ ଗୌରୀ ଘରକୁ ଯିବା ନାଁରେ ଯାଇଛନ୍ତି....କୁଆଡ଼େ ଯାଇଛନ୍ତି କେଜାଣି...." କୁତ୍ସିତ ଭାବରେ ଖୁଁ ଖୁଁ ହେଇ ହସି ପୁଣି ସେ କହିଲେ, 'ଅବଶ୍ୟ ମଲ୍ଲୀଟା ସାଙ୍ଗରେ ଯାଇଚି ।'

'ଏସବୁ ଖାଲି ଲୋକଦେଖାଣିଆ ବୁଝିଲ ନା ଅପା; ଭିତର କଥା ଅନେକ ଦୂର ଗଡ଼ିଗଲାଣି ....'ସୁମିତ୍ରା ମୁହଁରେ ବି ସେଇ ବୀଭତ୍ସ ହସର ପ୍ରତିଧ୍ୱନି ।

ଅନ୍ୟ କୌଣସି ସମୟ ହୋଇଥିଲେ ରାଗରେ ଜଳି ଉଠିଥାନ୍ତା ସି.ତା । ହୁଏ ତ ସାମନାରେ ଯାଇ ଠିଆହୋଇ ଏ ଅନ୍ୟାୟର କୈଫିୟତ୍ ଦାବୀ କରିଥାନ୍ତା; କିନ୍ତୁ ଆଜି ଆଶ୍ଚର୍ଯ୍ୟ ପ୍ରକାର ଶାନ୍ତ ରହିଲା ସେ । ଶ୍ମଶାନର ସେ ଦୃଶ୍ୟ, ଗୌରୀ ମା'ର ମୃତ୍ୟୁ ଆଉ ପରିଶ୍ରମ ସବୁ ଶିଣି ଯେପରି ପଙ୍ଗୁ କରି ପକାଇଛି ତାକୁ । ବର୍ତ୍ତମାନ ଆଉ କିଛି ଲୋଡ଼ାନାହିଁ, ଖାଲି ଶେଯରେ ପଡ଼ିରହି ଦୀର୍ଘ ସମୟ ପାଇଁ ବିଶ୍ରାମ ନେବା ଦରକାର ତାର, ନିହାତି ଦରକାର । ତେଣୁ କ୍ଳାନ୍ତ ପାଦରେ ସେ ଆଗେଇଗଲା ନିଜ ଘରଟିଆଡ଼କୁ ।

ଏହାହିଁ ସଂସାର, ଆଉ ଏହାହିଁ ହେଉଛି ତାର ସମାଜ ! ସମାଲୋଚନାର ଭ୍ରୂକୁଟୀ ଭିତରେ ଠିଆହୋଇ ଏକାକିନୀ ଜଣେ ନାରୀ କେତେ ଦିନ ତାର ଆଦର୍ଶକୁ ଧରିରଖି ବଞ୍ଚାଇ ପାରିବ ? ଆଚରଣରେ ବ୍ୟବହାରରେ ଯେତେ ସୁସଂଯତ, ଯେତେ ନିଷ୍ଠାପର ରହିଲେ ମଧ୍ୟ ଅଭିଭାବକହୀନ ଜୀବନରେ ନାରୀର ପ୍ରତ୍ୟେକ ମୁହୂର୍ତ୍ତରେ କଳଙ୍କର କାଳିମା ବୋଳି ହୋଇ-ଯିବାର ଆଶଙ୍କା ରହିଛି । ତାର ନିର୍ଦ୍ଦୋଷତାକୁ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନାହିଁ ।

କହିବାକୁ ଗଲେ, ସେ ନିର୍ଦ୍ଦୋଷ ହୋଇ ରହୁ, ଏକଥା ଯେପରି କେହି ଚାହାନ୍ତି ନାହିଁ । ତାର ସାମାନ୍ୟ ଦୋଷ, ସାମାନ୍ୟ ତ୍ରୁଟିକୁ ବିରାଟ ଆକାରରେ ଚିତ୍ରଣକରି, ତାର ମୂର୍ତ୍ତିର ବାଟ ଆଉ ରହିଦିଅନ୍ତିନି । ତେଣୁ ସ୍ମିତା ସେଦିନ ସନ୍ଧ୍ୟାରେ ଯେଉଁ ଉଦ୍ଦେଶ୍ୟରେ ଯାଇଥାଉନା କାହିଁକି, ସୁକୁମାର ବାବୁଙ୍କ ସଙ୍ଗେ ମିଳିତ ହେବାର ଅଭିସନ୍ଧି ନେଇ ଯେ ସେ କେବଳ ଯାଇଥିଲା, ଏକଥା ଜାଣିବାକୁ ବାକିରହିଲା ନାହିଁ ଆଉ । ଗୁଣ୍ଡିବାଇଦ କୁଆଡେ ସହସ୍ର କୋଣ ବ୍ୟାପେ—ଘରେ ଘରେ ସ୍ମିତା ନେଇ କେବଳ ଆଲୋଚନା ଚାଲିଲା ।

ସମାଜସେବା ଜଣେ ସଚ୍ଚରିତ୍ରା ନାରୀ ପକ୍ଷରେ ଅଗ୍ନିପରୀକ୍ଷା ପରି । ଯେତେ ମହତ୍ ଉଦ୍ଦେଶ୍ୟ ନେଇ ଯାତ୍ରାକଲେ ମଧ୍ୟ ପ୍ରତି ପଦକ୍ଷେପରେ ସୁନାମ ଉପରେ ଦାଗ ଲାଗିବାର ସମ୍ଭାବନା ତଥା ଆଶଙ୍କା ଯଥେଷ୍ଟ ରହିଛି । ମନେ ମନେ ବିଶ୍ଳେଷଣ କରେ ସ୍ମିତା—କି ଚମତ୍କାର ଏ ଦୁନିଆ ! ଯେଉଁ ଦୁନିଆରେ ରହିବା ଭଲ, ସୁବିଧା ଭଲ ଝିଅର ଯଥେଷ୍ଟ ସମ୍ମାନ ଅଛି, ସେ ଦୁନିଆରେ ସ୍ମିତା ଭଳି ଝିଅର ସ୍ଥାନ କେତେ ତଳେ ସତ ରେ । ଆଖି ଥାଇ ନ ଦେଖିବା ମିଛ ଆଉ କାହାକୁ କୁହାଯାଏ ? ନା, ସେ ଏ ଜାଗା ଛାଡ଼ି ଚାଲିଯିବ । ଖବର କାଗଜରେ ବିଜ୍ଞାପନ ଦେଖି ସ୍ମିତା ଭିତରେ ଚାକିରି ପାଇଁ ଦୁଇ ତିନିଟା ଦରଖାସ୍ତ ପଠାଇ ଦେଇସାରିଲାଣି । କେଉଁଠି ଯଦି ମିଳିଯାଏ, ତାହେଲେ ସାଙ୍ଗେ ସାଙ୍ଗେ ଚାଲିଯିବ । ଆହା, ଯିବାପୂର୍ବରୁ ତାର ଡାକ୍ତରଖାନା ସ୍ଥାପନ କରିବା ଉଦ୍ଦେଶ୍ୟଟା ଯଦି ସଫଳ ହୋଇପାରି-ଥାନ୍ତା, ଜାଣିଥାନ୍ତା କାମଭଳି କାମଟେ କରିଗଲା; କିନ୍ତୁ ଯାହା ଜଣାପଡୁଛି, ସେଥିରେ ଉଦ୍ଦେଶ୍ୟ ସିଦ୍ଧିର ସମ୍ଭାବନା ଖୁବ୍ କମ୍ । ନିଜର ସ୍ୱାକ୍ଷରରେ ସେ ଯେଉଁ ଚିଠି ପଠାଇ-ଥିଲା, ସରକାରୀ ମହଲାରୁ କେବଳ ପ୍ରାପ୍ତିସ୍ୱୀକାର ଆସି ପହଞ୍ଚିଛି, କୌଣସି ଉତ୍ତର ଆସି ନାହିଁ । ଆଉ ଚାନ୍ଦା ସଂଗ୍ରହ ? ଏ କେତେଦିନ ହେଲା ଆଦୌ ବାହାରକୁ ବାହାରିନି ସେ—କି ଲାଭ ଅଛି ? କୌତୂହଳପୂର୍ଣ୍ଣ ଦୃଷ୍ଟି ମେଲି ସମସ୍ତେ ଚାହିଁବେ ତା'ରି ଆଡକୁ । ପିଠି ଆଡ଼େଇଲାକ୍ଷଣି ନାନାପ୍ରକାର କୁତ୍ସା ରଟନା କରିବେ । ପ୍ରଥମେ ସେ ଭାବିଥିଲା—ମାତୃହୀନା ଗୌରୀଟିକୁ ଆଣି ନିଜପାଖରେ ସ୍ଥାନ ଦେବ; କିନ୍ତୁ ଭାବିଚିନ୍ତି ସେ କଥାକୁ ମନରୁ ବିଦାୟ ଦେବାକୁ ପଡ଼ିଲା । ତା ନିଜ ଭାଗ୍ୟର ହିଁ ସ୍ଥିରତା ନାହିଁ, ସେଥିରେ ଆଉଜଣେ ନିରାଶ୍ରୟାର ଭାଗ୍ୟ ଯୋଡ଼ିବ କାହିଁକି ? ଏପରି ଅନିଶ୍ଚିତତା ଭିତରେ ତାର କଷ୍ଟ ବା ଉପକାର କରି-ପାରିବ ସେ ?

ପୁଣି ଗୋଟାଏ ରବିବାରେ ସୁମିତା ଆସି କହିଲା ସୁକୁମାରବାବୁ ଖବର ଦେଇଛନ୍ତି—ସିନେମା ଦେଖିବାକୁ କିମ୍ବା କିଣାକିଣି କରିବାକୁ ଯଦି ସେମାନେ ଚାହାନ୍ତି, ବାଲେଶ୍ୱର ଯାଇପାରିବେ । ମୀନକେତନ ବାବୁ, ରଞ୍ଜନ ବାବୁ କାଲିକତାରୁ ଆସି ପହଞ୍ଚିଛନ୍ତି । ସୁକୁମାରବାବୁଙ୍କ ଗାଡ଼ି, ରଞ୍ଜନବାବୁଙ୍କ ଗାଡ଼ି ଦୁଇଟିଯାକ ବାଲେଶ୍ୱର ଯିବ । ଖାଲି ସିନା ନୁହେଁ, ଆଜି ରାତିଟା ସେଠାରେ ରହିଯିବାର ବନ୍ଦୋବସ୍ତ ବି ହେଉଛି....କାଲି ସେମାନେ ଫେରିବେ ।

ଅତି ନିର୍ଲିପ୍ତ ଭାବରେ କଥା ଟା ଜଣାଇଲା ସୁମିତା ଆଉ ନିର୍ନିମେଷ ନେତ୍ରରେ ତା ଆଡ଼କୁ ଚାହିଁ ପ୍ରସ୍ତାବଟି ଶୁଣିଲା ଶୁଚିସ୍ମିତା ।

"ଆପଣ ତ ଯିବାକୁ ମନାକରିବେ । ଭୁଲନ୍ତୁ ନା—ଏ ଧରାବନ୍ଧା ନିୟମିତ ଜୀବନରୁ ଅନ୍ତତଃ କେତେ ଘଣ୍ଟା ମୁକ୍ତି ପାଇବା ପ୍ରତ୍ୟେକ ମଣିଷର ନିହାତି ଦରକାର···ତା ଛଡ଼ା..." ଓଠ କୋଣରେ ଟିକିଏ ବଙ୍କା ହସ ଫୁଟାଇ ସୁମିତା ଗମ୍ଭୀର ହୋଇ କହିଲା, "ଆପଣ ମନାକରିବେ ଜାଣି ସୁକୁମାରବାବୁ ଆପଣଙ୍କ କଥା କିଛି କହି ନାହାନ୍ତି ସତ, ହେଲେ ଆପଣ ଯଦି ଯାଆନ୍ତେ, ବାସ୍ତବିକ୍ ସେ ଅତି ଆନନ୍ଦିତ ହୁଅନ୍ତେ..."

ତାର ସ୍ପର୍ଦ୍ଧା ଦେଖି ସ୍ମିତା ହତବାକ୍ ହୋଇଗଲା । ସ୍ତବ୍ଧ ଆଖି ଦୁଇଟା ଖୋଲି ସେ ଚାହିଁରହିଲା ଖାଲି । ତାର ଭୂହ୍ବାଣୀ ହେଉ, ନଚେତ୍ ତାର ମୁହଁଟିର ଆହତ ଭାବ ହେଉ, ଉଦ୍ଧତ ସୁମିତାକୁ ନତମସ୍ତକ ହେବାକୁ ବାଧକଲା ସେ ମୁହୂର୍ତ୍ତରେ । ତାପରେ ସେଦିନପରି ମଥା ପେତି ଧୀରେ ଧୀରେ ସେ ସେ କକ୍ଷରୁ ବାହାରିଗଲା ।

କାଳେ ସେହି ଅବାଞ୍ଛିତ ଜମିଦାର ଓ ତାଙ୍କର ବନ୍ଧୁଗଣ ଆସି ପହଞ୍ଚିବେ ଏବଂ ବାଲେଶ୍ୱର ଯିବାକୁ ତାକୁ ଅନୁରୋଧ କରିବେ ଭାବି ପୂର୍ବରୁ ନିଜ ଘରଟି ଭିତରେ ଆବଦ୍ଧରହି ଶୋଇପଡ଼ିବାର ଛଳନା କଲା ସ୍ମିତା । ପାଖ କୋଠରୀଗୁଡ଼ିକରୁ ସେମାନେ ପ୍ରସ୍ତୁତ ହେଉଥିବାର ସୂଚନା ସବୁ କାନରେ ଆସି ବାଜୁଥିଲା ତାର । ଉତ୍ସାହ ଓ ଆନନ୍ଦର ଢେଉ ଖେଳୁଛି ସେମାନଙ୍କ ପ୍ରାଣରେ । କ୍ଷୁଦ୍ର ଶିଶୁମାନଙ୍କ ପରି ସେମାନେ ଅଧୀର ଆବେଗରେ ଉଚ୍ଛ୍ୱସିତ ହୋଇପଡ଼ିଛନ୍ତି ।

ନିର୍ଦ୍ଦିଷ୍ଟ ସମୟରେ ଗାଡ଼ି ଆସି ପହଞ୍ଚିଲା ଓ ସେମାନେ ଗଲେ । ହଠାତ୍ ବନ୍ଦ ହୋଇଗଲା କୋଳାହଳ । ନା, ତାକୁ ଆଉ ଖୋଜିନାହାନ୍ତି କେହି । ମୁକ୍ତିର ନିଃଶ୍ୱାସ ଛାଡ଼ିଲା ସ୍ମିତା । କେତେବେଳ ପରେ ଦ୍ୱାର ଖୋଲିଲା କ୍ଷଣି ଦେଖିଲା ସାମନାରେ ପରିଚାରିକା ମଲ୍ଲୀ ଠିଆହୋଇଛି ବିଷଣ୍ଣ ମୁହଁରେ । ଠିକ୍ ଏଇକ୍ଷଣି ମଲ୍ଲୀ କୁଆଡ଼େ ଖବର ପାଇଛି ତ ପୁତୁରଟି ବଡ଼ ବେମାର୍ । ଗୁରୁମାମାନେ ତ ସବୁ ଗଲେ, କାମର ଭିଡ଼ ନାହିଁ, ବଡ଼ ଗୁରୁମା ଯଦି ଦୟା କରନ୍ତି, ତେବେ ସେ ଯାଇ ଦେଖିଆସନ୍ତା । ଗାଁଟା ଅବଶ୍ୟ ଟିକିଏ ଦୂରରେ, ଆଜି ଯିବ, କାଲି ଭୋର୍‌ରୁ ଆସି ପହଞ୍ଚିଯିବ ।

ମଲ୍ଲୀ ତା'ର ବକ୍ତବ୍ୟ ଶେଷ କରି ଦୀନନୟନରେ ଚାହିଁଲା । ସ୍ମିତା ଭାବିଲା—ସୁମିତ୍ରା-ଦେହରକା ଯଦି ଫୁର୍ତ୍ତି କରିବାପାଇଁ ଯାଇପାରିବେ ମଲ୍ଲୀ ବା ଯାଇପାରିବନି କାହିଁକି ? ତାକୁ ଯିବାପାଇଁ ଅନୁମତି ଦେବାକୁ ବାଧ୍ୟ ସେ । ତାଠାରୁ ଅନୁମତି ନେଇ ବିଦାୟ ନେଲା ମଲ୍ଲୀ ।

ବାହାର ବାରଣ୍ଡାରେ ପଦଚାରଣ କରୁଛି ସ୍ମିତା, ହଠାତ୍ ଦେଖିଲା—ସୁକୁମାରବାବୁଙ୍କ ନେପାଳୀ ଦରୁଆନ୍ ଟି ଚିଠି ଖଣ୍ଡେ ନେଇ ଆସୁଛି ! ଚିଠିଟି ପାଇଲାପରେ କଥା କଣ ବୁଝିବାକୁ ତରତର ହୋଇ ଚିଠିଟି ଖୋଲିଲା ସେ—ହସ୍ତାକ୍ଷର ତାର ସମ୍ପୂର୍ଣ୍ଣ ଅପରିଚିତ; କିନ୍ତୁ ସ୍ତ୍ରୀଲୋକର ହସ୍ତାକ୍ଷର ଭଳି ଗୋଲ୍ ଗୋଲ୍ ଆଉ ସୁନ୍ଦର । ପଢ଼ିଲା—ସ୍ୱର୍ଣ୍ଣଲତା ଲେଖିଛନ୍ତି—ଆଜିକୁ ଛ ଦିନ ହେବ ମଞ୍ଜୁ ଅସୁସ୍ଥ । ଦୁଇଦିନ ହେଲା ଜ୍ୱରରେ ପ୍ରାୟ ଅଚେତ ପଡ଼ି ପଡ଼ିରହିଛି ସେ । ନିଜର ଅଦୃଷ୍ଟକୁ ନିନ୍ଦା କରି ଲେଖିଛନ୍ତି । ସୁକୁମାରବାବୁ କୁଆଡେ ତାଙ୍କ କଥାକୁ କର୍ଣ୍ଣପାତ ନକରି ନିଜର ଆମୋଦ ପ୍ରମୋଦ ନେଇ ବ୍ୟସ୍ତ । ଆଜି ପୁଣି ସମସ୍ତେ ମିଶି ବାଲେଶ୍ୱର ଚାଲିଗଲେ; ଅବଶ୍ୟ ଫେରିଲାବେଳକୁ ଡାକ୍ତରଙ୍କୁ ନେଇ ପହଞ୍ଚିବେ ବୋଲି କହିଛନ୍ତି । କିନ୍ତୁ ଏକାକୀ ଏ ଅବସ୍ଥାରେ ମଞ୍ଜୁକୁ ଧରି ରହିବାକୁ ତାଙ୍କୁ ବଡ଼ ଡର ଲାଗୁଛି । ସ୍ମିତା ତ ଜାଣେ ଯେ ନିଜେ ଜଣେ ରୋଗିଣୀ । ସେଥିପାଇଁ ଦୟାକରି ଯେ ଯେପରି ଯାଙ୍କେ ଯାଙ୍କେ ଆସେ, ତାକୁ ପାଖରେ ଦେଖିଲେ ସ୍ୱର୍ଣ୍ଣଲତାଙ୍କୁ ଟିକିଏ ଦମ୍ଭ ଲାଗିବ ।

ଚିଠିଟି ପଢି ଶଙ୍କିତ ହୋଇଗଲା ସ୍ମିତାର ମନଟା । ସତେ ତ ! ସେ ଗଣି ଦେଖିଲା—ସାତ ଆଠଦିନ ହେବ ବୋଧହୁଏ ମଞ୍ଜୁକୁ ସେ ଦେଖିନି । ଅଯଥା ସମାଲୋଚନାର ଭାଗୀ ହେବ ଭାବି, ସେକଥା କାହାକୁ ବି ମୁହଁ ଖୋଲି ପଚାରିନି ।

ମଞ୍ଜୁର ଅସୁସ୍ଥତା କଥା ଭାବି ବର୍ତ୍ତମାନ ନିହାତି ଚିନ୍ତିତ ହୋଇଗଲା । ସ୍ୱର୍ଣ୍ଣଲତାଙ୍କ ଅସହାୟତ ଅନ୍ତର ସହିତ ଉପଲବ୍ଧିକରି ସୁକୁମାରବାବୁଙ୍କ ପ୍ରତି ବିଦ୍ୱେଷରେ ଭରିଗଲା ତା ମନଟା । ଆହା କି ଭୁଲ୍ ସେ ନ କରୁଛନ୍ତି ? ନିଜର ବିଳାସ ପାଇଁ ଦଣ୍ଡ ଦେଉଛନ୍ତି ଗୋଟିଏ ନିଷ୍ପାପ ଶିଶୁକୁ—ଜଣେ ରୁଗ୍ଣା ନାରୀକୁ ! ଆଜି ଯଦି ମଞ୍ଜୁର ଭଲମନ୍ଦ କଣ ହେବ.... ଛି...ଛି...ଏ ଅଶୁଭ ଚିନ୍ତା ସେ କାହିଁକି କରୁଛି ? ଚଞ୍ଚଳ ଲୁଗା ବଦଳାଇ ଏକମାତ୍ର ପରିଚାରିକା ପାଚିକା ବାହ୍ମଣୀଟିକୁ ତାର ଯିବା କଥା ଜଣାଇ ସେ ବାହାରିପଡ଼ିଲା ।

ବାଟରେ ଭାବିଲା—ଗାଁଲୋକେ ସମାଲୋଚନା କରିବାପାଇଁ ଆଉ ଗୋଟାଏ ବିଷୟ ପାଇବେ । ଜମିଦାର ଗୃହକୁ ତାର ଏ ଯିବାଟା କେତେ ଶାଖାପଲ୍ଲବ ବିସ୍ତାର କରି ପ୍ରଚାରିତ ହେବ ଲୋକଙ୍କ ମୁହଁରେ; କିନ୍ତୁ···କିନ୍ତୁ ଲୋକଙ୍କ ନିନ୍ଦା ଅପେକ୍ଷା ତାର କର୍ତ୍ତବ୍ୟ ବଡ଼ ତା ପାଖରେ ।

ସୁକୁମାରବାବୁଙ୍କ ଘରେ ଉପସ୍ଥିତ ହୋଇ ସେଠାକାର ନିସ୍ତବ୍ଧତା ଦେଖି ତା ଛାତିଟା ଯିମିତି ଚମକି ପଡ଼ିଲା । ଏ ନିସ୍ତବ୍ଧତା ଯେପରି ତାର ଅପରିଚିତ ନୁହେଁ । କେତେ

ଦିନ ଦିନରେ ଫେରିବାବେଳେ ଗୌରୀ ଘରକୁ ଯାଉ ଯାଉ ଏ ନିସ୍ତବ୍ଧତା ଉପଲବ୍ଧି କରିଥିଲା ସେ । ବୋଧହୁଏ ମଞ୍ଜୁ··· ହେ ଭଗବାନ, ମଞ୍ଜୁକୁ ଭଲ କରି ରଖିଥାଅ, ତାଙ୍କୁ ବଞ୍ଚାଇ ରଖିଥାଅ । କ୍ଷୁଦ୍ର ନିଷ୍ପାପ ଶିଶୁଟିର ଖିରୁ, ସଲଜ୍ଜ ମୁହଁଟି ମନେପଡ଼ି ଆଖି ସଜଳ ହୋଇଗଲା ସ୍ମିତାର—ଜୀବନର ଯାତ୍ରାପଥରେ ପ୍ରତି ପଦପାତରେ ଯେ କିଣ କେବଳ ମୃତ୍ୟୁ ସହିତ ହିଁ ପରିଚିତ ହୋଇଚାଲିବ ?

ତାର ଚିନ୍ତାକୁ ବାଧା ଦେଇ ଦରୁଆନ୍ କହିଲା ହିନ୍ଦିମିଶା ଓଡ଼ିଆରେ—ଉପରକୁ ଉଠିଯିବାକୁ । କଣେ ହେଲେ ଭୃତ୍ୟର ଦେଖାଦର୍ଶନ ନାହିଁ—କୁଆଡେ ଗଲେ ସବୁ ? ସମସ୍ତେ କଣ ସେହି ଘରେ ଜୁଣ୍ଡ ହୋଇଛନ୍ତି ? ତେବେ କଣ....ତେବେ କଣ...ତାର ଅନୁମାନ ସତ ?

ଆଶଙ୍କାଭରା ହୃଦୟରେ, କଂପିତ ପଦରେ ସେ ଦରୁଆନ୍ ଦେଖାଇଥିବା ଅନୁସାରେ ଯାଇ ପ୍ରବେଶ କଲା ବାରଣ୍ଡାର ଶେଷ ପ୍ରାନ୍ତରେ ଥିବା ଘରଟି ଭିତରେ ।

ଘରଟି ଭିତରେ ପଶିଲାକ୍ଷଣି ଭୀଷଣ ଭାବରେ ଚମକି ପଡ଼ିବାକୁ ହେଲା ତାକୁ । ତାର ଖୋଲା ମୁହଁ ଦେଇ ଆପେ ଆପେ ବାହାରିଗଲା 'ଆ....ପ....ଣ !!'

ଟେବୁଲଟାର ସେପଟେ ଠିଆହୋଇଥିଲେ ସୁକୁମାରବାବୁ ଓ ଗୋଟାଏ ଅଧାଶୁଆ ଚୌକିରେ ବସିଥିଲା ରଞ୍ଜନ । ଦୁହେଁ ଯାକ ନମସ୍କାର କରି କହିଲେ, 'ବସନ୍ତୁ...ବସନ୍ତୁ' ।

କିନ୍ତୁ ସ୍ମିତା ଦୁଇ ହାତରେ ଚୌକିଟାର ଆଉଜିବା ପଟକୁ ଧରି ଠିଆହୋଇ ରହିଲା । ଅତି ଦ୍ରୁତଗତିରେ ଆସିଥିବାରୁ ଶ୍ୱାସ ଖାଲି ଉଠୁଥିଲା ପଡୁଥିଲା ତାର । ଘଟଣାଟାର ଅପ୍ରାସଙ୍ଗିକତା ମନଭିତରେ ସୃଷ୍ଟି କରିଥିଲା ଘୂର୍ଣ୍ଣିବାତ୍ୟା । କଥା କଣ କିଛି ବୁଝିପାରୁ ନଥିଲା ସେ । ଅବଶେଷରେ ପଚାରିଲା, 'ସୁକୁମାର ବାବୁ, ମଞ୍ଜୁ ଭଲଅଛି ତ ? ମଞ୍ଜୁର ମା ଯେ ଚିଠି ଖଣ୍ଡେ ଲେଖି ପଠାଇଥିଲେ ମୋ ପାଖକୁ । ଆପଣମାନେ ଅଧାବାଟରୁ ଫେରି ଆସିଲେ ବୋଧହୁଏ ? ଭଲ ହେଲା....ହେଲେ ଡାକ୍ତର....?' ବାଧା ଦେଇ ରଞ୍ଜନ କହିଲା, 'ଆହା, ଆପଣ ବସିପଡ଼ି ଟିକେ ରେଷ୍ଟ୍ ନିଅନ୍ତୁ ନା....ବଡ଼ ହାଲିଆ ହୋଇଯାଇଛନ୍ତି ଦେଖୁଛି । ଚା ଟିକେ ଖାଇବେ ? ମଗେଇ ଦଉଚି···' ରଞ୍ଜନର ମୁହଁରେ ଫୁଟି ଉଠିଲା ହସ ।

ସେ ଭଲ ହସ ତା ମୁହଁରେ ଦେଖି ମନେ ମନେ କ୍ଷୁବ୍ଧ ହେଲା ସ୍ମିତା । କହିଲା, 'ନା ଧନ୍ୟବାଦ, ମୁଁ ଆଗ ମଞ୍ଜୁକୁ ଦେଖିବାକୁ ଚାହେଁ । ତା ଦେହ କିମିତି ଅଛି ସୁକୁମାର ବାବୁ ?'

'ତା ପାଇଁ ବିଶେଷ ଉଦ୍‌ବିଗ୍ନ ହୁଅନି ସ୍ମିତା, ସେ ବେଶ୍ ଭଲଅଛି । ବର୍ତ୍ତମାନ୍ ସେ କଲିକତାରେ—ରତ୍ନା ଦେବୀଙ୍କ ପାଖରେ ।'

'ଏଁ ! !' ଚମକିପଡ଼ି କହିଉଠିଲା ସ୍ମିତା, 'କଣ କହିଲେ ? ମଞ୍ଜୁ କଲିକତାରେ ?

ଆଉ ତାହେଲେ ମଞ୍ଜୁ-ମା....ମଞ୍ଜୁ-ମା କମିଛ···'

ହସି ହସି କହିଲ ରଞ୍ଜନ, 'କ୍ଷମା କରିବେ ସିତାଦେବୀ, ଯେ ଚିଠିଟା ମୁଁ ନିଜେ ଲେଖିଥିଲି । ହସ୍ତାକ୍ଷର ପାଇଁ ମୁଁ ବନ୍ଧୁମହଲରେ ସବୁବେଳେ ପ୍ରଶଂସା ପାଏ···ସେଗୁଡ଼ିକ କୁଆଡେ ଖୁବ୍ ସୁନ୍ଦର ଆଉ ମାଇପିଙ୍କ ହାତ ଅକ୍ଷର ଭଳି ଦେଖିବାକୁ....ତା ଛଡ଼ା ସ୍ୱର୍ଣ୍ଣଲତା ଦେବୀ ତ ଏଠି ନାହାନ୍ତି—ସେ ଅଛନ୍ତି ରାଞ୍ଚିର ସ୍ୱାସ୍ଥ୍ୟନିବାସରେ ।'

କଥାଗୁଡ଼ାକ ବୁଝିବାକୁ ବେଶ୍ ସମୟ ଲଗିଲା ସିତାକୁ । ବୁଝିଲା ଯେତେବେଳେ ଯନ୍ତ୍ରଚାଳିତ ପରି ଶୁଷ୍କ କଣ୍ଠରେ କହିଲା, 'ଏ ପରିହାସର ଉଦ୍ଦେଶ୍ୟ କଣ ସୁକୁମାର ବାବୁ ?' ଜଳନ୍ତା ସିଗାରେଟ୍‌ର ପାଉଁଶ ଝାଡ଼ି ନାଟକୀୟ ଅଭିନୟ କଲାପରି ସୁକୁମାର ବାବୁ କହିଲେ, 'ଉଦ୍ଦେଶ୍ୟ ଅତି ସରଳ । ତମେ ଅନୁନୟ ବିନୟ ମାନିନ, ତେଣୁ ବାଧହୋଇ ମତେ ଏ ପନ୍ଥା ଧରିବାକୁ ପଡିଲା ।'

ସିତାର କଣ୍ଠରୁ କୌଣସି ବାକ୍ୟ ସ୍ଫୁରିପାରିଲା ନାହିଁ ।

'ରଞ୍ଜନ୍ ! ତୋ ପ୍ଲାନ୍‌ଟା କିନ୍ତୁ ଚମତ୍କାର କାମ ଦେଲା ସତରେ । ବାଟ ଅତି ପରିଷ୍କାର ହୋଇଯାଇଛି ।' ସିଂହକୁ ଯନ୍ତା ଭିତରେ ଆବଦ୍ଧ କଲାପରେ ତା ଦେହରେ ମୁନିଆଁ ଲୁହା ଫୋଡ଼ି ଲୋକମାନେ ଯେପରି ଆମୋଦ ଅନୁଭବ କରନ୍ତି, ସେଭଳି ଆମୋଦ ସହିତ ସୁକୁମାରବାବୁ କହିଲେ ଆଉଥରେ, 'ବୁଝିଲ ନା ସିତା, ଏ କେତେ ଦିନ ହେଲା ମୁଁ ଦେଖୁଥିଲି—ତମେ ଆଦୌ ବାହାରକୁ ବାହାରୁ ନଥିଲ, ଯଦି ବା ବାହାରୁଥିଲ ତେବେ ଗୁଡ଼ାଏ ଛାତ୍ରୀ ସଙ୍ଗରେ ରହୁଥିଲ ବରାବର । ତମେ ତାହେଲେ ମତେ ଯଥେଷ୍ଟ ଭୟ କରୁଥିଲ ନୁହେଁ ?' କଥା ଶେଷରେ ସୁକୁମାର ବାବୁଙ୍କ ମୁହଁରେ ଫୁଟି ଉଠିଲା ରକ୍ତ-ହିମକାରୀ କୁଟୀଳ ହସ ।

ସିତାର ପାଦତଳୁ ପୃଥିବୀଟା ଯେପରି ଘୁଞ୍ଚିଯାଉଥିଲା । ଦାନ୍ତରେ ଓଠ କାମୁଡ଼ି ସେ କହିଲା, 'ଆପଣଙ୍କୁ ଯଦି ଭୟ କରି ଚଳିଥାନ୍ତି ତାହେଲେ ଏବେ ଭାବୁଛି ବୁଦ୍ଧିମତୀ ଭଳି କାର୍ଯ୍ୟ କରିଥାଆନ୍ତି । ଖାଲି ଲୋକନିନ୍ଦାକୁ ମୁଁ ଡ଼ରିଥିଲି; କିନ୍ତୁ ଆପଣଙ୍କୁ ଅବିଶ୍ୱାସ କରିନଥିଲି ସୁକୁମାର ବାବୁ । ମୁଁ ଦେଖୁଛି ସଙ୍ଗଦୋଷରେ ଆପଣ ଯଥେଷ୍ଟ ତଳକୁ ଓହ୍ଲାଇ ଯାଇଛନ୍ତି ।'

'ବାଃ, ବାଃ, କି ଚମତ୍କାର ! ଦୋଷଟା ସେ ସିଧାସଳଖ ମୋ ଉପରେ ଢାଳିଦେଲେ ସିତା ଦେବୀ ।'

ଘୃଣାପୂର୍ଣ୍ଣ କଣ୍ଠରେ କିଛି କହିବାକୁ ଯାଇ ହଠାତ୍ ଏତେବେଳ ପରେ ତାର ନଜର ପଡ଼ିଲା ଟେବୁଲ ଉପରେ ରଖାଯାଇଥିବା ବୋତଲ ଦୁଇଟିର ଲେବଲ୍‌ରେ । ସେ ସ୍ତମ୍ଭିତ ହୋଇଗଲା । ବିଲାତି ସୁରାର ବୋତଲ ଦୁଇଟି । ଯନ୍ତ୍ରଚାଳିତ ପରି ଭୟଭୀତ

କେଉଁରେ ପରେ ପରେ ବୃଦ୍ଧଜନଙ୍କ ମୁହଁକୁ ଚାହିଁଲା ଯେ, ସେମାନଙ୍କ ରକ୍ତାଭ ମୁହଁ ଓ ଆଖିଗୁଡ଼ିକର ଅର୍ଥ କିମିତି ଏତେବେଳ ପରେ ବୁଝିପାରିଲା ସ୍ମିତା । ଏ ବି ନୂଆ ତା ଜୀବନରେ । ସମ୍ପୂର୍ଣ୍ଣ ନୂଆ ଅଭିଜ୍ଞତା । କେବେ କେଉଁକାଳେ ଗୋଟାଏ କି ଦୁଇଟା ସିନେମାରେ ଯେ ସୁନ୍ଦରୀମାନଙ୍କ ଚିତ୍ର ଦେଖିଥିଲା, ଆଉ ଖବରକାଗଜରେ ପଢ଼ିଛି ମଧ୍ୟ; କିନ୍ତୁ ଚକ୍ଷୁ ସମ୍ମୁଖରେ ନିଜର ଏତେ ନିକଟରେ ସେ ଭଳି ଦୃଶ୍ୟ ଦେଖିବ, ସେ କଥା ସ୍ୱପ୍ନରେ ଭାବିନି ଦିନେ । ନିଜର ଦୃଷ୍ଟିଭଙ୍ଗୀର ପବିତ୍ରତା ତାକୁ କେବେ ଅପବିତ୍ର କିଛି ଭାବିବାର ସୁଯୋଗ ଦେଇନାହିଁ । ଏ ଦୁନିଆରେ ଭଲ ଦିଗଟିକୁ ସର୍ବଦା ସେ ଚିନ୍ତା କରିଛି—ମନ୍ଦକୁ ନୁହେଁ । ଯେଉଁମାନଙ୍କର ବାହାର ନିର୍ମଳ, ସୁନ୍ଦର, ସେମାନଙ୍କ ହୃଦୟ ଯେ ଏତେ କଦାକୃତ ହୋଇପାରେ, ଏକଥା କିମିତି ସେତେବେଳେ ବି ବିଶ୍ୱାସ କରିପାରୁନଥିଲା ସେ । ବିଶ୍ୱାସ କରିପାରୁ ନଥିଲା ନିଜର ଦୁଇଟି ଆଖିକୁ । ଅବସ୍ଥାର ଅସହାୟତା କଥା ଭାବି ଉଚ୍ଛ୍ୱସିତ କୋହରେ ପୂର୍ଣ୍ଣ ହୋଇ ଉଠିଲା ତା ହୃଦୟ । ଆଖିର ଲୁହକୁ ଚାପି ରଖି ସ୍ମିତା ପଚାରିଲା—ଏଥିପାଇଁ ମତେ ଆପଣ ଆଶ୍ରୟ ଦେଇଥିଲେ ସୁକୁମାର ବାବୁ ? କିନ୍ତୁ ମୋର ସର୍ବନାଶ କରି ଆପଣଙ୍କର ଲାଭ କଣ ହେବ ? ଏ ସଂସାରରେ ମଣିଷର ଶରୀରଟା କ୍ଷଣଭଙ୍ଗୁର ମାତ୍ର । ଏ ଦେହଟା ପାଇଁ ଏତେବଡ଼ ପାପ କରିବାକୁ ଯିବେ କାହିଁକି ? ଆପଣ ମୋର ଆଶ୍ରୟଦାତା... ମୋର ସମ୍ମାନ ରଖିବା କଣ ଆପଣଙ୍କର କର୍ତ୍ତବ୍ୟ ନୁହେଁ ?

ଟେବୁଲ ଉପରେ ହାତ ପିଟୁପିଟୁ କହିଲା ରଞ୍ଜନ, 'ଓଃ ! ଚମତ୍କାର...ଚମତ୍କାର । କଥା କହିବାର ଭଙ୍ଗୀ କି ଗ୍ରାଣ୍ଡ (grand) ସତେ ! ଆଉ ଭାଷା—ସେ ବି ଅତି ଚମତ୍କାର । ସ୍ମିତାଦେବୀ ଆମର ଚିତ୍ରଜଗତ ପାଇଁ ଏକାବେଳକେ ଉପଯୁକ୍ତ ସୁକୁମାର । ...ତେବେ ଆପଣଙ୍କର ଏ ଆବେଦନ ଠିକ୍ ଅରଣ୍ୟ ରୋଦନ ଭଳି । କେତେ କଷ୍ଟ କରିବାକୁ ପଡ଼ୁଛି... କେତେ ମୁଣ୍ଡ ଖରଚ କରିବାକୁ ଯେ ପଡ଼ୁଛି ଆପଣ ତା ଜାଣିବେ କୁଆଡୁ... ନା ସୁକୁମାର ?'

ରୁଦ୍ଧକଣ୍ଠରେ ସ୍ମିତା କହିଲା, 'ମୁଁ ଆପଣଙ୍କୁ କିଛି କହୁନି ରଞ୍ଜନବାବୁ' ଆଉ ଆପଣଙ୍କଠୁ ଶୁଣିବାକୁ ବି ଚାହେଁନା କିଛି ।'

ମୃଦୁ ହସି ସୁକୁମାରବାବୁ କହିଲେ, 'ଆଚ୍ଛା, ମୋ ବିଷୟରେ ତମର ଏତେ ଉଚ୍ଚ ଧାରଣା ହେଲା କିମିତି ?' ଜଳମଗ୍ନ ବ୍ୟକ୍ତି ଭଳି ବ୍ୟାକୁଳ ଭାବରେ ସ୍ମିତା କହିଲା, 'ମୋର ଯେ ଧାରଣାକୁ ଆପଣ ଉପଯୁକ୍ତ ସମ୍ମାନ ଦେବେ ବୋଲି ମୁଁ ଆଶା କରୁଛି ।'

ଧୀର ସୁସ୍ଥଭାବରେ ସୁକୁମାର ବାବୁ କହିଲେ, 'ତମର ସେ ଧାରଣାକୁ ସମ୍ମାନ ଦେବିନି ସ୍ମିତା; କିନ୍ତୁ ତମକୁ ସମ୍ମାନ ଦେବି । ସେଇ ସମ୍ମାନ ଦେବାକୁ ତ ମୋର ଏ ଚେଷ୍ଟା

ସୁନ୍ଦର ଦିନ ଦିନ ଧରି—ନା କଣ କହୁଛୁ ରଞ୍ଜନ ?' ଆଉ ଥରେ ସେହିପରି ରାକ୍ଷସ ଭଳି ହସି ଉଠିଲେ ସେ ।

ଏତେଦିନକେ ବାହାରର କୌଣସି ଜଣେ ମଣିଷ ଆଗରେ ମନଖୋଲି ହସ ସେ ହସୁଛନ୍ତି ! ତାଙ୍କ ପ୍ରକୃତିର ପ୍ରକୃତ ରୂପ ଫୁଟି ଉଠିଛି ,

କି ଭୟଙ୍କର ସେ ହସ ! ସିନ୍ଧୁତାର ଅନ୍ତର ଥରିଯିବାକୁ ଲାଗିଲା । କୌଣସି ମଣିଷର ହସ ସେ ହୋଇପାରେ ନା—ମଣିଷ ଭିତରେ ଲୁଚି ରହିଥିବା ଦାନବର ହସ ତାହା । ସିନ୍ଧୁତାର ମନେହେଲା—ଯମଦୂତ ଭଳି ଦୁର୍ଦ୍ଧର୍ଷ ଦାନବ ଠିଆହୋଇଛନ୍ତି ତା ସାମନାରେ— ଧମନୀରେ ପ୍ରବାହିତ ହେଉଥିବା ସମସ୍ତ ରକ୍ତ ଯେପରି ବରଫ ଭଳି ଜମିଯିବାକୁ ବସିଲା । ନିଃଶ୍ୱାସ ନେବାକୁ କଷ୍ଟ ହେଉଛି । ସମ୍ମୁଖରେ ଚରମ ସର୍ବନାଶ ଉପସ୍ଥିତ···ହେ ଭଗବାନ ! ଏ ଭୟଙ୍କର ବିପତ୍ତିରୁ ସେ କିପରି ରକ୍ଷା ପାଇବ...କିପରି ରକ୍ଷା ପାଇବ ସେ ? କିଏ ତାକୁ ରକ୍ଷା କରିବ ? କେହି ନାହିଁ···କେହି ଜଣେ ହେଲେ ନାହାଁନ୍ତି...ଓଃ ;

'କଣ ଧ୍ୟାନମଗ୍ନା ହେଲେ କି ସିନ୍ଧୁତାଦେବୀ ? ଏଥିରେ ଏତେ ଚିନ୍ତା କରିବାର କଣ ଅଛି ? ଆପଣ ତ କିଛି ସତୀ ସାବିତ୍ରୀ ହୋଇ ରହିନାହାନ୍ତି ଯେ ଏତେ ଅଧୀର ହେବାକୁ ପଡ଼ିବ । ଦିନେ ମୁଁ ଆପଣଙ୍କୁ କହିଥିଲି ନା, ଏ ଜଗତକୁ ଆସିଲେ ଏ ଜଗତ ଭଳି ହେବାକୁ ପଡ଼ିବ ।'

ରଞ୍ଜନର ସେ କଥାଗୁଡ଼ାକ ଶୁଣି ଦେହଟା ଝିମିଝିମି ଜଳି ଉଠିଲା ସିନ୍ଧୁତାର । ଇଚ୍ଛାହେଲା—ପାଦରୁ ଚଟିଟା ଖୋଲି ତା ଗାଲରେ ବସାଇ ଦିଅନ୍ତା ପାହାରେ; କିନ୍ତୁ ସେହି ସଙ୍କଟ ମୁହୂର୍ତ୍ତରେ ବି ସେ ଅନୁଭବ କଲା ଅବସ୍ଥା ଅନୁସାରେ ବ୍ୟବସ୍ଥା ନ କଲେ ଏ କ୍ଷେତ୍ରରେ ଠକିଯିବାକୁ ପଡ଼ିବ ।

ତା କାନ ପାଖରେ ସଇତାନ ଯେପରି କ୍ରୂର ହସ ହସି କହୁଛି....ନିଷ୍ଠୁର ନାହିଁ··· ଆଉ ନିଷ୍ଠୁର ନାହିଁ । ଏଗୁଡ଼ାକ ମଣିଷ ନୁହନ୍ତି—ଜାନୁଆର୍ । ଏମାନଙ୍କ ପାଖରେ ଲୁହର ମୂଲ୍ୟ ନାହିଁ, ମୂଲ୍ୟ ନାହିଁ କାତର ପ୍ରାର୍ଥନାର ।

ଆଖିର ଲୁହ ଶୁଖିଗଲା ତାର । ନିଜ ଭିତରେ ଗୋଟାଏ କଠୋର ଭାବ ଅନୁଭବ କଲା ସେ—ହୃଦୟ ଯେପରି ଅଗ୍ନିମନ୍ତ୍ର ଦେଲା—ଶଇତାନର ଉପଯୁକ୍ତ ଶାସ୍ତି ଦେବାକୁ ଶଇତାନୀ କରିବାକୁ ହିଁ ପଡ଼ିବ ।

ଭଗବାନ୍, ଶକ୍ତି ଦିଅ । ଶକ୍ତି ଦିଅ । ଥରକ ପାଇଁ ଜଳିଉଠୁ ସେ ।

ତାର ଧନ୍ୟା ହୋଇଯାଇଥିବା ମୁହଁଟି ଆଡ଼କୁ ଚାହିଁ ପ୍ରଫୁଲ୍ଲ ଚିତ୍ତରେ କହିଲେ ସୁକୁମାରବାବୁ, 'ମୋ ପ୍ରସ୍ତାବରେ ରାଜି ହେବାକୁ ପଡ଼ିବ ତମକୁ, ତା ଛଡ଼ା ତମର ଗତି ନାହିଁ । ସ୍ତ୍ରୀଲୋକର ଏତେ ଗର୍ବ ମୁଁ ସହ୍ୟ କରି ପାରେନା । ମନେଅଛି ସେଦିନ

କଥାଗୁଡ଼ାକ କିମିତି କହିଯାଇଥିଲି ? ସୁବିଧା ପାଇଲେ ଯେଉଁଠି ସେପରି ତମ ଗଳ୍ପକୁ ରଚନା କରିଦେଇଥାନ୍ତି ।'

ଘରର ଚାରିପଟେ ଦୃଷ୍ଟି ବୁଲାଇଆଣି ମୁଣ୍ଡଟାକୁ ସିଧା କରି ସ୍ମିତା ପଚାରିଲି, 'ମୋର ଅନୁରୋଧ ରକ୍ଷା କରିବେନି ସୁକୁମାରବାବୁ ?'

'ନିଶ୍ଚୟ, ନିଶ୍ଚୟ ! ତମେ ମୋର ହେଲ ପରେ ତମର ସବୁ ପ୍ରକାର ଅନୁରୋଧ ରକ୍ଷା କରିବାକୁ ମୁଁ ରାଜି ଅଛି । ଘର, ମାଳା, ଜହରତ୍, ଯାହା ମାଗିବ ତା ଦେବି; କିନ୍ତୁ ମୋର ରକ୍ଷିତା ଭାବରେ କିଛି ଦିନ ତମକୁ ରହିବାକୁ ପଡ଼ିବ, ତାପରେ ଅବଶ୍ୟ ତମେ ଚାହିଁଲେ ରଞ୍ଜନର ଫିଲ୍ମ କମ୍ପାନୀରେ ଯୋଗଦେଇ୍ପାର ।'

କଥା ଛଡ଼ାଇ ଆଣି ସ୍ମିତା ଶ୍ଳେଷଭରା କଣ୍ଠରେ କହିଉଠିଲି, 'ବୋଧହୁଏ ରଞ୍ଜନ ବାବୁଙ୍କ ରକ୍ଷିତା ହୋଇ ··ନା କଣ କହୁଛନ୍ତି ? ଚମତ୍କାର !'

ଚକ୍ଷୁର ପଲକରେ ଟେବୁଲ ଉପରସ୍ଥିତ ବୋତଲଟାକୁ ଟେକିଆଣି ସୁକୁମାରବାବୁଙ୍କ ମୁହଁକୁ ଲକ୍ଷ୍ୟକରି ଫୋପାଡ଼ିଦେଲି ସେ । ତାପରେ ବିଦ୍ୟୁତ୍ ଗତିରେ ବୁଲିପଡ଼ି ଦୌଡ଼ି ଚାଲିଆସିଲି ଘରର ବାହାରକୁ । ପାହାଚ ଲକ୍ଷ୍ୟ କରି ସେ ଧାଉଁଥିଲି; କିନ୍ତୁ ଦେଖିଲି, ସେହି ନେପାଳୀ ଦରୁଆନ୍ଟି ଚଢ଼ି ଆସୁଛି ଉପରକୁ । ବୋତଲ ଭାଙ୍ଗିବା ଶବ୍ଦ ସେ ଶୁଣିଛି । ଉପସ୍ଥିତବୁଦ୍ଧି ଅନୁସାରେ ସିଡ଼ି ପାଖରେ ଥିବା ଡାହାଣହାତ ଘରଟିର ଦ୍ୱାର ଖୋଲି ଦେଖି ତା ଭିତରେ ପଶି ଭିତର ଦ୍ୱାର ବନ୍ଦ କରିଦେଲି । ପରେ ଦେଖିଲି ଘରେ ଥିବା ଅନ୍ୟ ଦ୍ୱାରଟି ମଧ୍ୟ ଆଗରୁ ଭିତରୁ ବନ୍ଦଅଛି ।

ସର୍ବାଙ୍ଗ ଥରୁଥିଲି ଚାର ଥର ଥର ହୋଇ । ପାଦ ପକାଇ ପାରୁ ନଥିଲି ଠିକଣା କରି । ପଡ଼ିଥିବା ପଲଙ୍କଟି ଉପରେ ଧପ୍କିନା ବସିପଡ଼ିଲି ଯେତେବେଳେ ତାକୁ ଲାଗିଲି ସେ ଯିମିତି ଏଇକ୍ଷଣି ଅଚେତ ହୋଇଯିବ । ଦେହସାରା ଝିମ୍ ଝିମ୍ ହୋଇଯାଉଛି । ହୃଦ୍ଯନ୍ତ୍ରର ଗତି ବଢ଼ିଚାଲିଛି ଅସମ୍ଭବ ବେଗରେ । ତକିଆରେ ମୁହଁଟାକୁ ମାଡ଼ିଦେଇ ଆଛନ୍ନ ପରି ପଡ଼ିରହିଲି ସେ ।

କିଛି ସମୟ ପାଇଁ ଭାବିବା ବା ଚିନ୍ତା କରିବାର ସମସ୍ତ ଶକ୍ତି ଲୋପ ପାଇଗଲି ତାର । ଭାବନା କରିବା ଶକ୍ତି ଫେରିଆସିଲାକ୍ଷଣି ସେ ଶୁଣିଲି ଦ୍ୱାର ସେପଟେ ବାରଣ୍ଡାରେ ପାଦଶବ୍ଦ ଶୁଭୁଛି, ଦ୍ରୁତଗତିରେ କିଏ ଯିବା ଆସିବା କରୁଛି । ଏ ଭୀଷଣ ପରିସ୍ଥିତିରୁ ସେ ମୁକ୍ତି ପାଇବ କିପରି ? ଓଃ ! ହୃଦ୍ଯନ୍ତ୍ରଟା ଏ ମୁହୂର୍ତ୍ତରେ ବନ୍ଦ ହୋଇଯାଅନ୍ତା ଯଦି ସେ ରକ୍ଷା ପାଇଯାଆନ୍ତା ।

ଗତ କେତେ ଘଣ୍ଟାର ଘଟଣାଗୁଡ଼ିକ ମନେହେଉଛି ଦୁଃସ୍ୱପ୍ନ ଦେଖିଲାପରି । ବାସ୍ତବରେ ସ୍ମିତା ସେ ସମ୍ଭବ ହେଲା କିମିତି ସେ ଏବେ ମଧ୍ୟ ବିଶ୍ୱାସ କରୁନି ଯେପରି···ବିଶ୍ୱାସ କରିପାରୁନି

ନଜର ଆଖିକୁ, କାନକୁ । ଘରଟିର ଚାରିପଟେ ଅଖି ବୁଲାଇ ଆଣିଲ ସିଂ୍ଚା । ସାଜସଜ୍ଜାରୁ ପରିଷ୍କାର ଜଣାପଡ଼ୁଛି ଶୟନକକ୍ଷ, ଶିଶୁକାଠର କାରୁକାର୍ଯ୍ୟଖଚିତ ଡବ୍‌ଲ୍ ପଲଙ୍କ, ଡ୍ରେସିଂ-ଟେବୁଲଟିଏ, ଚୌକି ଦୁଇଟା । ଦେଖିଛି ଉପରେ ସଜାହୋଇ ରହିଛି ଟ୍ରଙ୍କ କେତୋଟି । ଗୋଟାଏ କଡ଼କୁ ବଡ଼ ଆଲମାରି, ତା ପାଖକୁ କାଠ ଆଲଣାରେ ସଜା ହୋଇ ରହିଛି କେତେଟା ଶାଢ଼ୀ, ସାୟା, ବ୍ଲାଉଜ ପ୍ରଭୃତି । କାନ୍ଥରେ ଗୋଟାଏ ପଟକୁ ବୋଧହୁଏ ପୂର୍ବତନ ଜମିଦାର ଓ ତାଙ୍କର ପତ୍ନୀଙ୍କ ତୈଳଚିତ୍ର । ବିପରୀତ ଦିଗର କାନ୍ଥରେ ସୁକୁମାର ବାବୁ ଓ ତାଙ୍କ ପତ୍ନୀ ସ୍ୱର୍ଣ୍ଣଲତାଙ୍କ ତୈଳଚିତ୍ର ମଧ୍ୟ ରହିଛି । ଚିହ୍ନି ହେଉନାହିଁ ସ୍ୱର୍ଣ୍ଣଲତାଙ୍କୁ । ଏତେ ସୁନ୍ଦର ସ୍ୱାସ୍ଥ୍ୟ ପୁଷ୍ଟି ଥିଲା ତାଙ୍କର ପୂର୍ବର ଆକୃତି ! ସୁକୁମାରବାବୁଙ୍କର କେବଳ ପ୍ରତିକୃତିଟିକୁ ଦେଖିଲେ ମଧ୍ୟ ଅନ୍ତର ଥରାଉଠୁଛି ଭୟରେ । କି ଭୀଷଣ ଲୋକଟା !

ଘରର ଦକ୍ଷିଣପଟେ ଦୁଇଟା ଝରକା···ସେ ଝରକା ବାଟେ ଦୂରରେ ଦିଶୁଛି ଜନଶୂନ୍ୟ ରାସ୍ତାଟା । ଏହା ସ୍ୱପ୍ନ ନୁହେଁ, ଯଦିଓ ସେ ମୁହୂର୍ତ୍ତରେ ତାର ମନପ୍ରାଣ ପ୍ରାର୍ଥନା କରୁଥିଲା ଯା ତାର ଦୁଃସ୍ୱପ୍ନ ହୋଇଥାଉ ବୋଲି । ତେବେବି ପାରିପାର୍ଶ୍ୱିକ ଦୃଶ୍ୟ କଣ୍ଟା ଭଳି ଫୋଡ଼ିହୋଇ ଚେତାଇଦେଉଥିଲେ ଯେ ଏ ସତ୍ୟ—ଅତି ନିଷ୍ଠୁର ସତ୍ୟ !

ଡିଟେକ୍‌ଟିଭ୍ ଉପନ୍ୟାସର ନାୟିକା ପରି ସେ ବର୍ତ୍ତମାନ ବନ୍ଦିନୀ ଚନ୍ଦ୍ରକାନ୍ତାଙ୍କ ଜାଲରେ । ଯା ଭିତରୁ ଯିବାର ଉପାୟ ନାହିଁ, ସାହାଯ୍ୟ କରିବାକୁ କେହି ନାହିଁ । କାଳ-ରାତ୍ରି ପରି ଅନ୍ଧାର ମାଡ଼ି ଆସିବ ଆଉ ଟିକିଏ ପରେ ।

ଉତ୍ତର ଦିଗର ଯେଉଁବାଟେ ସେ ପ୍ରବେଶ କରିଥିଲା, ରୁଦ୍ଧ କବାଟଟି ଆଡ଼କୁ ଭୀତ-ଚକ୍ଷୁରେ ଚାହିଁଲା ସେ—ପୁରୁଣାକାଳିଆ କବାଟ—ଅତି ମଜବୁତ୍ । ତେବେବି ତାର ମନେହେଲା, ଏଇକ୍ଷଣି ବୋଧହୁଏ ଖୋଲିଯିବ ! ବାହାରୁ ଶୁଭିଲା ସୁକୁମାରବାବୁଙ୍କର କଣ୍ଠସ୍ୱର, ରୁଦ୍ଧରାଗରେ ସେ ସ୍ୱର ମନେହେଉଥିଲା କୌଣସି ହିଂସ୍ରଜନ୍ତୁର ଗର୍ଜ୍ଜନ ଭଳି ।

'ତମେ ଯେ ସାହସୀ ଝିଅ ସେଥିରେ ସନ୍ଦେହ ନାହିଁ; କିନ୍ତୁ ଅତି ମୂର୍ଖ...ନିହାତି ମୂର୍ଖ ...'

'ପାଣିରେ ରହି କୁମ୍ଭୀର ସଙ୍ଗେ ଲଢ଼େଇ କରିବାଟା ମୂର୍ଖାମୀ ନୁହେଁ ଆଉ କଣ ? ଖୋଲ ଦ୍ୱାର....ନଚେତ୍ କୁକୁର ପରି ଗୁଳି କରି ମାରିଦେବି ।' ପୁଣି ସେହି କଣ୍ଠସ୍ୱର ।

ସେ ମୁହୂର୍ତ୍ତରେ ସେହି ଅବସ୍ଥାରେ ଥାଇ ମଧ୍ୟ କ୍ଷୀଣ ହସ ଫୁଟି ଉଠିଲା ସିଂ୍ଚାର ମୁହଁରେ । ମୃତ୍ୟୁର ଭୟ ଦେଖାଉଛି ରାକ୍ଷସଟା ? ......ହଠାତ୍ ବିଦ୍ୟୁତ୍ ପରି ମୁଣ୍ଡ ଭିତରେ ଗୋଟାଏ କଥା ଖେଳିଗଲା ତାର...ହଁତେ ତ, ଉଦ୍ଧାର ପାଇବାର ଏ ଉତ୍କୃଷ୍ଟ ପନ୍ଥା ତାର ମନେପଡ଼ୁନ ଏପର୍ଯ୍ୟନ୍ତ । ସେ ଆତ୍ମହତ୍ୟା ହିଁ କରିବ । ...ଆତ୍ମହତ୍ୟା ମହା-ପାପ; କିନ୍ତୁ ଆତ୍ମାର ଲାଞ୍ଛନାଠାରୁ ସେ ମହାପାପ କଣ ଶତ ଗୁଣରେ ଶ୍ରେୟ ନୁହେଁ ?

ଅସହଯୋଗ ଆନ୍ଦୋଳନ ସମୟରେ ଯେତେବେଳେ ରମଣୀମାନେ ଯୋଗଦେଇଥିଲେ ଆନ୍ଦୋଳନରେ, ସେତେବେଳେ ଏହି ପ୍ରଶ୍ନ ଉଠିଥିଲା । ବିପ୍ଳବ କ୍ଷେତ୍ରରେ ଉପସ୍ଥିତ ହେଲା-କ୍ଷଣି ସମସ୍ତପ୍ରକାର ଅତ୍ୟାଚାରର ସମ୍ମୁଖୀନ ହେବାକୁ ପଡ଼ିବ ନାରୀଙ୍କୁ । ସେତେବେଳେ ମହାତ୍ମାଙ୍କ କହିଥିଲେ, ପ୍ରତ୍ୟେକ ନାରୀ ଅସ୍ତ୍ର ରଖିବେ ନିଜ ପାଖରେ । ଆତ୍ମରକ୍ଷା ପାଇଁ ଆତ୍ମହତ୍ୟା କରିବା ପାପ ନୁହେଁ । ନାରୀ ନିକଟରେ ଏହାଠୁ ବଳି ଆତ୍ମରକ୍ଷାର ଶକ୍ତି କିଣ ବା ଅଛି ? ସ୍ନିଗ୍ଧା ଭାବିଲା···ଏ ଜଗତରେ କ୍ଷୁଦ୍ରତମ କୀଟକୁ ମଧ୍ୟ ତାର ଆକାର ପ୍ରକାର ମାଧ୍ୟମରେ ଆତ୍ମରକ୍ଷା କରିବାର ବର୍ମ ଦେଇଛନ୍ତି ଭଗବାନ୍; କିନ୍ତୁ ନାରୀ ଚିର ଅସହାୟା, ସୃଷ୍ଟିର ହତଭାଗ୍ୟତମ ଜୀବ ସେ ।

ସେ ଆତ୍ମହତ୍ୟା କରିବ—ଏଥିରେ ଆଉ ଦ୍ୱିଧା ନାହିଁ । ଉପରର ବଡ଼ ବଡ଼ ପୁରୁଣା-କାଳିଆ କଡ଼ିକାଠକୁ ଚାହିଁ ସ୍ନିଗ୍ଧା ଭାବିଲା – ଚମତ୍କାର ସୁଯୋଗ ରହିଛି ଏଥିପାଇଁ । ପଲଙ୍କ ଉପରେ ଯଦି କୌଣସିମତେ ଚୌକିଟାକୁ ରଖି, ତା ଉପରେ ଠିଆହୋଇ ମଶାରି ବାଡ଼ ସାହାଯ୍ୟରେ ଦଉଡ଼ିଟାକୁ ଗଳାଇ ଦିଆଯାଇପାରେ କଡ଼ିକାଠ ଓ ଗୃହ ଭିତରେ ଥିବା ଫାଙ୍କରେ, ତାହେଲେ କାମ ଶେଷ । କିନ୍ତୁ ଦଉଡ଼ି କାହିଁ ? ଦୃଷ୍ଟି ବୁଲାଇଲାକ୍ଷଣି ନଜର ପଡ଼ିଲା—କୁଞ୍ଚିତ ହୋଇ ରହିଥିବା ଶାଢ଼ୀଗୁଡ଼ାକ ଉପରେ—ଆଶାରେ ମୁହଁ ଉଜ୍ଜ୍ୱଳ ହୋଇଉଠିଲା ତାର । ଦେହରେ ଯେପରି ଦେଖାଦେଲା ନୂତନ ଶକ୍ତି...ଏତେବେଳେ ହେଲା ଏହିସବୁ ଚିନ୍ତାରେ ସେ ଏହିପରି ନିମଜ୍ଜିତ ହୋଇଯାଇଥିଲା ଯେ, ସୁକୁମାରବାବୁ ଦ୍ୱାର ସେ ପାଖରେ ରହି କଣ ସବୁ ବକ୍ ବକ୍ କରି କହିଯାଉଥିଲେ ସେ ସବୁ ତା କାନରେ ପଶିନି । ଚିନ୍ତାର ମାତ୍ରା କମିଲାକ୍ଷଣି ଶୁଣିଲା ସେ—ରଞ୍ଜନ କହୁଛି, 'ଏଁ, ଏତେ ଉତ୍ତେଜିତ ହେଉଛୁ କାହିଁକି ସୁକୁମାର ? ମୁଣ୍ଡର କ୍ଷତଟାର ବ୍ଲିଡିଂ ହୋଇପାରେ ଆଉଥରେ... ଶାନ୍ତ ରହ....'

'ଶାନ୍ତ ରହିବ ? କଣ ସେ କହୁଛୁ—ବରଂ ମୋ ବନ୍ଧୁକଟାକୁ ନେଇଆସ୍ ।'

ଘୃଣାରେ ସ୍ନିଗ୍ଧା ଭାବିଲା—ଲୋକଟା ଆହତ ହୋଇଛି ତାହେଲେ; କିନ୍ତୁ ସାମାନ୍ୟ ଚିଜରେ ଆହତ ହେଲାନି କାହିଁକି ? ପାପୀଟାର ମୁହଁଟାକୁ ଯଦି ସେ ଛିନ୍ନଛିନ୍ନ କରି-ଦେଇପାରିଥାନ୍ତା ! ଆଶ୍ଚର୍ଯ୍ୟ ! ଜୀବନରେ ହିଂସାର କଥା ଆଦୌ ଯେ ଥରେହେଲେ ଭାବିନି, ଆଜି ଏ ମୁହୂର୍ତ୍ତରେ ସେ ଭାବିଲା—ରକ୍ତାକ୍ତ କ୍ଷତବିକ୍ଷତ କରି ଲୋକଟାକୁ ଯଦି ସେ ହତ୍ୟା କରିଦେଇପାରିଥାନ୍ତା, ପୃଥିବୀ ଭାରଶୂନ୍ୟ ହୋଇଥାନ୍ତା ତାହେଲେ ।

'ରଞ୍ଜନ୍, ମୁଁ ଯାଏ ବନ୍ଧୁକଟା ଆଣିବି ।'

'ଧୀରେ ବନ୍ଧୁ ଧୀରେ । ବିପଦ ପଡ଼ିଲେ ଧୈର୍ଯ୍ୟର ଆବଶ୍ୟକତା ସବୁଠାରୁ ବେଶି । ଉତ୍ତେଜିତ ହୁଅନା ସୁକୁମାର, ଏ କଣ ଉପନ୍ୟାସ ହୋଇଛି ନା ସିନେମା ହୋଇଛି ଯେ

ସ୍ମିତାଦେବୀ ଖସି ଚାଲିଯିବେ ? ଏ ଫାନ୍ଦ ଭିତର୍ ଯେ ଆଉ ଯାଇପାରିବେନି—ଶେଷ ନିଶ୍ୱାସରେ ନିଶ୍ଚିନ୍ତ ରହ । ସେ ଉପାୟ ତାଙ୍କର ନାହିଁ । କେତେବେଳେ ଦ୍ୱାର ବନ୍ଦ କରି ରହିବେ ଦେଖାଯାଉ...ରାତି ତ ପୁଣି ଆସୁଛି...ଜନମାନବଶୂନ୍ୟ ନିର୍ଜନ ନିଃଶବ୍ଦ ରାତି ।'

କଥା ଶେଷରେ ଖୁଁ ଖୁଁ ହୋଇ ତାର ସେ ସଇତାନୀଭରା ହସ ହସିଲା ସେ । ତାର ଉଦ୍ଦେଶ୍ୟ ଯେ ବନ୍ଦିନୀ ସ୍ମିତାକୁ ଆହୁରି ଅଧିକ ଭୟଭୀତ କରାଇବା, ତାହା ପ୍ରକାଶ ପାଉଥିଲା ତାର ଟେଇଁବାଇ ଟେଇଁବାଇ କଥା କହିବାର ଭଙ୍ଗୀରେ ।

କଥାଗୁଡ଼ିକ ଶୁଣି ଘର ଭିତରେ ଥାଇ ମଧ୍ୟ ଭୟରେ ସ୍ମିତା ନିଜର ଦୁଇହାତରେ ମୁହଁ ଘୋଡ଼ାଇପକାଇଲା । ସାରା ଦେହଟା ତାର ଥରିଉଠିଲା କ୍ଷଣକ ପାଇଁ ।

"ଆସେ, ବରଂ ଆରାମରେ ବସି ଟିକିଏ ଡ୍ରିଙ୍କ୍ କରିବା । ଦେହଟା ତାଜା ହେଇଯିବ । ବନ୍ଧୁ ! ବ୍ୟସ୍ତ ହେବାର ଟିକିଏ ହେଲେ କାରଣ ନାହିଁ...କେହି ଆସିବେନି ଆଉ ଏପଟକୁ । ତାପରେ ଆମ ସ୍ମିତାଦେବୀଙ୍କର ସେ ଭଳି ଲଭର୍ ବି କେହି ନାହିଁ ଯେ ତାଙ୍କ ଅନୁସନ୍ଧାନରେ ଆସି ଖୋଜି ଖୋଜି ପହଞ୍ଚିଯିବ । ସତରେ ମତେ ଏ ଖେଳ ଚମତ୍କାର ଲାଗୁଛି ସୁକୁମାର । ଗପରେ, ସିନେମାରେ ଇମିତି ମଜା ଦେଖିଛୁ ସିନା, ବାସ୍ତବକ୍ଷେତ୍ରରେ ଏଭଳି ଅଭିଜ୍ଞତା ହୋଇନି କେବେ । ଚମତ୍କାର....ବଡ଼ ଚମତ୍କାର ସତେ । ଚାଲ ସେ ଘରକୁ ।"

ଅଭିନୟ କଲାପରି କହିଚାଲିଥିଲା ରଞ୍ଜନ ।

ସୁକୁମାର କହିଲେ, "ନା, ନା ରଞ୍ଜନ ସେ ସବୁ ହେବନି । ସଇତାନଟା ମୋ ହାତମୁଠା ଭିତରକୁ ନ ଆସିଲେ ମୁଁ ନିଶ୍ଚିନ୍ତ ହେବିନି । ତୁ ଯା ବରଂ ବାହାର ପଟେ ଟିକିଏ ଅପେକ୍ଷା କରିବୁ ଆଉ ବାହାଦୂରକୁ କହିବୁ ବଗିଚା ଭିତରକୁ ଯିବ । ସେଇଟି ଶେଷ ମୁଣ୍ଡରେ ମାଳୀର ଘରଟା ଅଛି...ମାଳୀଟା ତ ଯାଇଛି । ସେ ଘର ତାଲାର ଚାବି ବୋଧହୁଏ ତାର ପାଖରେ । ବାହାଦୂରକୁ କହ ତାଲାଟା ଭାଙ୍ଗି ସେ ଭିତରୁ ନେଇଆସିବ ବଡ଼-ଶାବଳଟା । ଏ ଦ୍ୱାରଟା ଭାଙ୍ଗିବାକୁ ସେ ଶାବଳ ଦରକାର । ସେ କୌଣସିମତେ ଦ୍ୱାରଟା ଭାଙ୍ଗିବାକୁ ପଡ଼ିବ ।"

ସ୍ମିତାର ଅନ୍ତରାତ୍ମା ଶିହରି ଉଠିଲା ଭୟରେ, ଆଉ କାଳ ବିଳମ୍ବ ନ କରି ନିଜର ଉଦ୍ଦେଶ୍ୟ ପୂରଣ ପାଇଁ କ୍ଷିପ୍ରଗତିରେ ଆଗେଇଗଲା ସେ, ଆଉ ଶାନ୍ତ ଦୃଢ଼ତା ସହିତ ନିଜର ମୃତ୍ୟୁ ବେଦୀକୁ ସଜାଡ଼ିଲା ।

ଫାଶଟି ଆଡ଼କୁ ପ୍ରଥମେ ସେତେବେଳେ ଚାହିଁଲା—ଭୟରେ ସ୍ୱତଃ ଆଖିଦୁଇଟି ବୁଜି-ହୋଇଗଲା ତାର । ଆଉ ଅଳ୍ପକ୍ଷଣ ପରର ଅବଶ୍ୟମ୍ଭାବୀ ଦୃଶ୍ୟ କଥା ଭାବି ଆତଙ୍କରେ ସେପରି ସ୍ତବ୍ଧ ହୋଇଗଲା ତା ହୃଦୟ—ଇମିତି ଝୁଲିବ ତାର ମୃତ ଦେହଟା ! ଯାହା ଭାବିବା ସହଜ, ତାକୁ କାର୍ଯ୍ୟରେ ପରିଣତ କରିବା କି କଷ୍ଟକର ସତେ ! ସେ ଆଉ ସେହି

ପାଶଟି ଆଉକୁ ଚାହିଁପାରିଲ ନା । ଆଖି ବୁଜି ଦୁଇହାତ ଯୋଡ଼ି ପ୍ରଣାମ କଲା ସେହି ସବଂଶକ୍ତି-ମାନଙ୍କ ଉଦ୍ଦେଶ୍ୟରେ—ପ୍ରାର୍ଥନା କଲା ଯେପରି ଶେଷ ଥର ପାଇଁ ସେ ଶକ୍ତି ଭରିଦିଅନ୍ତି ତା ଦେହରେ ଓ ମନରେ ।

ମୁଦ୍ରିତ ନୟନ ଆଗରେ ତାଙ୍କ ବିଷଣ୍ଣ ମୁହଁଟି ଭାସିଉଠିଲ, ସିନ୍ଧୁରର ଭାଙ୍ଗା ସଚୀର କଅଁଳ ମୁହଁ । ଆପଣାଛୁଏଁ ସ୍ବଯ୍ୟାଚକ ଭଳି ଦେଖାଦେଲ ସୁବ୍ରତର ମୁହଁ ମଧ୍ୟ—ଏ ସଂସାରରେ ଅତିପ୍ରିୟ ମୁହଁ କେତୋଟି ତାର । ଏମାନଙ୍କୁ ଛାଡ଼ି ଚିରଦିନ ପାଇଁ ଚାଲି-ଯିବାରେ ତାର ଦୁଃଖ ନାହିଁ । ନିଜର ମୃତ୍ୟୁରେ ବି ତାଲେମାନ ଦୁଃଖ ନାହିଁ । ଏ ସଂସାରର ମାୟା ଯେ ଅନେକ ଦିନ ତଳୁ ଛାଡ଼ିଯିବାକୁ ଚାହିଁଥିଲ, ଦୀର୍ଘାୟୁ କାମନା କରି ନଥିଲ କେବେ । ଖାଲି ଏତିକି ଦୁଃଖ ରହିଗଲା ଯେ ତାର ପ୍ରକୃତ ସ୍ୱରୂପ ତାର ମୃତ୍ୟୁପରେ କେହି ବୁଝିବେନି । ନିନ୍ଦାର ଢ଼ଣ୍ଡିମ ବାଜିଉଠିବ ତା ନାଁରେ । କେହି ବୁଝିବେନି ତାର ଆତ୍ମହତ୍ୟାର ପ୍ରକୃତ କାରଣ । କୌଣସି ଜଙ୍ଗଲରେ କି ନଈ ଭିତରେ ଯଦି ତାର ଦେହଟା ଆବିଷ୍କୃତ ହୁଏ, ଫୁଲିଉଠି ବିକୃତ ହୋଇଥିଲେ ସୁଦ୍ଧା ଏ ଗାଁର ଲୋକେ ନିଶ୍ଚୟ ଚିହ୍ନିବେ ତାକୁ । ଖବରକାଗଜରେ ବଡ଼ ବଡ ଅକ୍ଷରରେ ମୁଦ୍ରିତ ହୋଇ ଆତ୍ମପ୍ରକାଶ କରିବ—ନୂଆଁଗାଁର ନାରୀଶିକ୍ଷାଶ୍ରମର ଶିକ୍ଷୟିତ୍ରୀ ସିନ୍ଧୁରା ମିଶ୍ରର ଶବ ବିଷୟରେ ନାନା ଜଳ୍ପନା କଳ୍ପନା, ତାର ଚରିତ୍ର ବିଷୟରେ ଆକ୍ଷେପ । ଚତୁର ରାକ୍ଷସଗୁଡ଼ାକ ଯେ ସୁନ୍ଦର ରୂପେ ଆତ୍ମଗୋପନ କରିବେ, ସେଥିରେ ତାଲେମାନ ସନ୍ଦେହ ନାହିଁ । ଆଉ...ଆଉ ଖବର କାଗଜଟା ଯେତେବେଳେ ବାପା ପଢ଼ିବେ ଖବରଟା....ସଚୀ ପଢ଼ିବ....ସୁବ୍ରତ ଦେଖିବ.... ଯେତେବେଳେ....ଯେତେବେଳେ ?

ତାହାହିଁ ଏକମାତ୍ର ଚରମ ଦୁଃଖ ହୋଇ ରହିଗଲା ତା ମନ ଭିତରେ । କଳଙ୍କର କାଳିମାରେ ଲିପ୍ତ ହୋଇ ହିଁ ଚାଲିଯିବା ତାର ବିଧିଲିପି । ସେ କଥାକୁ ଖଣ୍ଡନ କରିବ କିଏ ?

ସିନ୍ଧୁରାର ମୁଦ୍ରିତ ଆଖିକୋଣରୁ ବଡ଼ ବଡ ଦୁଇ ବିନ୍ଦୁ ଅଶ୍ରୁ ଝରିପଡ଼ିଲା । ଲୁଗାକାନିରେ ମୁହଁ ପୋଛି ସେ ଦୁଇପାଦ ଆଗେଇ ଆସିଲା ଝରକା ନିକଟକୁ—ଏ ସୁନ୍ଦର ପୃଥିବୀକୁ ଶେଷ-ଥର ପାଇଁ ଟିକିଏ ଆଖି ପୂରାଇ ଦେଖିବ, ତା'ଠାରୁ ନେବ ଶେଷ ବିଦାୟ ।

ସନ୍ତର୍ପଣରେ ସେ ମୁହଁ ବଢ଼ାଇ ଚାହିଁଲା ବାହାରକୁ—ଦୋତାଲାରୁ ଠିକ୍ ସେ ରହିବା ଘରଟି ପାଖରୁ ଓହ୍ଲାଇଯାଇଛି ଗୋଟାଏ ସରୁ କାଠ ସିଡ଼ି । ତଳେ ତାରି ପାଖରେ ପଦ-ଚାରଣ କରୁଛି ରଞ୍ଜନ ! କାଳେ ସେ ଏହି ବାଟଦେଇ ଚାଲିଯିବ, ସେଥିପାଇଁ ଯେ ଏ ସତର୍କତା ଅବଲମ୍ବନ କରାଯାଇଛି, ସେକଥା ବୁଝିବାକୁ ବାକି ରହିଲାନାହିଁ । ରାକ୍ଷସ ଭଳି ନେପାଳ ଦରୁଆନ୍‌ଟି ପହରାଥିଲା, ରଞ୍ଜନ ଗଲା ଭିତରକୁ । ହୁଏତ ଏହିକ୍ଷଣି ଆରମ୍ଭ ହୋଇ-ଯିବ ଦ୍ୱାର ଭାଙ୍ଗିବା କାର୍ଯ୍ୟ । ମୃତ୍ୟୁର ସମୟ ନିକଟରୁ ନିକଟତର ହୋଇ ଆସୁଛି । ଓଃ,

ଭଗବାନ, ସେ ଆଉ ଧୈର୍ଯ୍ୟ ଧରିପାରୁନି, ସେତେ ଚଞ୍ଚଳ ମରିପାରେ ତେତେ ମଙ୍ଗଳ । ଦୁଇ ହାତରେ ଝରକାର ବାଡ଼ ଦୁଇଟାକୁ ମୁଠାଇ ଧରିଲା ସେ ନିଜକୁ ବଳ ଦେବାକୁ ।

...ତଳେ ଶେଷ ପାହାଚ ଉପରେ ମୁଣ୍ଡଟା ତଳକୁ କରି ବସିଛି ନେପାଳୀ ଲୋକଟା । ସୌଭାଗ୍ୟବଶତଃ ଚାହିଁନି ଏ ଝରକା ଆଡକୁ । ସ୍ମିତା ଶେଷ ଥର ପାଇଁ ଚାହିଁଲା ତାର ପ୍ରିୟ ପୃଥିବୀ ଆଡକୁ । ହଠାତ୍ ଆଖି ଆଗରେ ଯେଉଁ ଦୃଶ୍ୟ ଦେଖିଲା, ସେଥିରେ ସେ ଭାବିଲା, ବୋଧହୁଏ ତାର ସବୁ ବୁଦ୍ଧିବୃତ୍ତି ଲୋପପାଇଯାଇଛି, ନଚେତ୍ ଦୃଷ୍ଟି ଝାପ୍ସା ହୋଇଯାଇଛି ! ହେ ଭଗବାନ୍, ଏତେ ଚଞ୍ଚଳ ଯଦି ସେ ପାଗଳ ହୋଇଯାଏ ତେବେ ତାର ଦୁର୍ଗତିର ସେ ସୀମା ରହିବନି । ଚରମ ଲାଞ୍ଛନା ଭୋଗ କରିବ ସେ ।

ଆଖି ଦୁଇଟା ମଳିଚ ଦେଖିଲା, ପାଗଳପରି ନିଜ ଦେହକୁ ଚିମୁଟିବାକୁ ଲାଗିଲା, ପୁଣିଥରେ ଆଖି ବୁଲାଇ ଆଣିଲା —ନା ସବୁ ଠିକ୍ ଜାଣିପାରୁଛି ସେ, ମସ୍ତିଷ୍କ ସ୍ଥିର ଅଛି ତ....ସେଇ ଗାଡ଼ି, ହଁ ସେଇ ଗାଡ଼ି, ବୋଧହୁଏ ଖାଲି ଏ ଜନ୍ମ ନୁହେଁ, ଶହେ ଜନ୍ମ ପରେ ମଧ୍ୟ ଦେଖିଲେ ସେ ଠିକ୍ ଚିହ୍ନିପାରିବ ଏଇ ଗାଡ଼ି ! ସୁବ୍ରତର ସେଇ ଗ୍ରେଟିଆ କଳା ମଟର-ଗାଡ଼ିଟା ଅଟକିଛି ସାମନା ରାସ୍ତାରେ, ଆଉ ତାରି ପାଖରେ ଠିଆହୋଇଛି ନିଜେ— ସୁବ୍ରତ ।।

ଅସ୍ତଗାମୀ ସୂର୍ଯ୍ୟର ବାଙ୍କି ହୋଇପଡ଼ିବା ସେଇ ଉଜ୍ଜ୍ୱଳ ରକ୍ତାଭ କିରଣ ଆସି ପଡ଼ୁଛି ତାର ସର୍ବାଙ୍ଗରେ । ସେ ମୁହଁ, ସେ ପୋଷାକ, ଠିଆହେବାର ସେଇ ଏକାନ୍ତ ପରିଚିତ ଭଙ୍ଗୀଟି—ନା, ଏ ସ୍ୱପ୍ନ ନୁହେଁ, ମତିଭ୍ରମ ନୁହେଁ—ଏ ଏକ ଅଲୌକିକ ସତ୍ୟ । ଦେଖିଲେ ମନେ ହେଉଛି ଗାଡ଼ି ବିଗିଡ଼ିଛି । ସାଙ୍ଗରେ ଆଉ ଦି' ତିନିଜଣ ଲୋକ, ଜଣେ ତଳେ ଶୋଇ ଗାଡ଼ି ଭିତରକୁ ଦେହର ଅର୍ଦ୍ଧାଂଶ ଗଳାଇଛି...ଆଉ ଦି' ଜଣଙ୍କୁ କଣସବୁ କହୁଛି ସୁବ୍ରତ ।

ଅସହାୟା ସ୍ମିତା'ର ଆଖିରୁ ଧାର ଧାର ଲୁହ ଝରିପଡ଼ିବାକୁ ଲାଗିଲା । ମୁକ୍ତି ତାର ଏତେ ନିକଟରେ ଅଥଚ ମୁକ୍ତିର ବାଟ ନାହିଁ । ସେଇଠି ସେ ରାସ୍ତା ଉପରେ ଠିଆହୋଇ ରହିଛି ସୁବ୍ରତ, ଏଠି ଏ ଘର ଭିତରେ ବନ୍ଦିନୀ ଅବସ୍ଥାରେ ରହିଛି ସେ, ଦୂରରୁ ଦେଖିପାରୁଛି, କିନ୍ତୁ ତାର ଉପସ୍ଥିତି କୌଣସି ପ୍ରକାରେ ଜଣାଇବାର ଉପାୟ ନାହିଁ । ଏଠୁ ପାଟିକଲେ ସେ କେବେ ଶୁଣିବନି, ତା ଠିକ୍ ଜାଣେ ସେ. ପବନର ଲହରୀ ଭିତରେ କୁଆଡେ ଲୁଚିଯିବ ସେ ସ୍ୱର । ବରଂ ରକ୍ଷୀଗୁଡ଼ାକ ସତର୍କ ହୋଇଯିବେ, ଜାଣିବେ ସେ ମୁକ୍ତି ପାଇଁ ଚେଷ୍ଟା କରୁଛି ।

ବନ୍ଦ ଦ୍ୱାର ସେପଟୁ ଭାସିଆସୁଛି ସଇତାନ୍ ଦୁଇଟାର ମନଖୋଲା ହସ, ଅସ୍ପଷ୍ଟ କଥା-ଭାଷା । ବୋଧହୁଏ ସେଇ ବାରଣ୍ଡାରେ ସେମାନେ ନିଜ ନିଜର ପାନୀୟ ଧରି ବସିଛନ୍ତି । ସ୍ମିତାର ଇଚ୍ଛା ହେଲା ଝରକାର ଲୁହା ବାଡ଼ ଦେହରେ ନିଜ ମୁଣ୍ଡକୁ ପିଟିଦେଇ ଛିନ୍ ଭିନ୍

କରିଦିଅନ୍ତା, ରକ୍ତାକ୍ତ କରିଦିଅନ୍ତା ନିଜକୁ, ନହେଲେ ମୁଠା ମୁଠା କରି ଛିଣ୍ଡାଇ ଦିଅନ୍ତା ନିଜ ମୁଣ୍ଡର ବାଳଗୁଡ଼ିକ ।

ଉନ୍ମାଦିନୀ ଭଳି ଘରର ଏପଟ ସେପଟକୁ ଦ୍ରୁତଗତିରେ ପଦଚାରଣ କରିବାକୁ ଲାଗିଲା ସେ...ଉପାୟ କଣ ଅଛି ? ଓଃ ! କଣ ଉପାୟ ଅଛି ? ···ଏହିକ୍ଷଣି ହୁଏତ ମଟରଟି ଠିକ୍ ହୋଇଯିବ, ତାର ଆଖି ସାମନାରେ ସୁବ୍ରତକୁ ନେଇଯାଉଥିବ...ଓଃ ! କଣ କରିବ ସେ ? ପଛପଟର କବାଟଟା ଖୋଲିଯିବାକୁ ଚେଷ୍ଟା କରିବ କି ? କିନ୍ତୁ ତା ଉପରି ସଫଳ ହେବ ? ଯମଦୂତ ଭଳି ଦରୁଆନ୍ ଟା ବସିଛି ପ୍ରକୋଷ୍ଠର ଶେଷ ପାହାଚରେ, ଦୁଆର ଖୋଲା ଶବ୍ଦ ଶୁଣିଲାକ୍ଷଣି ଧାଇଁ ଆସିବ । ଅସମ୍ଭବ, ଏ ଘରୁ ବାହାରିଯିବାଟା ହେଉଛି ଅସମ୍ଭବ । ତାର ମନେହେଲା—ଏ ପର୍ଯ୍ୟନ୍ତ ସେ ପାଗଳ ହୋଇ ନଥିଲା; କିନ୍ତୁ ଏଥର ପାଗଳ ହୋଇଯିବ !

ସ୍ମିତା ଥରେ ଝରକା ପାଖକୁ ଦୌଡ଼ିଯାଉଛି ତ ପୁଣି ଦୌଡ଼ିଆସୁଛି ଖଟ ପାଖକୁ । ଡ୍ରେସିଂଟେବୁଲର ଦର୍ପଣରେ ନିଜର ପ୍ରତିବିମ୍ବକୁ ଦେଖି ଚମକିପଡ଼ୁଛି, ଚିହ୍ନି ହେଉନି ନିଜକୁ । ବିଗତ ହୋଇଥିବା କେତୋଟା ଘଣ୍ଟା ଭିତରେ ସେ ଯିମିତି ଏକ ପ୍ରେତାତ୍ମା ପାଲଟିଯାଇଛି, ଦୁଶ୍ଚିନ୍ତା ଓ ଆତଙ୍କ ମିଶି ତା ଦେହର ସମସ୍ତ ରକ୍ତ, ସମସ୍ତ ଜୀବନୀଶକ୍ତି ଶୋଷଣ କରିନେଇଛି ! ବହୁତ ଭିତରକୁ ପଶିଯାଇଛି ଆଖି ଦୁଇଟା—ଚାରିପଟେ ଅତି ସ୍ପଷ୍ଟ କଳାଦାଗ—ଶୀର୍ଣ୍ଣ ବିବର୍ଣ୍ଣ ମୁହଁର ଆକୃତି ଦଶୁଚି ବହୁତ ଦିନ ଅସୁସ୍ଥତା ଭୋଗିଥିଲା ପରି ।

ନିଜର ସେ ଅସହାୟ ରୂପ ଆଡ଼କୁ ଆଉ ଅଧିକ ସମୟ ଚାହିଁପାରିଲାନି ସେ । ପୁଣି ଦୌଡ଼ିଗଲା ଝରକା ପାଖକୁ । ହାତ ଦୁଇଟା ମୁଠା ମୁଠା କରି ସେ ଖାଲି ପଥର ଭଳି ଚାହିଁ ରହିଲା ସୁବ୍ରତ ଆଡ଼କୁ—ନା ଉପାୟ ନାହିଁ, ତାକୁ ମରିବାକୁ ହିଁ ପଡ଼ିବ, ଏଭଳି ଅସହାୟ ଭାବରେ ଏଇଠି. ତା ଛଡ଼ା ଅନ୍ୟ କୌଣସି ବାଟ ନାହିଁ—ହେ ଭଗବାନ୍, ଏହାହିଁ କଣ ତମର ବିଚାର....ଏହାହିଁ କଣ ତମର ଶକ୍ତି, ଏହାହିଁ କଣ ତମର ସତ୍ତା ?

ଯେଉଁ ଭଗବାନଙ୍କୁ ଦିନେ ସେ ନିଷ୍ଠୁର ବୋଲି ଅଭିଯୁକ୍ତ କରିଥିଲା, ଆଜି ପ୍ରାଣ ତାର ଆକୁଳ ହୋଇ ତାଙ୍କର କରୁଣା ଭିକ୍ଷାକଲା । ନିଜ ହୃଦ୍ ଯନ୍ତ୍ରଟା ଧଡ଼୍ ଧଡ଼୍ ହୋଇ ପରିଚାଳିତ ହେବାର ଶବ୍ଦ ଯେପରି ନିଜ କାନରେ ବାଜୁଥିଲା । ମୁଠା ହୋଇଥିବା ହାତ ଦୁଇଟାକୁ ଛାତି ଉପରେ ରଖି ସ୍ଥାଣୁ ଭଳି ଠିଆହୋଇ ରହିଲା ସେ । ଠିକ୍ ଏପରି ଅବସ୍ଥାରେ ସେ ଦେଖିଲା ଯେ ସୁବ୍ରତ ରାସ୍ତା ଉପରୁ ଫାଟକକୁ ଲକ୍ଷ୍ୟକରି ସେହିଆଡ଼କୁ ଆସୁଛି । ଫାଟକ ପାଖରେ ରହି ହାତ ଠାରି ଦରୁଆନ୍ ଟିକୁ ଡାକିଲା ସେ ।

ଦରୁଆନ୍ର ନଜରରେ ନ ପଡ଼ିବା ପାଇଁ ଝରକା ନିକଟରୁ ଅପସରି ଗଲା ସ୍ମିତା ।

ଟିକଏ ଦ୍ୱିଧା କଲ ପରୁଆନ୍‌ଟା ବାଧ୍ୟହୋଇ ସୁବ୍ରତ ପାଖକୁ ଯାଉଛି !

ଓଃ ! ବର୍ତ୍ତମାନ୍ ସେ କଣ କରିବ ? ହାତଟା ହଲାଇ ନିଜ ଆଡ଼କୁ ସୁବ୍ରତର ଦୃଷ୍ଟିକୁ ଆକର୍ଷଣ କରିବ ? ନା, କିଛି ଲାଭ ହେବନି, ଏତେ ଦୂରରୁ ତାକୁ ଚହ୍ନି ପାରିବନି ସୁବ୍ରତ, ଚହ୍ନିବା ଏକାବେଳେକେ ଅସମ୍ଭବ । ହୁଏତ ସେ ଦୃଷ୍ଟିର ଭ୍ରମ ମନେକରିବ, ନଚେତ୍ ମନେକରିବ କେହି ଜଣେ ଉନ୍ମାଦିନୀ ସ୍ତ୍ରୀଲୋକ । ବରଂ...ବରଂ ଏଘରୁ ବାହାରିପଡ଼ିବା ଉଚିତ ।—ଏ ସୁଯୋଗର ପ୍ରତିଟି ମୁହୂର୍ତ୍ତ ତା ପକ୍ଷରେ ଅମୂଲ୍ୟ, ଯାକୁ ଅପବ୍ୟବହାର କରିବାର ନୁହେଁ ।

ହୁଏତ ଭଗବାନ୍ ତା ଡାକ ଶୁଣିଛନ୍ତି···ମୁହଁ ଟେକି ଚାହିଁଛନ୍ତି !

'···ହେ ପ୍ରଭୁ ! ବର୍ତ୍ତମାନ ଦେହରେ ଶକ୍ତି ଦିଅ, ପାଦ ଦୁଇଟା'ରେ ଶକ୍ତି ଦିଅ···'

ମୁଣ୍ଡ ଘୂରୁଛି । ପାଦ ଟଳମଳ ହେଉଛି ।

'....ପ୍ରଭୁ ହେ କୂଳକୁ ଆଣି ଆଉ ଭେଲା ବୁଡ଼ାଇଦିଅ ନା...ବଞ୍ଚାଅ···ବଞ୍ଚେଇଦିଅ ....ଏ ନର୍କରୁ ମତେ ବଞ୍ଚେଇଦିଅ....'

ସେ କହୁନଥିଲା, ତାର ହୃଦୟ କହୁଥିଲା ।

ସନ୍ତର୍ପଣରେ ସେ ଚାହିଁଲା । ଯମଦୂତଟା ଯାଉଛି ଫାଟକ ଆଡକୁ । ସେ ଯିବ, ଯିବ ସୁବ୍ରତ ପାଖକୁ, ଏ ସୁଯୋଗ ନେବାକୁ ହେବ ଯିମିତି ହେଲେ । ଅତି ସାବଧାନରେ ଥରଥର ହାତରେ ଦ୍ୱାରଟା ଖୋଲିଲା ସ୍ନିଗ୍ଧା । ପାଖର ଗ୍ରେଟ କୋଠରୀଟି ପୁରୁଣାକାଳିଆ ଢୋଡାଲ ପାଇଖାନା । ସେପଟକୁ ଥିବା ଗ୍ରେଟ ଦ୍ୱାରଟି ନିଶ୍ଚୟ ବାହାରୁ ପିଡ଼ିବାଟେ ମେହେନ୍ତର ଆସିବା ପାଇଁ ରହିଛି । କାଳ ବିଳମ୍ବ ନକରି ଅତି ସନ୍ତର୍ପଣରେ ସେ ଦ୍ୱାରଟି ବି ଖୋଲିଲା ସେ । ବାହାରର ମୁକ୍ତ ପବନ ଆସି ବାଜିଲା ମୁହଁରେ । କ୍ଷିପ୍ରପଦରେ ସେ ଓହ୍ଲାଇଯିବାକୁ ଲାଗିଲା ତଳକୁ...ଠିକ୍ ଏ ସମୟରେ ତା କାନରେ ବାଜିଲା ଶୟନକକ୍ଷଟିର ପ୍ରଧାନଦ୍ୱାର ଉପରେ ଆଘାତ କରାଯାଉଛି ।

ସେ ଶବ୍ଦ ଶୁଣି ତା ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ବିଜୁଳି ପ୍ରବାହ ଖେଳିଗଲା ଯେପରି —ସେ ପ୍ରବାହ ଯେପରି ନୂତନ ପ୍ରାଣ ଶକ୍ତି ଖେଳାଇଦେଲା ତାର ମୃତପ୍ରାୟ ଦେହଟାରେ । ଚଟି ଦୁଇଟା ଗୁଡ଼ି ଆସିଥିଲା ସେ—ଘାସ ଉପରେ ଦୌଡ଼ିବାକୁ ଲାଗିଲା ପାଗଳ ପରି—ଆଉ ଯେପରି କୌଣସି କଥାକୁ ଖାତିର୍ ନାହିଁ...ମୃତ୍ୟୁ ସହିତ ଖେଳ ଖେଳିବାକୁ ସେ ଡେଇଁଛି, ଜାଣିଛି ଟିକଏ ଏପଟ ସେପଟ ହେଲେ ଆଉ ରକ୍ଷାନାହିଁ ତାର ।

ଗାଡିଟି ଝରପ ହୋଇଯାଇଥିଲା ଏକାବେଳେ । ବାଟରେ ଅନେକ ଥର ହଇରାଣ କଲା ଭଳି ମନେହେବାରୁ ସୁବ୍ରତ ବିଗିଡ଼ିଲା, ଚନ୍ଦନପୁର ଯିବ ନା ଗ୍ଣଡ଼ିଆସିଥିବା ଗାଡିରେ ରହିଯିବ ? ଚନ୍ଦନପୁରକୁ ଠିକ୍ ଆଉ କେତେ ବାଟ ଅଛି ସେକଥା ପଚାରିବାକୁହିଁ ଦରୁଆନ୍ ବାହାଦୁର୍‌କୁ ଡାକିଲା ସେ । କିନ୍ତୁ ତା ପଛରେ ସ୍ନିଗ୍ଧାକୁ ସେ ଭଳି ଆଶ୍ଚର୍ଯ୍ୟ ଭାବରେ

ଓହ୍ଲାଇ ରୁଦ୍ଧଶ୍ୱାସରେ ଦୌଡ଼ିଆସୁଥିବା ଦେଖି ବିସ୍ମୟରେ ହତବାକ୍ ହୋଇ ଚାହିଁ ରହିଲା ସେ । ସ୍ତ୍ରୀ ଲୋକଟି ଯେ ପାଗଳୀ ସେଥିରେ ସନ୍ଦେହ ନାହିଁ । କହିବା ବାହୁଲ୍ୟ ସେ ତାକୁ ଚିହ୍ନି ପାରିନଥିଲା ।

ସ୍ମିତା ଯେତେ ଜୋରରେ ଆଉ ଯେଉଁଭଳି ଭାବରେ ଆସୁଥିଲା, ଜଣାପଡୁଥିଲା ଯେ କୌଣସି ମୁହୂର୍ତ୍ତରେ ସେ ତଳେ ପଡ଼ିଯିବ । ଡାକ୍ତରର ସ୍ୱାଭାବିକ କର୍ତ୍ତବ୍ୟ ବୁଦ୍ଧି ଯୋଗୁଁ ଫାଟକଟା ଖୋଲିଦେଇ ସେ ଭିତରକୁ ଆଗେଇଆସିଲା କେତେ ପାଦ । ଶରବେଗରେ ବିସ୍ମୟବିମୂଢ଼ ବାହାଦୂରକୁ ଅତିକ୍ରମ କରି ତାକୁ ଏକାବେଳକେ ହତବୁଦ୍ଧି କରିଦେଇ ଦୌଡ଼ି ଆସିଲା ସ୍ମିତା । ସମସ୍ତ ଜ୍ଞାନ ଲୋପ ହେବା ଆଗରୁ ସେ ଶୁଣିଲା— ସେ କହୁଛି, "ରକ୍ଷାକର, ମତେ ବଞ୍ଚାଅ....ଏଠୁ ବଞ୍ଚାଅ....ହେ ଭଗବାନ୍...." ପରକ୍ଷଣରେ ଅମାବାସିର ଅନ୍ଧାର ଘୋଟିଗଲା ତାର ଚାରିଆଡ଼େ । ଆଉ ଅଧିକ ଭାର ସହିବାକୁ ଦେହଟା ତାର ରାଜି ହେଲାନାହିଁ ।

ହାତ ବଢ଼ାଇ ସୁବ୍ରତ ଯଦି ତାକୁ ଧରିପକାଇ ନଥାନ୍ତା ତେବେ ଭୂଇଁ ଉପରେ କଚାଡ଼ିହୋଇ ପଡ଼ିଯାଇଥାନ୍ତା ସେ । ମୂର୍ଚ୍ଛିତା ନାରୀଟିକୁ ସାବଧାନରେ ଭୂଇଁ ଉପରେ ଶୁଆଇଦେଇ ତା ମୁହଁକୁ ଚାହିଁଦେଲା କ୍ଷଣି ସୁବ୍ରତର ଅନ୍ତଃସ୍ଥଳ ଯେପରି ଚମକି ପଡ଼ିଲା—କ'ଣ ଦେଖୁଛି ସେ ? ସ୍ୱପ୍ନ ଦେଖୁଛି ନା କଣ ? ଯଦିଓ ଅତି ରୁଗ୍ଣ ଆଉ ପାଣ୍ଡୁର ଦିଶୁଥିଲା, ତେବେବି ମୁହଁଟାକୁ ଚିହ୍ନିବାକୁ ବିଳମ୍ବ ହୋଇନଥିଲା ତାର । ଏଇ ମୁହଁ ...ତାର ଦିନରାତିର ଧ୍ୟାନ ହୋଇ ରହିଛି ମାସ ମାସ ଧରି । କେତେ ବ୍ୟାକୁଳତା ସହିତ ଦେଶରୁ ଦେଶାନ୍ତର ବୁଲି ସେ ଖୋଜିଛି ଏଇ ମୁହଁଟିକୁ । ତାର ହୃଦୟର ଅଧିଷ୍ଠାତ୍ରୀ ଦେବୀ ପ୍ରତିମା. ତାର ପ୍ରାଣଠାରୁ ବଳି ପ୍ରିୟତମା ସ୍ମିତା ଏ । ହଁ, ସେ ଯେ ସ୍ମିତା, ସେଥିରେ ସନ୍ଦେହ ନାହିଁ । ପରିଚିତ ଛିଣ୍ଡା ଶାଢ଼ୀ ଆଉ ବ୍ଲାଉଜ୍ ତା ଦେହରେ —ହାତ ଦୁଇଟାରେ ସେହି ଚୁଡ଼ି ଦିପଟ ! ଦୀର୍ଘ କେଶଗୁଡ଼ିକ ବିସ୍ରସ୍ତ ହୋଇପଡ଼ିଛି ଚାରିଆଡ଼େ । କେତେ ମୁହୂର୍ତ୍ତପାଇଁ ସ୍ତବ୍ଧ ହୋଇଗଲା ସେ—କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆହୋଇ ରହିଲା ସେହିପରି ।

ନେପାଳୀ ଦରୁଆନ୍ ବାହାଦୂର ଅଦୃଶ୍ୟ ହୋଇଯାଇଥିଲା ଏତେବେଳକୁ । ତା ମୁହଁରୁ ସବୁ କଥା ଶୁଣି ସୁକୁମାର ଓ ରଞ୍ଜନଙ୍କର ବୁଦ୍ଧି ହଜିଗଲା । ଉପରୁ ଝରକା ପାଖରୁ ଅଚେତନ ସ୍ମିତାକୁ ଦେଖି କେତେକ ପରିମାଣରେ ଆଶ୍ୱସ୍ତ ହେଲେ ସେମାନେ । କଣ କଣ କୁହାଯିବ ଓ କରାଯିବ ସେ ବିଷୟରେ ପରାମର୍ଶ କଲାପରେ ସାହସ ସଞ୍ଚୟ କରି ଦୁହେଁ ଆସିଲେ ଘଟଣା ସ୍ଥଳକୁ ।

ସେତେବେଳକୁ ଭୂମି ଉପରେ ଆଣ୍ଠୁମାଡ଼ି ସ୍ମିତା ପାଖରେ ବସିଥିଲା ସୁବ୍ରତ । ବିହ୍ୱଳ ଭାବ କଟିଯିବାପରେ କର୍ତ୍ତବ୍ୟ ବିଷୟରେ ସଚେତନ ହୋଇଛି ସେ । ଗାଡ଼ି ଭିତରୁ

ଯନ୍ତ୍ରପାତିଗୁଡ଼ିକ ମଗାଇ ଆସି ପରୀକ୍ଷା କରନ୍ତି ସ୍ନିଗ୍ଧାକୁ । ଦେହର ନିଜର କୋଟ୍‌ଟିକୁ କାଢ଼ିପକାଇ ମୂର୍ଚ୍ଛିତାର ମସ୍ତକତଳେ ଉପାଧାନ ସ୍ୱରୂପ ଦେଇଛନ୍ତି ।

କମ୍ପାଉଣ୍ଡରଙ୍କୁ ପାଣି ବ୍ୟାଗ୍ ଓ ତଉଲିଆ ଖଣ୍ଡେ ଆଣିବାକୁ କହୁଥିଲି ସେ । ଏ ସମୟରେ ଦୁଇ ବନ୍ଧୁ ପହଞ୍ଚିଲେ ତା ପାଖରେ । ଅଭିନେତା ରଞ୍ଜନ, ଅଭିନୟ କରିବାରେ ଦକ୍ଷ ସେ, ତେଣୁ ସୁବ୍ରତ ଆଡ଼କୁ ଚାହିଁ ପ୍ରଥମେ ସେ ହିଁ କଥା ଆରମ୍ଭ କଲା, "ଦେଖନ୍ତୁ, ଆପଣ ଏପରି କଷ୍ଟ କରିଥିବାରୁ ଆମେମାନେ ପ୍ରକୃତରେ ଅତି ଦୁଃଖିତ । ମଝିରେ ମଝିରେ ଏଭଳି ଅବସ୍ଥା ହୁଏ । ଆତ୍ମୀୟା ଜଣକ ଆମର ବଡ଼ପାଗଳ । କବାଟ ବନ୍ଦକରି ଘର ଭିତରେ ବରାବର ରଖିବାକୁ ପଡ଼େ । ରାଞ୍ଚିକୁ ପଠାଇ ଚିକିତ୍ସା କରିବା ବିଷୟ ଭାବୁଛୁ—ଦେଖାଯାଉ, କଣ ହେବ । ବାହାଦୂର୍, ଘର ଭିତରୁ ଫିଡିଂ‌ଖଟଟା ଅଣିଲ, ସେଥିରେ ଶୁଆଇ ମା'ଙ୍କୁ ନେଇଯିବା.... ।"

ବାହାଦୂର ଚାଲିଗଲା । ମଦର ଉତ୍କଟ ଗନ୍ଧ ଆସି ବାଜିଲା ସୁବ୍ରତର ନାକରେ । ତୀକ୍ଷ୍ଣଦୃଷ୍ଟିରେ ସେ ଚାହିଁଲା ଦୁହିଁଙ୍କ ଆଡ଼କୁ । ସେମାନଙ୍କ ମୁହଁ ଦେଖି ସନ୍ଦେହ ରହିଲାନି ଯେ ଦୁହେଁ ଯାକ ଅଳ୍ପସମୟ ପୂର୍ବରୁ ମଦ୍ୟ ପାନ କରିଛନ୍ତି । ମନର ବିରକ୍ତି ମନରେ ରଖି ସେ ନିଜର ପରିଚୟ ଦେଲା, "ଦେଖନ୍ତୁ, ମୁଁ ଜଣେ ଡାକ୍ତର । ସରକାରଙ୍କ ପକ୍ଷରୁ ଭ୍ରାମ୍ୟମାଣ ଡାକ୍ତରଖାନାର ଚାର୍ଜ ନେଇ ଆସିଛି । ଚନ୍ଦନପୁରଠି ଆମର ପ୍ରଥମ ଗ୍ରାଉଣ୍ଡ ପଡ଼ିବ । କାଲିଠୁଁ ଲୋକ ଓ ଜିନିଷପତ୍ର ଚାଲିଗଲେଣି । ମୋର କାମ ଥିଲା ବୋଲି ମୁଁ ଅଟକିଯାଇଥିଲି ବାଲେଶ୍ୱରଠି, ବର୍ତ୍ତମାନ ଗାଡ଼ିଟା ବିଗିଡ଼ିଯିବାରୁ । ଏଠି ବାଧ୍ୟ ହୋଇ ରହିବାକୁ ହେଲା, ....ଆଚ୍ଛା, ଏଙ୍କର ଏ ବେମାରି ଆରମ୍ଭ ହୋଇ କେତେ ଦିନ ହେଲାଣି ?"

ସୁକୁମାର ବାବୁ କହିଲେ, "ବର୍ଷେ ।"

ରଞ୍ଜନ କହିଲା, "ଦୁ'ବର୍ଷ !"

ଏକାସାଙ୍ଗରେ ଦୁହେଁ ବିଭିନ୍ନ ପ୍ରକାର କଥା କହି ନିଜେ ଅପ୍ରସ୍ତୁତ ହେଲେ । ତରତର ହୋଇ ସୁକୁମାରବାବୁ ରଞ୍ଜନର କଥାକୁ ସମର୍ଥନ କରିବା ପାଇଁ କହିପକାଇଲେ, "ହଁ, ମୁଁ ଭୁଲ୍ କହିପକାଇଲି, ଏ ବେମାରି ଆରମ୍ଭ ହୋଇ ଦୁଇ ବର୍ଷ ହୋଇଗଲାଣି । କେତେ ଚିକିତ୍ସା ଯେ କରାଇଲିଣି, କାହିଁରେ କିଛି ଫଳ ହେଉନି ।"

ମନେ ମନେ ହସିଲା ସୁବ୍ରତ, ନା ସ୍ନିଗ୍ଧା ଘର ଛାଡ଼ି ଚାଲିଯିବାର ବର୍ଷେ ବି ପୂର୍ଣ୍ଣହୋଇନି । ଏ ଦୁହେଁ ଯେ ପରିଷ୍କାର ମିଛକଥା କହିଲେ, ସେଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆଉ କିଛି ନ କହି ପାଣି ବୋତଲଟି ଖୋଲିବାକୁ ହାତ ବଢ଼ାଇଲା ସେ । ସେ କଥା ଦେଖି ଦୁଇ ବନ୍ଧୁଙ୍କର ଉଦ୍‌ବିଗ୍ନତା ବଢ଼ିଗଲା...ସ୍ନିଗ୍ଧା ଚେତନା ଫେରି ପାଇଲେ ସବୁ ପରିକଳ୍ପନା ମାଟିହୋଇଯିବ । ବ୍ୟସ୍ତହୋଇପଡ଼ି ସୁକୁମାରବାବୁ କହିଉଠିଲେ,

''ଆଜ୍ଞା ଆଜ୍ଞା ଆଜ୍ଞା, ଆପଣଙ୍କର କଷ୍ଟ କରିବା ଦରକାର ନାହିଁ, ଆପଣ ଯାଆନ୍ତୁ···ଗାଡ଼ି ବିଷୟରେ କଣ ବ୍ୟବସ୍ଥା କରିବେ । ରୋଗିଣୀକୁ ଆମେ ଘର ଭିତରକୁ ନେଇଯିବୁ । ମଝିରେ ଏମିତି ତ ବରାବର ହୁଏ—ପାଣି ଛାଟିଲେ ଚେତା ଫେରିଆସେ !···''

ସୁବ୍ରତର କାନରେ ପ୍ରତିଧ୍ୱନିତ ହୋଇଉଠିଲା ଠିକ୍ ମୂର୍ଚ୍ଛା ହେବା ପୂର୍ବର କେତେକ କଥା ସିଂତାର, ''ରକ୍ଷାକର, ମତେ ବଞ୍ଚାଅ, ଏଠୁ ବଞ୍ଚାଅ....···ହେ ଭଗବାନ !''

ତାକୁ କି ବିପଦରେ ପକାଇଥିଲେ ଏ ସଇତାନ୍ ଦଳଟା ? ଚରିତ୍ରହୀନ, ମଦ୍ୟପ ଚକ୍ରାନ୍ତକ ସବୁଗୁଡ଼ାକ । ହୁଏତ ଏମାନଙ୍କ ଅତ୍ୟାଚାରରେ ପ୍ରକୃତରେ ପାଗଳୀ ହୋଇ ଯାଇଛି ସେ ! ....ଭାବାଲୋକିଣୀ ସୁବ୍ରତର ଅନ୍ତର କଣ୍ଟକିତ ହୋଇଗଲା । କ୍ରୋଧରେ ଦେହସାରା ସର୍ବାଙ୍ଗ ଜଳି ଉଠିଲା ତାର । ଦୃଢ଼ କଣ୍ଠରେ ସେ କହିଲା, 'ଦେଖନ୍ତୁ, ମୁଁ ଜଣେ ଡାକ୍ତର । ରୋଗିଣୀର ଚେତା ଫେରାଇ ଆଣିବା ହେଉଛି ମୋର ପ୍ରଥମ କର୍ତ୍ତବ୍ୟ । ଆପଣମାନେ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ନହେଲେ ଆଜି ରାତିଟା ଏଠି ରହିଯିବ, ସେଥିରେ କ୍ଷତି କଣ ? ସ୍ତ୍ରୀଙ୍କର ଯାହା ଅବସ୍ଥା ଦେଖୁଛି ସେଥିରେ ସହଜରେ ଚେତା ଫେରି ଆସିଲା ଭଲ ଲାଗୁନି ।'

'ନା, ନା, ନିଶ୍ଚେ ଫେରିଆସିବ । ମୁଁ ଆମର ଘରୋଇ ଡାକ୍ତରଙ୍କୁ ଡକାଇଁ ଆଣିବି । ଏ କଥା ଦେଖି ଦେଖି ଆମର ଏତେ ଅଭ୍ୟାସ ହୋଇଗଲାଣି ଯେ ଆମେ ଆଉ ବେଶି ଚିନ୍ତିତ ହେଉନା ।'—କହିଲା ରଞ୍ଜନ ।

ମୁହୂର୍ତ୍ତିକ ପାଇଁ ଗଭୀର ଚିନ୍ତାରେ ମଗ୍ନ ହୋଇଗଲା ସୁବ୍ରତ—କଣ କରିବାକୁ ହେବ ଏ କ୍ଷେତ୍ରରେ ?

'ଘୁଞ୍ଚିଯାଆନ୍ତୁ·· ଆମେ ଧରାଧରି କରି ରୋଗିଣୀକୁ ଟେକିକି ନେଇଯିବୁ ଭିତରକୁ ।'

ମୁଣ୍ଡ ହଲାଇ ହଠାତ୍ ସୁବ୍ରତ କହିଲା, 'ନା, ଆପଣ ନେଇପାରିବେନି ।'

'କଣ କହିଲେ ?'

'ଏ ଅବସ୍ଥାରେ ରୋଗିଣୀକୁ ଛାଡ଼ି ମୁଁ ଯାଇପାରିବିନି ।'

'ଆପଣଙ୍କର ଏ ଅନଧିକାରଚର୍ଚ୍ଚାର ପରିଣାମ କଣ ଜାଣିଛନ୍ତି ? ମୁଁ ହେଉଛି ଏ ଗାଁର ଜମିଦାର, ସୁକୁମାର ମହାନ୍ତି ମୋ ନାଁ । ଆପଣ କଣ ବୋଲି ଭାବିଛନ୍ତି ? ଆପଣଙ୍କର ଏ ଔଦ୍ଧତ୍ୟ, ଏ ଅଭଦ୍ରତା ପାଇଁ ମୁଁ action ନେଇପାରେ !'

'ନେଇପାରନ୍ତି, କିନ୍ତୁ ସୁକୁମାରବାବୁ ! ମୁଁ ଯଦି କହେ ଯେ ସିଂତା ସହିତ ଆଗରୁ ମୋର ପରିଚୟ ଅଛି ?' କଠୋର କଣ୍ଠରେ କଥାଗୁଡ଼ିକ କହି ସିଧା ସଳଖ ଭାବରେ ଚାହିଁଲା ସୁବ୍ରତ ଲୋକଟା ଆଡ଼କୁ ।

ତା କଥା ଶୁଣି ରଞ୍ଜନ ଓ ସୁକୁମାରବାବୁଙ୍କର ମୁହଁ ଦୁଇଟା ପାଂଶୁ ବର୍ଣ୍ଣ ଧାରଣ କଲା, ସେମାନେ ଯେପରି ଆକାଶରୁ ତଳକୁ ଖସିପଡ଼ିଛନ୍ତି !

‘କିଏ କହିଲେ ?’ ସୁକୁମାରବାବୁଙ୍କ କମ୍ପିତ କଣ୍ଠସ୍ୱର ଭୟାକୁଳ ।

ସୁବ୍ରତ କହିଲା ଆଉଥରେ, ‘ସ୍ତ୍ରୀ ତାକୁ ମୁଁ ଚିହ୍ନେ ।’

‘କିଏ ହୁଅନ୍ତି ସେ ଆପଣଙ୍କର ?’ ପଚାରିଲା ରଞ୍ଜନ । ସହଜରେ ଦବିଯିବାର ପାତ୍ର ନୁହେଁ ସେ । ତା ସ୍ୱରରେ ପ୍ରଚ୍ଛନ୍ନ ରହିଛି ବ୍ୟଙ୍ଗଭରା କୁତ୍ସିତ ଇଙ୍ଗିତ ।

ସ୍ତ୍ରୀ ତାର ମୂର୍ଚ୍ଛିତ ପାଣ୍ଡୁର ମୁହଁଟି ଆଡ଼କୁ ଚାହିଁଲା ସୁବ୍ରତ, ପରମସ୍ନେହରେ ସେହି ମୁହଁ ଉପରେ ପଡ଼ିଥିବା କେତୋଟି କେଶଗୁଚ୍ଛକୁ ଅପସାରଣ କରି ଦେଇ ଦେଇ ଅତି ଶାନ୍ତ କଣ୍ଠରେ ସେ କହିଲା, “ମୋ ସ୍ତ୍ରୀ ।”

ସୁକୁମାର ଓ ରଞ୍ଜନର କଣ୍ଠରୁ ଏକାସାଙ୍ଗେ ଗୋଟାଏ ଚିତ୍କାର ବାହାରି ଆସିଲା— ଏଁ !”

ସ୍ତ୍ରୀ ! ଶଇତାନୀ ସ୍ତ୍ରୀ ! ସେ ପୁଣି ବିବାହିତା ! ବିବାହିତାର କୌଣସି ଚିହ୍ନ ରଖିନଥିଲା ସେ—ଏତେ ଶଇତାନ୍ । ସୁକୁମାର ବାବୁଙ୍କର ଇଚ୍ଛା ହେଉଥିଲା ଦୌଡ଼ିଯାଇ ଘର ଭିତରୁ ନିଜର ବନ୍ଧୁକଟା ନେଇଆସି ଚୂନା କରିଦିଅନ୍ତେ ସୁବ୍ରତର ମୁଣ୍ଡଟାକୁ । ପ୍ରକୃତରେ ସୁବ୍ରତ ଯଦି ସେ କ୍ଷେତ୍ରରେ ଏକାକୀ ଥାଆନ୍ତା ତାକୁ ସେହି ମୁହୂର୍ତ୍ତରେ ହତ୍ୟା କରିଥାନ୍ତେ, ସେ ଆଉ ହତ୍ୟା କରିଥାନ୍ତେ ଏ ଶଇତାନୀଟାକୁ ମଧ୍ୟ ।

ହିଂସ୍ର କ୍ଷୁଧିତ ବ୍ୟାଘ୍ର ମୁହଁରୁ ତାର ଗ୍ରାସ କାଢ଼ି ନିଆଯାଇଛି—ଅବରୁଦ୍ଧ କ୍ରୋଧରେ ଥରୁଛି ସୁକୁମାରବାବୁଙ୍କର ସର୍ବାଙ୍ଗ । ଆଖି ଦୁଇଟିରୁ ଯେପରି ଉଦ୍‌ଗାରିତ ହେଉଛି ଦାବାଗ୍ନି ।

ସେହି ରୋଷକଷାୟିତ ଆଖିଦୁଇଟିକୁ ଚାହିଁ ପୂର୍ବ ପରି କଠୋର କଣ୍ଠରେ କହିଲା ସୁବ୍ରତ, ‘ହୁଏତ ଆପଣଙ୍କ କବଳରେ ପଡ଼ି ତାର ଏ ଉନ୍ମାଦ ଦଶା ଘଟିଛି । ଏହା ଯଦି ସତ ହୋଇଥାଏ, ତେବେ ଜାଣିରଖନ୍ତୁ ଉଚିତ ଶାସ୍ତି ଦେବାକୁ ଭୁଲିବିନି ମୁଁ । ଦରକାର ପଡ଼ିଲେ ଅଦାଲତରେ ନେଇ ଠିଆକରାଇବି ।’

ବାରୁଦ ଭଣ୍ଡାରରେ ନିଆଁ ଲାଗିଲା ଭଳି କ୍ରୋଧରେ ଫାଟିପଡ଼ି ଚିତ୍କାର କଲେ ସୁକୁମାର ବାବୁ, ‘ବାହାଦୁର...ମୋ ...’

ସେ ଯେ କଣ କହିବେ ଜାଣିପାରି ସାଙ୍ଗେ ସାଙ୍ଗେ ତାଙ୍କ ହାତ ଧରି ବାଧାଦେଲା ରଞ୍ଜନ । ତାଙ୍କ ମୁହଁରୁ କଥା ଛଡ଼ାଇ ନେଇ କହିଉଠିଲା, ‘ଆଜିକାଲି କାହାର ଉପକାର କରିବା ବି ଅପରାଧ, ସୁକୁମାର !’

ଏମାନଙ୍କ ସହିତ ଆଉ ଅଧିକ କଥାବାର୍ତ୍ତା କରିବାକୁ ଘୃଣାବୋଧ କଲା ସୁବ୍ରତ । ମୂର୍ଚ୍ଛିତାର ଶୁଶ୍ରୂଷାରେ ନିଜକୁ ନିୟୋଜିତ କଲା ସେ ।

'ସେ ଘର ଛାଡ଼ି ଆସିଥିଲେ, ମୁଁ ଆଶ୍ରୟ ଦେଇଥିଲି, ଏଇଥିପାଇଁ ଯଦି ଆପଣ ଅଦାଲତକୁ ଯିବା ଚାହାନ୍ତି, ତାହେଲେ ଆମେ ବି...' ନିଜକୁ ସମ୍ଭାଳି କହିଲେ ସୁକୁମାରବାବୁ ।

ସୁବ୍ରତ ମୁହଁରୁ ଅଦାଲତ୍‌ର କଥା ଶୁଣିଲାବେଳୁ ରଞ୍ଜନ ଜାଣିପାରିଥିଲା ସୁବ୍ରତ ଜଣେ ସାମାନ୍ୟ ଲୋକ ନୁହେଁ....ସେ ସହଜରେ ଚୁପ୍ ହୋଇ ରହିବ ନାହିଁ । ବୁଦ୍ଧିମାନ୍ ରଞ୍ଜନ ଜାଣିଲା ଯେ ଏହିପରି ଲୋକଠାରୁ ରଞ୍ଜନ ଚଞ୍ଚଳ ଆଡ଼େଇ ହୋଇଯିବା ଭଲ । ତେଣୁ ଏଥର ବି ତରତର ହୋଇ ପରମପ୍ରିୟ ବନ୍ଧୁର ହାତ ଧରି ଟାଣି ନେଇ ନେଇ ସୁବ୍ରତକୁ ଲକ୍ଷ୍ୟ କରି କହିଲା, 'ଆପଣ ଦୁହେଁ ଆଉଥରେ ମିଳିତ ହୋଇପାରିଛନ୍ତି, ଏଥିପାଇଁ ମୁଁ ଆନନ୍ଦିତ । ସ୍ମିତାଦେବୀ ଚଞ୍ଚଳ ଆରୋଗ୍ୟ ଲାଭ କରନ୍ତୁ, ଏହାହିଁ ମୋର କାମନା । ସୁକୁମାର ଚାଲ !'

ସୁବ୍ରତ କିଛି କହିବା ପୂର୍ବରୁ ରଞ୍ଜନ ଗୃହ ଅଭିମୁଖରେ ଅଗ୍ରସର ହେଲା ।

ଟେବୁଲ ଉପରେ ମହମବତିଟା ଜଳୁଥିଲା । ତାର ପ୍ରକମ୍ପିତ ଶିଖା ଆଡକୁ ନିସ୍ତବ୍ଧ ନେତ୍ରରେ ଚାହିଁ ରହିଥିଲା ସୁବ୍ରତ । ଭାବୁଥିଲା, ବାସ୍ତବ ଜୀବନ ବି ଥରେ ଥରେ ବିଚିତ୍ରତାରେ ଟପିଯାଏ ମନଗଢ଼ା କାହାଣୀକୁ । ଗତ ତିରିଶି ଘଣ୍ଟାର ଘଟଣାଗୁଡ଼ାକ ତା ଆଖି ଆଗରେ ଘଟିଯାଇଛି ରୁପେଲି ପର୍ଦ୍ଦାର ରହସ୍ୟାବୃତ ରୂପକଥା ପରି । ସତରେ ସେ ଏ ପର୍ଯ୍ୟନ୍ତ ବିଶ୍ୱାସ କରିପାରୁନି ।

ମୁହଁ ଫେରାଇ ଚାହିଁଲା ସେ ଶେଯ ଆଡ଼କୁ—ସ୍ମିତାର ଅଚେତ ଶରୀରଟା ସେହିପରି ପଡ଼ିରହିଛି ଗ୍ରେଟିଆ ଖଟିଆଟି ଉପରେ । ମହମବତୀର ସ୍ନିଗ୍ଧ ଆଲୁଅ ତଳେ ତ।ର ସେ ନିସ୍ତବ୍ଧ ଅଙ୍ଗଲତା ମନେପକାଇଦେଉଛି ରୂପକଥାର ନିଦ୍ରାରେ ଅଚେତନ ହୋଇ ରହିଥିବା ରାଜକନ୍ୟାର କଥା । ସେ ଦେଖିବା'ଠୁ ବହୁତ ଶୁଖିଯାଇଛି ସ୍ମିତା । ତେବେ ବି ବାଂଛୁହୋଇପଡ଼ିଥିବା କଳା ବାଳଗୁଡ଼ିକ ମଝିରେ ତା ମୁହଁଟି ଫୁଟନ୍ତା ପଦ୍ମର ସୌନ୍ଦର୍ଯ୍ୟ ବିକଶିତ କରିବାରେ ଟିକେ ହେଲା କରିନି । ଧଳା ବିଛଣାଟି ଉପରେ ଠିକ୍ ଯେପରି ଭଙ୍ଗୀରେ ତାକୁ ସେ ଶୁଆଇଦେଇଥିଲା ସେପରି ଭଙ୍ଗୀରେ ଶୋଇଛି ସେ ।

କିଏ ଜାଣେ ତାର ଏ ନିଦ୍ରା ଶେଷକୁ ମହାନିଦ୍ରାରେ ପରିଣତ ନ ହେବ ? ସୁବ୍ରତର ବକ୍ଷ ଭେଦକରି ବାହାରକୁ ବାହାରି ଆସିଲା ଦୀର୍ଘନିଃଶ୍ୱାସ....ଏହାହିଁ ହେଉଛି ନିୟତିର ନିର୍ଦ୍ଦେଶ । ମାସ ମାସ ଧରି ଯାହାକୁ ସେ ଖୋଜିଛି, ଦିନରାତି ଯାହା ସ୍ମୃତିର ତପସ୍ୟା କରିଛି, ଶେଷକୁ ଏପରି ଅବସ୍ଥାରେ, ଏହି ପରିସ୍ଥିତିରେ ଯେ ତାକୁ ଆଉଥରେ ଫେରିପାଇବ,

ଏକଥା କିଏ ଭାବିଥିଲା ? ପାରୁ ପର୍ଯ୍ୟନ୍ତ ଚେଷ୍ଟାକରି ମଧ୍ୟ ସେ ଫେରାଇ ଆଣିପାରିନି ତାର ଚେତନା । ସେହି ମୂର୍ଚ୍ଛିତ ଅବସ୍ଥାରେ, ଗାଡ଼ିଟା ଠିକ୍ ହେବାକ୍ଷଣି ତାଙ୍କୁ ନେଇ-ଆସିବାକୁ ପଡ଼ିଛି ଏଠାକୁ—ଏହି ଚନ୍ଦନପୁରକୁ, ଯେଉଁଠି ପଡ଼ିଥିଲା ତାର ଭ୍ରାମ୍ୟମାଣ ଡାକ୍ତରଖାନାର ଗ୍ରୁପ୍‌ଟି । ସୁବ୍ରତ ଜାଣିନଥିଲା ସ୍ମିତା ତାର ଆବେଦନ-ପତ୍ର ଯୋଗୁଁ ହିଁ ସରକାରଙ୍କ ସ୍ୱାସ୍ଥ୍ୟବିଭାଗ ପ୍ରାଥମିକ ସର୍ଭେ ପଦ୍ଧତି ଚଳାଇବା ପାଇଁ ଭ୍ରାମ୍ୟମାଣ ଡାକ୍ତରଖାନାର ଏହି ୟୁନିଟ୍‌ଟିକୁ ଏହି ଅବହେଳିତ ଅଞ୍ଚଳକୁ ପଠାଇଥିଲେ ।

ପ୍ରଶସ୍ତ ପ୍ରାନ୍ତର ଉପରେ ତମ୍ବୁ ଟଣାଯାଇଥିଲା । ତା ନିଜପାଇଁ ନିର୍ଦ୍ଦିଷ୍ଟ ହୋଇଥିବା କୋଠରୀ ଅର୍ଥାତ୍ ତମ୍ବୁ ଭିତରେ ବିଭାଗ କରାଯାଇଥିବା କକ୍ଷଟି ଭିତରେ ବସିଥିଲା ସୁବ୍ରତ । ବାହାରେ ନିସ୍ତବ୍ଧ ରାତିର ସ୍ତବ୍ଧତା ଭାଙ୍ଗୁଥିଲା ଝିଙ୍କାରୀର ଧ୍ୱନି । ଅନ୍ଧାର ରାତି ନୁହେଁ—ଶୁକ୍ଳପକ୍ଷ । ଆଶା ଆଉ ଆଶଙ୍କା ଭିତରେ ଏହି ଦୀର୍ଘ କେତୋଟି ଘଣ୍ଟାର ପ୍ରତିଟି ମୁହୂର୍ତ୍ତ କଟିଛି—ଯଦି ତାର ଉପସ୍ଥିତିକୁ ପାଇ ଆଉ ଥରେ ହରାଇବାକୁ ପଡ଼େ...ଯଦି ସ୍ମିତାର ଚେତା ଫେରି ନ ଆସେ ଆଉ ? ଓଃ....ସୁବ୍ରତ ଆଉ ଅଧିକ କିଛି ଭାବି-ପାରିଲା ନାହିଁ ।

ନିର୍ଦ୍ଦେଶିତ ସମୟ ଅନୁଯାୟୀ ଆଉ ଗୋଟିଏ ଇଞ୍ଜେକ୍‌ସନ୍ ଦେବାକୁ ପଡ଼ିଲା ସ୍ମିତାକୁ । ତମ୍ବୁର ପର୍ଦ୍ଦା ଦ୍ୱାରକୁ ଆଡ଼େଇଦେଇ ନର୍ସଟି ପଶି ଆସିଲା ଭିତରକୁ । ତାଙ୍କୁ ଆସିବାକୁ ଆଗରୁ କହିଥିଲା ସୁବ୍ରତ । ଗତକାଲିର ପଥଶ୍ରମ ପରେ ସାରାରାତି ସ୍ମିତାର ଶେଯପାଖରେ ଉଦ୍‌ବିଗ୍ନ ଉନ୍ନିଦ୍ର ଅବସ୍ଥାରେ କଟାଇଛି ସେ, ଆଖିର ପଲକ ପଡ଼ିନି ମୁହୂର୍ତ୍ତିକ ପାଇଁ । ଭୀଷଣ କ୍ଲାନ୍ତିରେ ପୂରିଯାଇଛି ଦେହ ଓ ମନ, ଆଜି ସାରାଦିନ କଟି-ଯାଇଛି; କିନ୍ତୁ ସ୍ମିତାର ଚେତନା ଫେରିଆସିନି । ବର୍ତ୍ତମାନ ଆଶାଠାରୁ ଆଶଙ୍କାର ପରିମାଣ ହିଁ ବେଶି, ଆଉ ଏହି ଆଶଙ୍କା ଯୋଗୁଁ ନିଜର ଶକ୍ତି ଉପରେ ଆଉ ବିଶ୍ୱାସ ରହୁ ନଥିଲା ତାର । କାଳେ କ୍ଲାନ୍ତିବଶତଃ ସେ ଯଦି ଶୋଇପଡ଼େ, ତାହେଲେ ସ୍ମିତାର ଶୁଶ୍ରୂଷାରେ ଅବହେଳା ହୋଇଯିବ ଭାବି ନିର୍ଦ୍ଦିଷ୍ଟ ସମୟରେ ଆସି ରୋଗିଣୀକୁ ଦେଖିଯିବାକୁ କହିଥିଲା ନର୍ସକୁ ।

ଇଞ୍ଜେକ୍‌ସନ୍ ସିରିଞ୍ଜଟିକୁ ଆଉଥରେ ଯଥାସ୍ଥାନରେ ରଖୁଥିଲା ସୁବ୍ରତ । ନର୍ସ ପଚାରିଲା, 'ସାର୍, ଆପଣ ଶୋଇନାହାନ୍ତି ତାହେଲେ ? ...ମିସେସ...' ସ୍ମିତା ଆଡ଼କୁ ଚାହିଁ କହିଲା ସେ, 'ମିସେସ୍ ମିଶ୍ରଙ୍କ ଅବସ୍ଥାର କଣ କୌଣସି ଇମ୍‌ପ୍ରୁଭ୍‌ମେଣ୍ଟ ଦେଖୁନାହାନ୍ତି ?'

ସ୍ମିତା ଉଦ୍ଦେଶ୍ୟରେ କହିଲାବେଳେ ତାର ମୁହଁରେ ଫୁଟି ଉଠିଥିବା ପ୍ରଚ୍ଛନ୍ନ ବିଦ୍ରୂପର ହସକୁ ସ୍ପଷ୍ଟ ଦେଖିପାରିଲା ସୁବ୍ରତ ।...ପରିସ୍ଥିତିଟା ବେଶ୍ ସରଗରମ୍ ଯେ ଏଥି ଭିତରେ ହୋଇଉଠିଛି, ଏ ଘଟଣାଟି ନେଇ ଏତକ ଜାଣିବାକୁ ବାକି ନଥିଲା ତାର । ଷ୍ଟାଫ୍‌ର

ସମସ୍ତଙ୍କ ମୁହଁରେ ପ୍ରଚ୍ଛନ୍ନ ହସ, ଆଖି ଆଖିର କଥାବାର୍ତ୍ତା ସବୁ ଲକ୍ଷ୍ୟ କରୁଛି ସେ । ତା ପଛରେ ଯେ କେତେ କଳ୍ପନା ଜଳ୍ପନା ଚାଲିଛି ସେଥିରେ ସୀମା ନାହିଁ । କିନ୍ତୁ ମୁହଁ ଫିଟାଇ କେହି ପଦେହେଲେ ପଚାରିବାକୁ ସାହସ କରିନାହାନ୍ତି, କାରଣ ସୁବ୍ରତର ପ୍ରକୃତି ସହିତ ବେଶ୍ ଭଲରୂପେ ପରିଚିତ ସେମାନେ । ସ୍ୱଳ୍ପଭାଷୀ କର୍ତ୍ତବ୍ୟପର ଯୁବକଟିକୁ ଯଥେଷ୍ଟ ଶ୍ରଦ୍ଧା କରୁଥିଲେ ମଧ୍ୟ ଯଥେଷ୍ଟ ଭୟ ସେମାନେ ବି କରନ୍ତି ।

କୌତୂହଳରେ ଫାଟିପଡୁଥିବା ସେମାନଙ୍କ ମୁହଁଗୁଡ଼ିକୁ ଦେଖି ସୁବ୍ରତ ଭାବୁଥିଲା— କେତେ ପ୍ରକାର ଅଦ୍ଭୁତ ରୁଚିକର, ଅରୁଚିକର କଥା ଯେ ଏମାନେ ଭାବୁଥିବେ ତା ବିଷୟରେ—ଆଉ ଭାବିବା ବି ସ୍ୱାଭାବିକ କଥା ।

ଏ ପର୍ଯ୍ୟନ୍ତ ସେ ଅବିବାହିତ ବୋଲି ହିଁ ପରିଚିତ । ତା ପରେ ବାଟ ମଝିରୁ ନିଜର ସ୍ତ୍ରୀ ବୋଲି ପରିଚୟ ଦେଇ ଜଣେ ମୂର୍ଚ୍ଛିତା ତରୁଣୀକୁ ଗୋଟାଇ ଆଣିବା, ପୁଣି ସେପରି ସ୍ଥାନ ଓ ପାତ୍ର ଗହଣରୁ, ଲୋକଙ୍କ ଅତି ଅସୁନ୍ଦର କାର୍ଯ୍ୟ ବୋଲି ମନେ ହୋଇଥିବ, ସେଥିରେ ସନ୍ଦେହ ନାହିଁ ।

କଥାଗୁଡ଼ାକ ମନକୁ ଆସିବାକ୍ଷଣି ଗୋଟାଏ ପ୍ରକାର ଅସ୍ୱସ୍ତି ଅନୁଭବ କଲା ସେ । ନର୍ସଟିର ସେହି ଦୃଷ୍ଟି ସମ୍ମୁଖରେ ଆଉ ଅଧିକ ସମୟ ରହିବାକୁ ସେପରି ଭଲ ଲାଗୁ ନଥିଲା ତାକୁ । ତେଣୁ ସେ କହିଲା, 'ଗଲ ମାନସୀ, ମୋ ପାଇଁ ଭଲ ଚା କପେ କରି ନେଇଆସିବ, ଷ୍ଟୋଭଟା ଜଳେଇଦିଅ, ଚଞ୍ଚଳ ହେଇଯିବ । ଦେହଟା ମୋର ଏବେ କ୍ଲାନ୍ତ ଲାଗୁଛି ।'

ମାନସୀ ଚାଲିଗଲା । ସିଂତାର ଯେଉଁ ବାହୁଟିରେ ସେ ଇଞ୍ଜେକ୍‌ସନ୍ ଦେଇଥିଲା, ସେ ବାହୁଟି ସେପରି ଉନ୍ମୁକ୍ତ ରହିଥିଲା ସେପର୍ଯ୍ୟନ୍ତ । ଚାଦରଟିକୁ ଟାଣିଆଣି ବାହୁଟିକୁ ଆଚ୍ଛାଦିତ କରିଦେଲା ପରେ ପୂର୍ବବର୍ଣ୍ଣିତ ଆରାମ ଚୌକିଟାରେ ଦେହଟାକୁ ଲୋଟାଇଦେଲା ସେ । କପାଳ ଉପରେ ଆସି ପଡ଼ିଥିବା ବାଳକେରାକ ମୁଣ୍ଡ ଉପରକୁ ବାଁ ହାତରେ ଟେକି ଦେଉ ଦେଉ ସେ ଭାବିଲା—ସିଂତାକୁ ନିଜର ସ୍ତ୍ରୀ ବୋଲି ପରିଚୟ ଦେଇ ସେ କଣ ଭୁଲ କରିଛି ? କାର୍ଯ୍ୟଟି ଯେତେ ଅଶୋଭନୀୟ ହେଲେ ମଧ୍ୟ ସେତେବେଳର ସେହି ପରିସ୍ଥିତିରେ ଆଉ କଣ କରିଥାନ୍ତା ? କେଉଁ ଅଧିକାରରେ ମୂର୍ଚ୍ଛିତାକୁ ନିଜ ନିକଟକୁ ଆଣିପାରିଥାନ୍ତା...କୁତ୍ସିତ ଲୋକଦୁଇଟା କବଳରୁ ମୁକ୍ତ କରିଥାନ୍ତା ?....ସିଂତା ଯେଉଁ ଅବସ୍ଥାରେ ଥିଲା ସେ ଅବସ୍ଥାର ଭୟଙ୍କରତା କଥା ଭାବି ସୁବ୍ରତର ଅନ୍ତରାତ୍ମା ଥରିଉଠିଲା ।...

ନା, ସେ ଠିକ୍ କରିଛି, ବୁଦ୍ଧିମାନ୍ ଭଳି କାର୍ଯ୍ୟ କରିଛି ।

ହାୟ, ହାୟ, ଏକାକିନୀ ଭାବରେ ଗୃହତ୍ୟାଗ କରି କି ମୂର୍ଖାମି ନ କଲା ସିଂତା.... ! ହଠାତ୍ ଚାବୁକ ପ୍ରହାରରେ ଆର୍ତ୍ତନାଦ କରିଉଠିଲା ପରି ମନଟା କହି ଉଠିଲା, 'ଅବସ୍ଥାର

ଗଢଚନ୍ଦରେ ପଡ଼ି ତାର ଗତି ଯେ କଣ ହୋଇଚ୍ଛ କିଏ ଜାଣେ ?' ଚରିତ୍ର ଯଦି ତାର କଳଙ୍କିତ ହୋଇଥାଏ, ତାକୁ ଯଦି ଓହ୍ଲାଇଯିବାକୁ ପଡ଼ିଥାଏ ଅତି ନିମ୍ନସ୍ତରକୁ.... ତାହେଲେ ? ହୁଏତ ବନ୍ଧମୀ ଭାବରେ ସେ ଘରେ ସେ ଲୋକଟାର ରକ୍ଷିତା ରୂପେ ଏତେଦିନ କଟାଇବାକୁ ପଡ଼ୁଚ୍ଛ ତାକୁ । ଲୋକ ଦୁଇଟାର କଥାବାର୍ତ୍ତାରୁ ଜଣାପଡ଼ୁଥିଲା ସେହିମାନଙ୍କ ଆଶ୍ରୟରେ ଥିଲା ସେ । ସେହିଭଳି ନୀଚ ମଦ୍ୟପଙ୍କ ଆଶ୍ରୟରେ ଯଦି ସେ ରହିଥିବ.... ତାହେଲେ ?

...ସେ ପାଗଳ ହୋଇଯାଇଚ୍ଛ ! ଏ ପରିସ୍ଥିତିରେ ପଡ଼ି ତା ଭଳି ଝିଅ ପକ୍ଷରେ ପାଗଳ ହୋଇଯିବା କିଛି ଆଶ୍ଚର୍ଯ୍ୟଜନକ ନୁହେଁ...'ଓଃ !' ସୁବ୍ରତ ଅସ୍ପଷ୍ଟ କଣ୍ଠରେ କହି ଉଠିଲା । ତା ମୁଣ୍ଡର ଶିରାଗୁଡ଼ାକ ଯେପରି ପ୍ରବଳ ଉତ୍ତେଜନାରେ ଦପ୍ ଦପ୍ ହୋଇଉଠିଲେ । ଗୋଟିଏ ସ୍ଥାନରେ ଆଉ ସ୍ଥିର ହୋଇ ବସିରହିନପାରି ସେ ଉଠିପଡ଼ି ପଦଚାରଣ କରିବାକୁ ଲାଗିଲା ସେ କ୍ଷୁଦ୍ର କକ୍ଷଟି ଭିତରେ ।

ନିଃଶବ୍ଦରେ ଆସି ମାନସୀ ଦେଇଗଲା ଗରମ କପ୍, ତାକୁ ଧନ୍ୟବାଦ ଦେବାକୁ ଭୁଲିଗଲା ସେ । ଅନ୍ୟମନସ୍କ ଭାବରେ ଧୂମାୟିତ ଗରମ କପ୍‌ଟିରେ ଓଠ ଲଗାଇଲା କ୍ଷଣି ଜିଭଟା ପୋଡ଼ିଗଲା ତାର—ବାସ୍ତବ ଜଗତକୁ ଫେରିଆସିଲା ସେ । ଚୌକିରେ ବସି ଧୀରେ ଧୀରେ ସେ ତାର ପାନୀୟଟକ ନିଃଶେଷ କଲା । ଦେହ ଓ ମନ ଅପେକ୍ଷାକୃତ ସୁସ୍ଥ ହେଲା ଯେପରି, ତେବେବି ବାସ୍ତବିକ ହେଲା ଭଲ ଲାଗୁଥିଲା ତାକୁ । ତମ୍ଭୁଟା ଭିତରେ ଆଉ ଅଧିକ ସମୟ ରହିପାରିବନି ଭାବି କପ୍ ନେବାକୁ ମାନସୀ ଫେରିଲାକ୍ଷଣି ତାକୁ ସିଂଡ଼ି ନିକଟରେ ଜଗିବାକୁ କହି ବାହାରକୁ ବାହାରିପଡ଼ିଲା ସୁବ୍ରତ ।

ବାହାରେ ପ୍ରକୃତି ଯେପରି ହସୁଚ୍ଛ । ସ୍ୱଚ୍ଛ ନୀଳ ଆକାଶରେ ଦଶମୀର ଚନ୍ଦ୍ର । ଚାରିଆଡ଼ ଭାସୁଚ୍ଛ ଜ୍ୟୋତ୍ସ୍ନାରେ । ପ୍ରକୃତିର ଏ ଅପରୂପ ସୁଷମା ଭିତରେ ନିଦରେ ଝିମେଇ ପଡ଼ୁଚ୍ଛ ଗାଁଟି, ମାଆର ସ୍ନେହମୟ କୋଳରେ ନିଦ୍ରିତ ଶିଶୁଟିଏ ପରି । ଶୂନ୍ୟ ବିଲଗୁଡ଼ିକ ଉପରେ ଜ୍ୟୋତ୍ସ୍ନା ଲହରୀ ଭାଙ୍ଗୁଚ୍ଛ । ପବନରେ କୁଆଡ଼ୁ ଭାସିଆସୁଚ୍ଛ ଫୁଲର ସୁମିଷ୍ଟ ବାସ୍ନା । ଗାଁର ଏକପ୍ରାନ୍ତରେ ଖାଲ ଜାଗାଟା ଉପରେ ଦେଖି ପଡ଼ୁଚ୍ଛ—କେତେ ଦୂରରେ ଆମ୍ବ ବଗିଚାଟିଏ । ନିଜର ଭାବନାରେ ବୁଡ଼ିରହି କେତେବେଳେ ଯେ ସୁବ୍ରତ ଯେ ଆମ୍ବ ବଗିଚାକୁ ପରିକ୍ରମ କରି ଚାଲିଆସିଲାଣି, ସେ କଥା ଖିଆଲ ହୋଇନି ତାର । ସାମନାରେ ବିରାଟ ପୁଷ୍କରିଣୀଟିଏ ଦେଖି ଗତି ତାର ବନ୍ଦ ହେଲା । ପରିଷ୍କାର ପରିଚ୍ଛନ୍ନ ପଥରବନ୍ଧା ଘାଟ ଉପରେ ବସି ଟିକିଏ ବିଶ୍ରାମ ନେବାକୁ ଚେଷ୍ଟା କଲା ସେ । ଚନ୍ଦ୍ରର ପ୍ରତିବିମ୍ବ ପ୍ରତିଫଳିତ ହୋଇଚ୍ଛ ପୁଷ୍କରିଣୀର ବିସ୍ତାରିତ ନିର୍ମଳ ବକ୍ଷରେ । ପବନର ଧକ୍‌କାରେ ପାଣିରେ ଖେଳିଯାଉଚ୍ଛ ଛୋଟ ଛୋଟ ଲହରୀ ଆଉ ଥରି ଯାଉଚ୍ଛ ପ୍ରତିବିମ୍ବଟି, ଗୋଟିଏ ଚନ୍ଦ୍ର ଯେପରି ଅସଂଖ୍ୟ ଚନ୍ଦ୍ରରେ ପରିଣତ ହୋଇଯାଉଚ୍ଛ ଥରକୁଥର । ମୁକ୍ତ ପବନ, ଉନ୍ମୁକ୍ତ ପ୍ରାନ୍ତର ମନରୁ ସବୁ ଗ୍ଲାନି ଓ

ଦୁର୍ଭାବନା ଦୂର କରିଦେବାକୁ ଚାହୁଁଥିଲେ ମଧ୍ୟ ପ୍ରକୃତ ଅନୁଭବ କଲା ଗୋଟାଏ ଗୁରୁ ଭାର ।

ଏହି ଉନ୍ମାଦନା, ପତିତା ସ୍ମିତାକୁ ସହଧର୍ମିଣୀର ସମ୍ମାନ ଦେବାକୁ କଣ ସେ କୁଣ୍ଠାବୋଧ କରୁଛି ? ନଚେତ୍ କାହିଁକି ସେ ଅସ୍ୱସ୍ତି ଅନୁଭବ କରୁଛି, ଅଗ୍ନିପରୀକ୍ଷାର ସମ୍ମୁଖୀନ ହେଲାଭଳି ବିଚଳିତ ହେଉଛି, ଗୋଟାଏ ଭୀଷଣ ସମସ୍ୟା ବୋଲି ଭାବୁଛି ? କାହିଁକି ତାର ଏ ଅସ୍ଥିରତା ?

ଦୁଇ ହାତ ଯୋଡ଼ି ସୁବ୍ରତ ଚକ୍ଷୁ ମୁଦ୍ରିତ କଲା, ପରମେଶ୍ୱରଙ୍କୁ ପ୍ରାର୍ଥନା କରି ସ୍ମିତାର ଆରୋଗ୍ୟ କାମନା କଲା । ଆଖି ଖୋଲିଲାକ୍ଷଣି ଦେଖିଲା ନୀଳାକାଶର ସେହି ଅନନ୍ତ ବିସ୍ତୃତି, ତଳେ ବିସ୍ତୃତ ହୋଇ ପଡ଼ିରହିଛି ଧରଣୀ ଓ ଆକାଶ ଓ ଧରଣୀର ମଧ୍ୟଭାଗରେ ପୂରି ରହିଛି ଯେଉଁ ଅନନ୍ତ ଶୂନ୍ୟତା, ପ୍ରକୃତରେ ସେ କଣ ଶୂନ୍ୟ ? ମନପ୍ରାଣରେ ସେ କଣ ଏ ମୁହୂର୍ତ୍ତରେ ଅନୁଭବ କରୁନି ସେହି ବିରାଟ ନିସ୍ତବ୍ଧତା ଆଉ ଶୂନ୍ୟତା ଭିତରେ ପରମ ପୁରୁଷଙ୍କର ସେହି ଆଦି ଅନ୍ତହୀନ ସତ୍ତା ? କି ଏକ ବିଚିତ୍ର ଶକ୍ତିର ସ୍ପର୍ଶରେ ରୋମାଞ୍ଚିତ ହୋଇଉଠିଲା ସୁବ୍ରତର ସାରା ଶରୀର । ମୁଗ୍ଧ ଚିତ୍ତରେ ସେ ବାରମ୍ବାର ପ୍ରଣାମ ଜଣାଇଲା ସେହି ଅଦୃଶ୍ୟ ବିରାଟ ପୁରୁଷଙ୍କ ଉଦ୍ଦେଶ୍ୟରେ ।

ଅନ୍ତରର ସମସ୍ତ ଗ୍ଳାନି ପୋଛି ହୋଇଯାଉଛି ନିମିଷକରେ । ଆଉଥରେ ସେହି ନିର୍ମଳତା, ନିର୍ଭୀକତା ଫେରିପାଇଛି ସେ । ତାର ପ୍ରିୟତମା ସ୍ମିତା ତାର ଧର୍ମପତ୍ନୀ । ଥରେ ଯେତେବେଳେ ସେ ତାକୁ ବରଣ କରିଛି, ଚିରଦିନ ପାଇଁ ସେ ତାର । ପତିତା ହେଉ ବା ପରିତ୍ୟକ୍ତା ହେଉ, ଯାହାହେଉନା କାହିଁକି ତାର ସେ । ପତିତ ପୁଅକୁ ପିତାମାତା ତ୍ୟାଗ କରିପାରନ୍ତି ନାହିଁ । ସ୍ୱାମୀ ଯାହାହେଲେ ବି ସେ ସ୍ତ୍ରୀର ଆରାଧ୍ୟ ଦେବତା ହୋଇ ହିଁ ରହେ । ସେହିପରି ତାର ପ୍ରିୟତମା ଚିରଦିନ ତାର ଅନ୍ତରର ପ୍ରିୟତମା ହୋଇ ହିଁ ରହିବ । ସାରାଜଗତର ଭ୍ରୂକୁଟିକୁ ଉପେକ୍ଷା କରି ସସମ୍ମାନରେ ତାକୁ ଧର୍ମପତ୍ନୀର ଗୌରବ ଦେବ ସେ । ଯଦି ସ୍ମିତା ପାଗଳୀହୋଇଥାଏ ତେବେ ଶେଷ ପର୍ଯ୍ୟନ୍ତ ତାକୁ ସେବା କରିବାର ଦାୟିତ୍ୱ ସେ ନେବ । ତାର ଶୁଶ୍ରୂଷା କରିବ ଆଜୀବନ ନିଜର ସେବା, ଆଦର, ଯତ୍ନ ଢାଳି ।

ପରକ୍ଷଣରେ ସୁବ୍ରତର ମନେହେଲା—ସ୍ମିତା ଯେ ବଞ୍ଚି ଉଠିବ, ସେଥିର ସ୍ଥିରତା କଣ ଅଛି ? ସହକର୍ମୀ ଡାକ୍ତରଟି ସହିତ ପରାମର୍ଶକରି ଏଇମାତ୍ର ଠିକ କରିସାରିଛି ଯେ ଯଦି ଆଜି ରାତି ଭିତରେ ଚେତନା ନ ଫେରେ ତାହେଲେ କାଲି ସକାଳୁ ତାକୁ ବାଲେଶ୍ୱରକୁ ନେଇଯିବାକୁ ପଡ଼ିବ । ଚିକିତ୍ସାର ସମସ୍ତ ସୁବିଧା ମିଳିପାରିବ ବାଲେଶ୍ୱରରେ; କିନ୍ତୁ ତେବେ ବି ତାର ବଞ୍ଚିବାର ନିଶ୍ଚିତତା କଣ ଅଛି ? ....ସତରେ ଯଦି ସ୍ମିତା ଆଉ ଆଖି ନଫିଟାଏ, ତାର ହୃତଜ୍ଞାନ ଆଉ ଫେରି ନ ଆସେ.... ??···ତା ହେଲେ ସୁବ୍ରତ

ବଞ୍ଚିପାରିବନି....ନା, ବଞ୍ଚିପାରିବନି । ନା, ନା, ଭଗବାନ ଏତେ ନିଷ୍ଠୁର ହୋଇପାରିବେ ନାହିଁ, କେବେ ନୁହେଁ !

ଓଃ ! ଅନେକ ବେଳ ହେଲା ଯେ ସ୍ମିତାକୁ ସେ ଛାଡ଼ି ଆସିଛି...ମନେହେଲାକ୍ଷଣି ହଠାତ୍ ଉଠିପଡ଼ି ଦ୍ରୁତ ପଦକ୍ଷେପରେ ଫେରିଲା ସେ । ତାର ସେ ହଠାତ୍ ଉଠିପଡ଼ିବା ଭଙ୍ଗୀରେ ଚମକିପଡ଼ି ବିଲୁଆଟାଏ ଦୌଡ଼ି ପଳାଇଲା ତା ଆଗ ଦେଇ ।

ତମ୍ବୁ ଭିତରକୁ ଫେରିଲାପରେ ସେ ଦେଖିଲା, ଶେଷ ଇଞ୍ଜେକ୍‌ସନ୍‌ଟି ଦେଉଛି ମାନସୀ । ତାହେଲେ ବହୁତ ଡେ଼ରି ହୋଇଯାଇଛି ତାର । ମନେ ମନେ ଟିକିଏ ଲଜ୍ଜା ଅନୁଭବ କରି ମାନସୀକୁ ବିଶ୍ରାମ ନେବାକୁ ଅନୁରୋଧ ଜଣାଇଲା ସେ । ମାନସୀ ଚାଲିଗଲା ପରେ ସ୍ମିତାର ଶେଯ ପାଖରେ ଆସି ଠିଆହେଲା ସୁବ୍ରତ । ପବନରେ ଉଡ଼ି ସ୍ମିତାର ମୁହଁ ଉପରେ, ଆଖି ଉପରେ ଆସି ପଡ଼ିଛି କେତେଗୁଚ୍ଛ ଭ୍ରମରକୃଷ୍ଣ ଚୂର୍ଣ୍ଣ କୁନ୍ତଳ । ଯଥାସ୍ଥାନରେ ସେଗୁଡ଼ିକ ସଜାଡ଼ି ରଖି ଟେବୁଲ ଉପରୁ ଷ୍ଟେଥେସ୍କୋପ୍‌ଟା ଉଠାଇ ଆଣି ରୋଗିଣୀର ହୃଦ୍‌ଯନ୍ତ୍ରର କ୍ରିୟା ପରୀକ୍ଷା କଲା ସେ । ହୃଦରଟିକୁ ଆଡେଇ ସ୍ମିତାର ହାତଟି ଉଠାଇ ଆଣିଲା ନିଜ ହାତଭିତରକୁ ନାଡ଼ୀର ସ୍ପନ୍ଦନ ପରୀକ୍ଷା କରିବା ପାଇଁ, ଆଉ ଠିକ୍ ଏ ସମୟରେ ସ୍ମିତାର ଅଚେତନ ଦେହଟା ଭିତରେ ଯେପରି ଚେତନାର କ୍ଷୀଣ ଲକ୍ଷଣ ପ୍ରକାଶିତହେଲା ।

ବିବର୍ଣ୍ଣ ଓଠ ଦୁଇଟା ଥରୁଛି ଧୀରେ ଧୀରେ, ବନ୍ଦ ଆଖିପତା ଦୁଇଟି ମଧ୍ୟ । ଚେତନା ଫେରିଆସୁଛି । ଆନନ୍ଦରେ ଚିତ୍କାର କରିବାକୁ ଇଚ୍ଛାହେଲା ସୁବ୍ରତର । କମ୍ପିତ ହୃଦୟରେ ଉଦ୍‌ଗ୍ରୀବ ନୟନରେ ସେ ଚାହିଁ ରହିଲା ତାର ମାନସ ପ୍ରତିମାର ମୁହଁଟି ଆଡକୁ ।

ଆଖି ଖୋଲିଲା ସ୍ମିତ । ସେ ତାର ଶୁଖିଲା ଓଠ ଉପରେ ଜିଭ ବୁଲାଇବା ଦେଖି ସୁବ୍ରତ ପାଣି ଆଣି ଚାମଚରେ ସିକ୍ତ କଲା ତାର ଶୁଖିଲାଓଠକୁ । ଖଟବାଡ଼ ଉପରେ ଚଉତା ହୋଇ ରଖାଯାଇଥିବା ତଉଲିଆଟା ଓଦା କରି ମୁହଁଟାକୁ ଯତ୍ନକରି ପୋଛିଦେଲା । ...ପ୍ରତିଟି ମୁହୂର୍ତ୍ତ କଟୁଛି ଆଶା ଆଉ ଆଶଙ୍କାର ମିଳିତ କଳରବ ଭିତର ଦେଇ । ତା ନିଜ ହୃଦ୍‌ଯନ୍ତ୍ରର କ୍ରିୟା ବଢିଯାଇଛି ଅସମ୍ଭବ ରକମର ଦ୍ରୁତଗତିରେ—ମସ୍ତିଷ୍କ ବିକୃତ ଯଦି ଘଟିଥାଏ, ତେବେ ତାକୁ ଚିହ୍ନି ନପାରିବାଟା ହିଁ ସ୍ୱାଭାବିକ । ହୁଏତ ଦେହରେ ଟିକିଏ ଜୋର୍ ପାଇଲା କ୍ଷଣି ସେ ଦୌଡ଼ି ପଳେଇବାକୁ ଚାହିଁବ !

ଶଙ୍କିତ ଚିତ୍ତରେ ସ୍ମିତା ଆଡ଼କୁ ଦୃଷ୍ଟି ଫେରାଇବା କ୍ଷଣି ସେ ଦେଖିଲା—ଏକଲୟରେ ତା ମୁହଁକୁ ଚାହିଁରହିଛି ସେ । ଆଉ ଟିକିଏ ପାଖକୁ ଘୁଞ୍ଚିଆସି ସୁବ୍ରତ ବ୍ୟାକୁଳ କଣ୍ଠରେ ଡାକିଲା, ସ୍ମି... ତା, ମୁଁ ସୁବ୍ରତ, ମତେ ଚିହ୍ନିପାରୁଛ ତ ?'

ତା କଥା ଶୁଣି ଆଖି ଦୁଇଟା ଭୟରେ ଯେପରି ବନ୍ଦ କରିଦେଲା ସ୍ମିତା । ତମ୍ବୁ ଭିତରର ସେହି କ୍ଷୁଦ୍ର ପରିବେଶ ଭିତରେ, ମହମବତୀର ରହସ୍ୟମୟ ଆଲୋକ ତଳେ ସ୍ମିତାର ମନେହେଲା ସେ ସ୍ୱପ୍ନ ଦେଖୁଛି ।

ସ୍ମିତାକୁ ଆଉଥରେ ଆଖିଦୁଇଟା ବୁଜିଦେବା ଦେଖି ସୁବ୍ରତର ଭୟହେଲା. ସେ ବୋଧହୁଏ ପୁଣି ମୂର୍ଚ୍ଛିତା ହୋଇଯାଇଛି । ହାତଟାକୁ ଧରି ଜୋର୍‌ରେ ହଲାଇଦେଇ ସେ ଡାକିଲା, "ଆଖି ଖୋଲ ସ୍ମିତା....ଚାହଁ... ଦେଖ ।"

ଆଉ ଧ୍ୟାନମଗ୍ନ ହୋଇ ରହିବାର ଉପାୟ ନାହିଁ, ତେବେବେଳେ ଆଖି ବୁଜି ସେ ମନେପକାଇବାକୁ ଚେଷ୍ଟା କଲା—କଣ ହୋଇଥିଲା ତାର ? ସୁବ୍ରତ କିପରି ଆସିଲା ? ନିହାତି ଅସମ୍ଭବ ଯାହା, ତାହା ସମ୍ଭବ ହେଲା କିପରି ?

"ସ୍ମିତା, ସ୍ମିତା .. ଆଖି ଖୋଲ....ଚାହଁ"

ଆଉ ଥରେ ଶୁଣିଲା ସୁବ୍ରତର ବ୍ୟାକୁଳ କଣ୍ଠସ୍ୱର—ଆଉ ଥରେ ଅନୁଭବ କଲା ନିଜ ହାତ ଉପରେ ତାର ସ୍ପର୍ଶ । ପରିଷ୍କାର କଣ୍ଠସ୍ୱର ସୁବ୍ରତର । ସ୍ୱପ୍ନ ନୁହେଁ, ବିଭ୍ରମ ନୁହେଁ, ଅବିଶ୍ୱାସ୍ୟ ହେଲେ ବି ଏକାବେଳେ ସତ୍ୟ । ଆଖି ବନ୍ଦ କରି ରହିବାର ଉପାୟ ନାହିଁ, ଆବଶ୍ୟକତା ବି ନାହିଁ । ଆଖି ଖୋଲିଲାକ୍ଷଣି ମୁହଁଟାକୁ ତଳକୁ ନୁଆଁଇଦେଇ ସୁବ୍ରତ ପୂର୍ବପରି ବ୍ୟାକୁଳ ଭାବରେ ପ୍ରଶ୍ନ କଲା, "ମତେ ଚିହ୍ନିପାରୁଛ ତ ସ୍ମିତା ? ମୁଁ ସୁବ୍ରତ.... ଚିହ୍ନିପାରୁଛ ତ ?"

ସୁବ୍ରତର ପଚାରିବାର ସେହି ବ୍ୟାକୁଳ ଭଙ୍ଗୀ ଦେଖି ଆପେ ଆପେ କ୍ଷୀଣ ଏକ ହସ ଫୁଟି ଉଠିଲା ସ୍ମିତାର ମୁହଁରେ । ଆଶ୍ଚର୍ଯ୍ୟ ହୋଇ ଧୀରେ ଧୀରେ ସେ ପଚାରିଲା, "ଚିହ୍ନିପାରିବିନି କାହିଁକି ?"

ତେବେବେଳେ ସଂଶୟ ଗଲାନାହିଁ ସୁବ୍ରତର ମନରୁ । ପୁଣି ପଚାରିଲା, "ମୁଁ କିଏ କହିଲ....?"

ଏଥର କ୍ଲାନ୍ତଭାବରେ ପରିଷ୍କାର ହସି ସ୍ମିତା କହିଲା, "ମୁଁ ଠିକ୍ ଚିହ୍ନିଛି ...!" ତାର ସେ ସ୍ୱାଭାବିକ କଥାବାର୍ତ୍ତା, ସ୍ୱାଭାବିକ ହସ ଓ ଚାହାଣୀ ଦେଖିଲା ପରେ ସୁବ୍ରତର ଛାତି ଉପରୁ ଯେପରି ପଥରର ବୋଝ ଓହ୍ଲାଇଗଲା । ଯାହା'ହେଉ ଭଗବାନ୍ ରକ୍ଷା କରିଦେଇଛନ୍ତି —ମନେ ମନେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ କୃତଜ୍ଞତା ଜଣାଇଲା ସେ । ସ୍ମିତାକୁ କହିଲା— "ତମର ଟିକିଏ କଣ ଖାଇବା ନିହାତି ଦରକାର । ଗରମ ଦୁଧ କିଛି ନେଇ ଆସୁଛି, ଉଠିବାକୁ ଚେଷ୍ଟା କରିବନି ।"

ବିସ୍ମିତା ସ୍ମିତା ପ୍ରଶ୍ନକଲା, "କାହିଁକି ମୋର କଣ ହୋଇଛି....?" ପୂର୍ବ କଥା ମନେ ପକାଇବାକୁ ଚେଷ୍ଟା କଲା ସେ; କିନ୍ତୁ ରୋଗିଣୀର ଏ ଅବସ୍ଥାରେ ମନରେ ଚାପ ପଡ଼ିବାକ୍ଷଣି ଆଉ ଥରେ ସଂଜ୍ଞା ଲୋପ ପାଇଯିବାର ସମ୍ଭାବନା ଥିବାରୁ ତାକୁ ସହଜ ଅବସ୍ଥାକୁ ନେଇ

ଅସିବାକୁ ଚିକଏ ହସି କହିଲା ସୁବ୍ରତ, "ହଇ ଆଉ କଣ, କିଛି ହୋଇନି...ତମର ତ ଏ ମୂର୍ଚ୍ଛା ହେବା ରୋଗ ଦଖିବାରୁ ଅଛି ସ୍ମିତା !"

"ଓଃ, ମୁଁ ତାହେଲେ ମୂର୍ଚ୍ଛା ହୋଇଯାଇଥିଲି ?"

"ହଁ, ଆଉ ଭଗବାନ୍ ମତେ ଠିକ୍ ସମୟରେ ତମ ନିକଟରେ ପହଞ୍ଚାଇଦେଇଥିଲେ ।"

ବିଦ୍ୟୁତ୍‌ବେଗରେ ଗ୍ରସ୍ଥାଛବି ପରି ବିଗତ ଘଟଣାଗୁଡିକ ଭାସି ଉଠିଲା ସ୍ମିତାର ଆଖି ଆଗରେ । ସେହି ବନ୍ଧିକା କଥା ମନେପଡିଲା କ୍ଷଣି ଭୟରେ ଥରିଯାଇ ଅସ୍ଫୁଟ କଣ୍ଠରେ ଚିତ୍କାର କଲା ସେ, "ଓଃ" ! ଆଉ ସାଙ୍ଗେ ସାଙ୍ଗେ ନିଜର ଦୁର୍ବଳ ହାତଟାରେ ଚିପିଧରିଲା ସୁବ୍ରତର ହାତ । ପାଗଳ ଭଳି କହି ଉଠିଲା, "ସତରେ ତମେ ମୋ ପାଖରେ ଅଛ ? ମତେ ଛାଡ଼ି ଯାଅନି, ତମେ ମତେ ଛାଡ଼ି ଯାଅନି...ମରିଯିବି ମୁଁ...ମୁଁ ଆତ୍ମହତ୍ୟା କରିବି ....ମୁଁ ମରିବି...ସେ ଲୋକଗୁଡ଼ାକ...ଓଃ ସେ ଲୋକଗୁଡ଼ାକ...." ପରମୁହୂର୍ତ୍ତରେ ସୁବ୍ରତ ବାଧା ଦେଉ ଦେଉ ଉଠିପଡ଼ି ଉନ୍ମାଦ ଆବେଗରେ ନିଜର ଦୁର୍ବଳ ବାହୁ ଦୁଇଟିରେ କୁଣ୍ଢାଇଧରିଲା ସୁବ୍ରତକୁ, ଭୟଭୀତ ଶିଶୁପରି ମୁହଁ ଲୁଚାଇଦେଲା ତା ବକ୍ଷରେ । ତାର ସାରା ଶରୀର ଥର ଥର ହୋଇ ଥରେଇବାକୁ ଲାଗିଲା ।

"ଭଗବାନଙ୍କ ରୁଣ ସ୍ମିତା, ଏ ଭଳି ଅସ୍ଥିର ହୁଅନି । ଆଉ ଭୟ କରିବାର କୌଣସି କାରଣ ନାହିଁ । ସେ ଗାଁ ରହିଲାଣି ବହୁତ ଦୂରରେ, ତୁମେ ମୋ ପାଖରେ ମୋ ଡାକ୍ତରଖାନାରେ ଅଛ, ଗାଡ଼ିରେ ତୁମକୁ ନେଇଆସିଛି— ଆଉ ଭୟ କଣ ?" ତା ମଥା ଉପରେ ହାତ ରଖି କହିଲା ସୁବ୍ରତ । କିନ୍ତୁ ସେହିପରି ସୁବ୍ରତର ଛାତିରେ ମୁହଁ ଲୁଚାଇ ସ୍ମିତା କହିଲା, "ମୁଁ ବିଶ୍ୱାସ କରିପାରୁନି....କିଛି ବିଶ୍ୱାସ କରିପାରୁନି....ଓଃ ! ମୋ ମୁଣ୍ଡ କଣ ହୋଇଯାଉଛି....ମୁଁ..."

"ସ୍ମିତା, ସ୍ମିତା...ସ୍ଥିର ହୁଅ । କେତେ ଚେଷ୍ଟାକରି କି କଷ୍ଟରେ ଯେ ତମର ଚେତା ଫେରିଆସିଛି ଭଗବାନ ଜାଣନ୍ତି । ଆଉ ଥରେ ଯଦି ଏ ଚେତା ହଜିଯାଏ ତାହେଲେ...ତାହେଲେ ହୁଏତ ତୁମକୁ ମୁଁ ଆଉ ଫେରିପାଇବିନି ।" ଆଉ କିଛି କହିପାରିଲାନି ସୁବ୍ରତ, ବାଷ୍ପରୁଦ୍ଧ ହୋଇଗଲା ତା କଣ୍ଠ । ଦିନ ଦିନ, ମାସ ମାସ ଧରି ଅବରୁଦ୍ଧ ପୁଞ୍ଜୀଭୂତ ବେଦନା ଓ ଅଭିମାନ ଯେପରି ଆଉ ବାଧା ମାନିଲାନାହିଁ । ତାର ସେ ପୁରୁଷ ଚକ୍ଷୁରୁ ଝରିପଡ଼ିବାକୁ ଲାଗିଲା ଅଶ୍ରୁର ଅସରନ୍ତି ଧାରା । ପ୍ରିୟତମାକୁ ନିବିଡ଼ଭାବରେ ନିଜର ଆଲିଙ୍ଗନରେ ଆବଦ୍ଧ କରି ତାର ମଥା ଉପରେ ନିଜର ଅଶ୍ରୁବିଧୌତ ମୁହଁଟିକୁ ଥାପି ସେ କାନ୍ଦିବାକୁ ଲାଗିଲା ଉଚ୍ଛ୍ୱସିତ ଆବେଗରେ ।

ତାର ସେ କନ୍ଦନ ସ୍ମିତାର ସମସ୍ତ ଅନୁଭୂତିକୁ ଯେପରି ସ୍ତବ୍ଧ କରିଦେଲା ଏକମୁହୂର୍ତ୍ତରେ । ପଦ୍ମ ଫୁଲ, ବିସ୍ମୟ ବିସ୍ଫାରିତ ନୟନରେ କେତେ କ୍ଷଣ ସେ ଚାହିଁରହିଲା ସୁବ୍ରତର ଅଶ୍ରୁସିକ୍ତ ମୁହଁକୁ । ନିଜର ଦୁର୍ବଳ ହାତରେ ତା ଆଖିର ଲୁହ ପୋଛିଦେବାକୁ ଚେଷ୍ଟାକରି ଅସ୍ଫୁଟ କଣ୍ଠରେ ଧୀରେ ଧୀରେ ପଚାରିଲା, ‘ତୁମେ କାନ୍ଦୁଛ ? ମୋ ଅବସ୍ଥା କଣ ଏତେ ବେଶି ଖରାପ ?’’

‘‘ନା ନା—ତା ନୁହେଁ । କିନ୍ତୁ ଲୋକେ କଣ ଖାଲି ଦୁଃଖରେ କାନ୍ଦନ୍ତି ସ୍ମିତା ? ଆନନ୍ଦରେ କାନ୍ଦନ୍ତି ନାହିଁ ?’’

‘‘ଆନନ୍ଦରେ କାନ୍ଦନ୍ତି ?’’

‘‘ନିଶ୍ଚୟ । ତମକୁ ଆଜି ଥରେ ଫେରିପାଇଛି, ମୋର ଏ ଜୀବନରେ ସେଇ ତ ଶ୍ରେଷ୍ଠ ଆନନ୍ଦ ··’’ ଆଖି ପୋଛୁ ପୋଛୁ ହସିବାକୁ ଚେଷ୍ଟାକରି ଉତ୍ତର ଦେଲା ସୁବ୍ରତ । ପୁଣି କହିଲା, ‘ତୁମେ ସୁସ୍ଥ ହୋଇଉଠିବ. ମୋର ସ୍ୱପ୍ନ ସାର୍ଥକ ହେବ, ତୁମକୁ ବିବାହ କରି ମୁଁ ନିଜର ନୀଡ଼ ରଚନା କରିବି ।’

କ୍ଲାନ୍ତଭାବରେ ନିଜର ମଥାଟିକୁ ସୁବ୍ରତର କାନ୍ଧରେ ରଖି ପ୍ରତିପରି ଏଥର ବି ସ୍ମିତା ଅସ୍ପଷ୍ଟ ଭାବରେ କହିଲା, ‘ଏବେ ବି ମୋର ମନେହେଉଛି—ମୁଁ ସ୍ୱପ୍ନ ଦେଖୁଛି ।’

‘କାଲି ବାପାଙ୍କ ପାଖକୁ ଚିଠି ଲେଖିଦେବି ।’

ଚମକିପଡି ଶଙ୍କିତ ଦୃଷ୍ଟିରେ ଚାହିଁଲା ସ୍ମିତା । କହିଲା, ‘ନା ନା, ମୁଁ ଆଉ ବାପାଙ୍କୁ ମୋର ଏ ମୁହଁ ଦେଖାଇପାରିବିନି ।’

‘ବାପା ଆଉ ସତୀ ନ ଆସିଲେ ଆମ ବାହାଘରର ଆୟୋଜନ କରିବ କିଏ ?’

‘ବିଧବା-ବିବାହ ଏକ ମହାପାପ ।’

‘କିନ୍ତୁ ମୋ ଦୃଷ୍ଟିରେ ସେ ହେଉଛି ଏକ ମହାପୁଣ୍ୟ !!’

‘ତମର ଏ ମହାନତା ପାଖରେ ମୁଁ କେତେ ତୁଚ୍ଛ....’ ଆର୍ତ୍ତକଣ୍ଠରେ କହିଲା ସ୍ମିତା, ‘କିନ୍ତୁ ପାପକୁ ପୁଣ୍ୟ ବୋଲି କହିବା ଶକ୍ତି ମୋର ନାହିଁ । ମୁଁ ଦୁର୍ବଳ, ମୁଁ ଭୀରୁ, ପାପକୁ ସର୍ବାନ୍ତଃକରଣରେ ଭୟକରେ...’ଆଖିରୁ ଲୁହ ଝରିଲା ତାର ।

ତାର ଅଶ୍ରୁସିକ୍ତ ମୁହଁଟିକୁ ଟେକିଧରି ବ୍ୟଥିତ କଣ୍ଠରେ ସୁବ୍ରତ କହିଲା, ‘ସମାଜର କୁସଂସ୍କାର ତମ ମନରେ ଗୋଟାଏ ଭୁଲ ଧାରଣା ସୃଷ୍ଟି କରିଛି ସ୍ମିତା । ତମର ସମସ୍ତ ଭୟ ଓ ଦୁର୍ଭାବନାର ଭାର ତମେ ମୋ ଉପରେ ଛାଡ଼ିଦିଅ । ଚାହିଁଲ ଥରେ ମୋ ମୁହଁକୁ, ଚାହଁ, ଚାହିଁଦେଖ ।’

ପଲ୍ଲବିତ ପରି ସ୍ମିତା ଚାହିଁଲା—ଦର୍ପଣମୁଖର ପରିପରି ସୁବ୍ରତର ସେହି କୃଷ୍ଣ ସଜଳ ଚକ୍ଷୁତାରକା ଦୁଇଟିରେ ସେ ଦେଖିପାରିଲା ନିଜ ହୃଦୟର ପ୍ରତିବିମ୍ବକୁ, ବେଦନାର ଆର୍ତ୍ତିତାକୁ ଓ ପାଇବାର ବ୍ୟାକୁଳତାକୁ । ଆଉ ଦେଖିଲା ଚିରନ୍ତନ ଜ୍ୟୋତି-

ମଣ୍ଡଳ ଭିତରେ ଶାଶ୍ୱତ ଶିଖାପରି ବିରାଜମାନ ରହି ପ୍ରେମ ତାର ସ୍ନିଗ୍ଧ ଆଲୋକ ବିକୀରଣ କରୁଛି । ଏହି ନିଃସ୍ୱାର୍ଥ ପ୍ରାଣଢାଳା ପ୍ରେମ ହିଁ ତ ହେଉଛି ଏ ସୃଷ୍ଟିର ଚିରନ୍ତନ ସତ୍ୟ, ଚିରନ୍ତନ ପୁଣ୍ୟ ! ସ୍ମିତାର ସାଧ୍ୟ କାହିଁ ଏହାକୁ ଅସ୍ୱୀକାର କରିବ ?

ଅଶ୍ରୁ ସହିତ ଘଟିଛି ଅଶ୍ରୁର ମିଳନ, ବେଦନା ସହିତ ବେଦନାର, ହୃଦୟ ସହିତ ହୃଦୟର । ବିମୁଗ୍ଧ ଆଉ ବ୍ୟଥିତ ନେତ୍ରରେ ଚାହିଁରହିଥିଲା ସୁବ୍ରତ ମହାବିଷ୍ଟପରି । ତାର ମନେହେଉଥିଲା—ଯେପରି ଯୁଗ ଯୁଗ ଧରି ତାର ପ୍ରିୟତମାର ସେହି ଅଶ୍ରୁ ଭାରାକ୍ରାନ୍ତ ଚକ୍ଷୁପଲ୍ଲବ ନେତ୍ର ଦୁଇଟିର ସ୍ନିଗ୍ଧ ଦୃଷ୍ଟି ଉପରେ ନିଜର ଦୃଷ୍ଟି ସ୍ଥାପନକରି ଠିକ୍ ଏହିପରି ସେ ବସିରହିଆସିଛି !

ନିଃଶବ୍ଦ ରାତ୍ରିର ନିସ୍ତବ୍ଧତାକୁ ଭାଙ୍ଗିବାର ବୃଥାପ୍ରୟାସ କରୁ କରୁ ଘଣ୍ଟାଟିର ନିୟମିତ, ଛନ୍ଦାୟିତ ଧ୍ୱନି ଗଡ଼ି ଚାଲିଥିଲା ଅବିରାମ ଗତିରେ । ଥରି ଥରି ଜଳୁଥିଲା ଆଲୋକର ସୁସ୍ନିଗ୍ଧ ଶିଖା—ନବବଧୂର ବ୍ରୀଡ଼ାବନତ, ନୂତନ ପ୍ରେମର ଆଲୋକରେ ଦୀପ୍ତିମନ୍ତ ଭୀରୁ ହୃଦୟ ପରି । ସେହି ଗ୍ରେଟ ଝରକାଟିର ଫାଙ୍କ ଦେଇ ଶେଯ ଉପରେ ଆସି ପଡ଼ିଛି ଝଲକାଏ ଜ୍ୟୋତ୍ସ୍ନାଲୋକ । ଦଶମୀର ଚନ୍ଦ୍ର ଯେପରି ମନର କୌତୂହଳକୁ ଦମନ କରି ନପାରି ମୁହଁ ବଢ଼ାଇ ଦେଖୁଛି ଅତି ସତର୍କ ଭାବରେ । ନିଜର ଦୁର୍ବଳ କମ୍ପିତ ହାତଟିକୁ ତୋଳି ସୁବ୍ରତର ହାତ ଭିତରେ ରଖିଲା ସ୍ମିତା; ତା ଜୀବନର ପରମ ଆଶ୍ରୟସ୍ଥଳ ସେ ।

ତା ଆଖିର ଲୁହକୁ ପୋଛି ଦେଉ ଦେଉ ସୁବ୍ରତ କହିଲା, 'ଭଗବାନ୍ ମତେ ଶକ୍ତି ଦିଅନ୍ତୁ, ଆଶୀର୍ବାଦ କରନ୍ତୁ, ସ୍ମିତା ଯେପରି ଚିରଦିନ ପାଇଁ ପୋଛି ଦେଇପାରେ ତୁମ ଆଖିର ଲୁହ । ଆଜିର ଏ ପବିତ୍ର ଲଗ୍ନରେ ଅତୀତର ସମସ୍ତ ଗ୍ଲାନି ଧୋଇହୋଇଯାଉ । ନବଜନ୍ମର ଶୁଭ ସଙ୍କେତ ନେଇ ଉଦୟ ହେଉ ନୂତନ ସୂର୍ଯ୍ୟ । ତାର ସେ ନୂଆ ଆଲୋକରେ ଆମର ନୂଆବାଟରେ ଚାଲିବା ଦୁହେଁ ମାନବ କଲ୍ୟାଣକୁ ଆମ ଜୀବନର ବ୍ରତକରି । ଆଉ ମୋର ପ୍ରେମ ତୁମକୁ ସୂର୍ଯ୍ୟାଲୋକ ପରି ଆବୃତ କରି ରଖୁ ସମସ୍ତ ପ୍ରକାର ସ୍ୱାଧୀନତା ଦେଇ । ନୂତନ ଶକ୍ତି, ନୂତନ ପ୍ରେରଣା ଆଉ ନୂତନ ସାହସ ଦେଇ ସମସ୍ତ ପ୍ରକାର ବିପଦ ଓ ଅମଙ୍ଗଳରୁ ତୁମକୁ ରକ୍ଷାକରୁ ସେ ।'

ଏକାନ୍ତ ନିର୍ଭରଶୀଳ ଭାବରେ ଆତ୍ମସମର୍ପଣର ପରମ ଶାନ୍ତି ଅନୁଭବ କରୁ କରୁ ସୁବ୍ରତର ବାହୁ ଉପରେ ବିଶ୍ରାମ ନେଲା ସ୍ମିତା ! ବହୁତ ଆଗରୁ ଲୁପ୍ତ ହୋଇଯାଇଛି ମାଟିର ଏ ପୃଥିବୀ, ଅତୀତର ଚିହ୍ନ ନାହିଁ, ଭବିଷ୍ୟତର କଳ୍ପନା ନାହିଁ— ଖାଲି ଅଛି ବର୍ତ୍ତମାନ । ଚତୁର୍ଦ୍ଦିଗରେ ନିଜର ମହିମାମୟ ସତ୍ୟ ଶିବ ସୁନ୍ଦର ରୂପ ପ୍ରକାଶକରି କେବଳ ବର୍ତ୍ତମାନ ତାର ଚାରିଆଡ଼େ ବ୍ୟାପ୍ତ ହୋଇ ରହିଛି । ସେ ଜ୍ୟୋତିର୍ମଣ୍ଡଳ ଭିତରେ କେବଳ ସେମାନେ ଦୁହେଁ, ଆଉ କେହି ନାହାନ୍ତି, ଆଉ କିଛି ନାହିଁ ।

...ଉଦୟୋନ୍ମୁଖ ସୂର୍ଯ୍ୟର ଝଲକାଏ ରକ୍ତାଭ ରଶ୍ମି ତମ୍ବୁର ଝରକା ଫାଙ୍କ ଦେଇ ଆସି ପଡ଼ିଲା ଚଟାଣ ଉପରେ । ଯା ଭିତରେ ଯେ କେତେବେଳେ ରାତି ପାହିଗଲାଣି

ସେକଥା ଖିଆଲ ହେଉନ । ପ୍ରାନ୍ତରର କଅଁଳ ଘାସଗୁଚ୍ଛକର ମଥାରେ ନୂଆଦିନର ସେହି ଶୁଭ ଆଶୀର୍ବାଦ ବର୍ଷିହୋଇପଡ଼ିଲାଣି ।

ସ୍ମିତାର ରକ୍ତିମ୍ଲାନ ମୁହଁଟି ମନେହେଲା ଅପୂର୍ବ....ସ୍ୱର୍ଗୀୟ...

ସୁବ୍ରତ ଭାବିଲା—ତା ଜୀବନ ଆକାଶର ନୂତନ ସୂର୍ଯ୍ୟ ସେ ।

ସାରାଦିନ ସୁମିତାର ହୃଦୟ ଭିତରଟା ଆକ୍ରୋଶରେ ଜଳୁଥିଲା ସେଦିନ । ମୀନ-କେତନ ଯେତେବେଳେ ଏକା ଆସିଲା ଗାଡ଼ି ନେଇ, ସେ ଭାବିଲା ଆଉ ଥରେ ସୁକୁମାର ବାବୁଙ୍କ ଘରକୁ ଯାଇ ସେ ଦୁହିଁଙ୍କି ଅର୍ଥାତ୍ ରଞ୍ଜନ ଓ ସୁକୁମାରବାବୁଙ୍କୁ ଉଠାଇ ନେବାର ପ୍ରସ୍ତାବ ରହିଛି । କିନ୍ତୁ ଗାଡ଼ି ଯେତେବେଳେ ସିଧା ବାଲେଶ୍ୱର ଯିବା ରାସ୍ତା ଧରିଲା, ସନ୍ଦେହକୁ ଚାପିରଖିନପାରି ସେ ପଚାରିଲା, 'କଣ ସୁକୁମାରବାବୁ, ରଞ୍ଜନବାବୁ ଯିବେନି ?'

ମୁହଁ ନ ଫେରାଇ ଉତ୍ତର ଦେଲା ମୀନକେତନ, 'ନା ସୁମିତା ଦେବୀ, ହଠାତ୍ କଣ ଗୋଟାଏ ଅତି ଜରୁରୀ କାମ ପଡ଼ିଲା ଯେ ସେମାନେ ଆସିପାରିଲେନି, ଶେଷ ମୁହୂର୍ତ୍ତରେ ରହିଯିବାକୁ ପଡ଼ିଲା । ରଞ୍ଜନ କହୁଥିଲା ପ୍ରୋଗ୍ରାମ୍‌ଟା ବଦଳାଇ ଦେବା ପାଇଁ; କିନ୍ତୁ ସୁକୁମାର କହିଲେ—ଆପଣମାନଙ୍କୁ ଆଗରୁ ଯେତେବେଳେ ଖବର ଦିଆଯାଇଛି ସେତେବେଳେ ଯିବାଟା ନିହାତି ଉଚିତ । ବାଧହୋଇ ମୁଁ ସେ ଦାୟିତ୍ୱ ନେଲି ।' କିଛିସମୟ ଟିକିଏ ଚୁପ୍ ରହିବା-ପରେ ପ୍ରଚ୍ଛନ୍ନ ବିଦ୍ରୂପଭରା କଣ୍ଠରେ ପୁଣି ଆରମ୍ଭ କଲା, 'କିଛି ଅସୁବିଧା ହେଉନି ତ ?'

ସୁମିତା ଉତ୍ତର ଦେଲା ନାହିଁ, ଗୁମ୍ ହୋଇ ରହିଲା; କିନ୍ତୁ ଅନ୍ୟମାନେ ସମସ୍ୱରରେ କହି ଉଠିଲେ, 'ନା ନା, ଅସୁବିଧା କଣ ହେବ ? ତେବେ ସୁକୁମାରବାବୁଙ୍କୁ ଏତେ ହଇରାଣରେ ପକାଇ ନ ଯାଇଥିଲେ ବି ଚଳିଥାନ୍ତା ।'

'ନା ନା, ତାଙ୍କର ଅସୁବିଧା କଣ...ଆପଣଙ୍କର କିଛି ଉପକାର କରିପାରିଲେ ସେ ବରଂ ଖୁସି ହେବେ ।'

'ସୁକୁମାରବାବୁ ପ୍ରକୃତରେ ଚମତ୍କାର ଲୋକ । ତାଙ୍କ ଭଳି ଲୋକ ଆମେ ସେକ୍ରେଟେରୀରୂପେ ପାଇଛୁ ବୋଲି କେତେ ସୁବିଧା ଯେ ପାଉଛୁ ତାର ସୀମା ନାହିଁ ।'

ମନେ ମନେ ହସି ହସି ମୀନକେତନ କହିଲା, 'ପରକୁ ଆନନ୍ଦ ଦେବା ହେଉଛି ତାଙ୍କର ଗୋଟାଏ ବିଶେଷ ମହତ୍ତ୍ୱ ଗୁଣ ।'

'ତା ନୁହେଁ ଆଉ କଣ··· ବଡ଼ଦିନ ଛୁଟିରେ ଯାହା ମୁଁ ଥରଟିଏ ଘରକୁ ଆସିଥିଲି । ଏଭଳି ନଉଛଣା ଗାଁଟାଏ ଯେ କିଛି ଗୋଟାଏ ସୌଖୀନ ଜିନିଷ ମିଳୁନି, ସବୁ ବାଲେଶ୍ୱରକୁ ଯାଇ କିଣିବ ତ କିଣିବ ନହେଲେ ନାହିଁ....' ଜଣେ କହିଲେ ।

ଶ୍ରୀମନ୍ତ ପାଣି କହିଲେ, 'ଭାଇଟାର ଏତେ ଦିନକେ ବୋହୂଟିଏ ହୋଇଛି, ଦେଖିବାକୁ ମୋ ମନ ଖାଲି ବ୍ୟାକୁଳ ହେଉଥିଲା...ଏଣିକି ସିନେମା ଦେଖାହେବ, ତାକୁ ବି ଦେଖିବି । ମଫସଲ ଗାଁ ଭିତରେ ବୁଢ଼ା ହୋଇ ଜୀବନଟା ଚାଲିଯାଉଛି । ଟିକେ କଣ ଫୁର୍ତ୍ତି କରିବାର ଉପାୟ ଅଛି ? ନା ସିନେମା ଘରଟିଏ ଅଛି, ନା ଥିଏଟରଟେ ଅଛି ।'

ମୀନକେତନ କହିଲା, 'ଠିକ୍ କଥା....ହେଲେ ଆପଣଙ୍କର ଏ ନୂଆ ହେଡ୍‌ମିଷ୍ଟ୍ରେସ୍ ଜଣଙ୍କ ତାଙ୍କୁ କିନ୍ତୁ ଧନ୍ୟବାଦ ଦେବା କଥା....ଏ ସବୁ ଭିତରେ ପାଷାଣୀ ଅହଲ୍ୟା ପରି ସେ ତାଙ୍କ ତପସ୍ୟା କରିଚାଲିଛନ୍ତି ।'

ସିଏ ତାକୁ ଆକ୍ରମଣ କରିବାର ପରମ ସୁଯୋଗ ଛାଡ଼ିଲା ନାହିଁ ସୁମିତ୍ରା । ଚନ୍ଦ୍ରକଳା କହିଲା, 'ଯାହା କହିଲେ ମୀନକେତନବାବୁ. ସୀତା ନୁହଁନ୍ତି ଅହଲ୍ୟା ବୋଲି, ଅଭିଶାପଗ୍ରସ୍ତ ପାଷାଣ ବୋଲି ହିଁ ସେ ସେହି ସ୍କୁଲଟା କାନ୍ଥ ଭିତରେ ସେମିତି ଆବଦ୍ଧ ହୋଇ ରହିପାରୁଛନ୍ତି.... ନୁହେଁ ? ସୀତା ହୋଇଥିଲେ ଭୂମିଗର୍ଭରେ ଆଶ୍ରୟ ନେଇଥାନ୍ତେ ଏତେବେଳକୁ ।' କଥାଟି କହିସାରି ତା ଭିତରେ ପ୍ରଚ୍ଛନ୍ନଥିବା ଇଙ୍ଗିତକୁ ଉପଲବ୍ଧି କରି ଖିଲ୍ ଖିଲ୍ ହୋଇ ହସିଉଠିଲା ସେ । ମନେ ମନେ ଗର୍ବବୋଧ କଲା ଭାରି ବଢ଼ିଆ କଥାଟେ କହିପାରିଛି ବୋଲି ।

ସ୍ୱର ମିଳାଇ ହସିଲା ମୀନକେତନ ବି । କହିଲା, 'ସୀତା କହନ୍ତୁ, ଅହଲ୍ୟା କହନ୍ତୁ, ଦୁହିଁଙ୍କର ରାମଚନ୍ଦ୍ର ହିଁ ପ୍ରୟୋଜନ....ନୁହେଁ ?'

'କିନ୍ତୁ କାହାନ୍ତି ସେ ରାମଚନ୍ଦ୍ର ?'—ସୁମିତ୍ରାର ମୁହଁରେ ପୂର୍ବର ସେହି ହସ ।

ବାଁ ହାତରେ ସିଗାରେଟ୍‌ଟା ଧରି ଖୁବ୍ ଜୋରରେ ଟାଣି ଧୂଆଁ ଛାଡ଼ିଲା ପରେ ହଠାତ୍ ସମସ୍ତଙ୍କୁ ଚମକାଇଦେଇ ହୋ ହୋ ହୋଇ ହସିଉଠିଲା ରଞ୍ଜନ । କହିଲା, 'ହୁଏତ ଆଜି ଆସିନାହାନ୍ତି.. ଯାହାଙ୍କ ପାଦସ୍ପର୍ଶରେ ପାଷାଣୀ ଅହଲ୍ୟା ଆଜି ଜୀବନ୍ତ ହୋଇଉଠିବ ।' କିଛି ବୁଝି ନ ପାରିଲେ ବି ସୁମିତ୍ରା କହିପକାଇଲା, 'ଯାହା କହିଲେ ।'

× × ×

ଆରଦିନ ସକାଳୁ ସମସ୍ତେ ଫେରିଲେ । ମାଳତୀ ଖବରଦେଲା—ସେମାନେ ଯିବା ପରେ ଜମିଦାରବାବୁଙ୍କ ଦରୁଆନ୍ ଜଣେ ଚିଠି ନେଇ ଆସିଥିଲା, ସିଏ ତା ସାଙ୍ଗେ ସାଙ୍ଗେ ସେହି ଲୋକଟି ସହିତ ଚାଲିଗଲା ଜମିଦାରବାବୁଙ୍କ ଘରକୁ । ଏପର୍ଯ୍ୟନ୍ତ ସେ ଫେରିନି କି କୌଣସି ଖବର ଦେଇନି ।

ଈର୍ଷାରେ ଦପ୍ ଦପ୍ ହୋଇଉଠିଲା ସୁମିତ୍ରାର ଅନ୍ତର । ସେ ଭାବିଲା, ଏଇଥିପାଇଁ ଆଗରୁ ପରିକଳ୍ପନା କରି ସେମାନେ ତାକୁ ନେଇ ଯାଇନଥିଲେ ବାଲେଶ୍ୱର । ଠିକ୍ ଏ ସମୟରେ ଧୂଳିବୋଳା ପାଦରେ ପଶି ଆସି ହାତର ପୁଟୁଳାଟାକୁ ଫୋପାଡ଼ିଦେଇ ଧପ୍‌କିନା ବାରଣ୍ଡାଟା ଉପରେ ବସିପଡ଼ିଲା ମଲ୍ଲୀ । ତା କଥାରୁ ଏତିକି କେବଳ ବୁଝାପଡ଼ିଲା ଯେ

—ଘୋଡ଼ାମୁହାଁ । କଏ ମିଛରେ ତା ପୁରୁଷଟି ବଡ଼ ଦେମାକ ବୋଲି ଚଟି ଖଣ୍ଡେ ଦେଲା, ବୃଥାରେ ଏତେ କୋଶ ବାଟ ଚାଲି ଚାଲି ଯାଇ ସେ ନସ୍ତାନାବୁଦ ହେଲା ସିନା !

ମାଳୀର କଥାରେ କାନଦେବା ଉଚିତ ବୋଲି ମନେକଲେନି କେହି ।

ଏଣେ ବସନ୍ତ ଜମିଦାର ଗୃହରେ ଯେତେବେଳେ ମୀନକେତନ ଆସି ପହଞ୍ଚିଲା ସୁକୁମାର କି ରଞ୍ଜନ କେହି ନ ଥିଲେ । ସ୍ୱର୍ଣ୍ଣଲତା ଓ ମଞ୍ଜୁ ସିବାଦନୁ ଦରୁଆନ୍ ଓ ମାଳୀ ଛଡ଼ା ଅନ୍ୟ ସମସ୍ତ ଭୃତ୍ୟଙ୍କୁ ଛୁଟି ଦିଆଯାଇଥିଲା । ଘଟନା ଦିନ ସକାଳୁ ମାଳୀଟାକୁ ବି ଦିନକ ସକାଶେ ପଠାଇଦେଇଥିଲେ ସୁକୁମାରବାବୁ ।

ମଦ ଖାଇ ବନ୍ଧୁମାନଙ୍କ ଗହଣରେ ମାତାଲ୍ ହେବାର ଇଚ୍ଛା ଯେଉଁଦିନ ପ୍ରବଳ ହୁଏ, ସେଦିନ ସୁକୁମାରବାବୁଙ୍କ ଭୃତ୍ୟମାନେ ଛୁଟିପାଆନ୍ତି ନିଜ ନିଜ ଘରକୁ ଯିବାକୁ । ତେଣୁ ଲୋକଙ୍କ ଆଖିକୁ ସେଇଟା କିଛି ଅସମ୍ଭବ ଦିଶିଲାନାହିଁ । ଜମିଦାର ସାଆନ୍ତେ ତ ସାଆନ୍ତାଣୀଙ୍କ ଚିକିତ୍ସା ପାଇଁ ହଠାତ୍ ଇମିତ ମଝିରେ ମଝିରେ ଯିବାଆସିବା କରନ୍ତି....ତେଣୁ ହଠାତ୍ ତାଙ୍କର ଏ ପଳାୟନ ବି କିଛି ଆଶ୍ଚର୍ଯ୍ୟଜନକ ମନେହେଲାନାହିଁ ।

ଜମିଦାରଙ୍କ ଖୋଦ୍ ଗୁମାସ୍ତା ନରହରି ହୋତା ସମ୍ବାଦ ବହନକରି ବସିଥିଲେ ମୀନକେତନ ପାଇଁ, ବାବୁ ସାଧାରଣତଃ ଯେଉଁଠି ଥାଆନ୍ତି ସେଇଠି ଥିବେ, ମୀନକେତନ ଯେପରି ସେଠାକୁ ଯାଏ । ଅତି ଜରୁରୀ କାର୍ଯ୍ୟ ଯୋଗୁଁ ସେମାନେ ଚାଲିଯିବାକୁ ବାଧ୍ୟହେଲେ ।

ବିସ୍ମିତ, ଚିନ୍ତିତ ମୀନକେତନ ଗେରେଜ୍‌ରେ ଗାଡ଼ି ରଖି ଆସୁ ଆସୁ ନାନା ପ୍ରକାର ଚିନ୍ତାକଲା । ସୁକୁମାରବାବୁଙ୍କ ସାଙ୍କେତିକ ଭାଷାରୁ ସେ ବୁଝିପାରିଲା ସେମାନେ ବମ୍ବେକୁ ଯାଇଛନ୍ତି । ସ୍ତ୍ରୀକୁ ନେଇ ହଠାତ୍ ବମ୍ବେ ଚାଲିଯିବାର କଣ ଦରକାର ପଡ଼ିଲା ସେ ବୁଝିପାରିଲାନାହିଁ । କିଛି ସମୟ ବିଶ୍ରାମ ନେଲା ପରେ ସେ ବି ଷ୍ଟେସନ୍ ଉଦ୍ଦେଶ୍ୟରେ ଯାତ୍ରାକଲା ।

ସ୍କୁଲ୍ ଛୁଟି ପରେ ସନ୍ଧାନ ନେବାକୁ ଆସିଲା ସୁମିତ୍ରା । ସ୍ତ୍ରୀର ଦୁଃସାହସ ଓ ସୁକୁମାରବାବୁଙ୍କ ପ୍ରତାରଣା କଥା ଭାବି କ୍ଷୋଭରେ ଅସ୍ଥିର ହୋଇପଡ଼ିଲା ସେ । ମନ କଥା ମନରେ ମାରି ସେ ଫେରିଲା ।

ଏକନିଷ୍ଠ ପତ୍ନୀପ୍ରେମରେ ଆପ୍ଲୁତ, ପରୋପକାରୀ, ସଦାଚାରୀ ଜମିଦାର ସୁକୁମାର ମହାନ୍ତିଙ୍କ ନାମ ସେହିପରି ନିଷ୍କଳଙ୍କ ହୋଇ ରହିଲା; ଏପରିକି ମଞ୍ଜୁ ମଧ୍ୟ ଥରେ ଭାବିଲାନାହିଁ—କେତେ ବର୍ଷ ତଳେ ସେହି ପୁରୁଷଟିର ଦେହ ଭଲ ନଥିବା କଥା କହି ଖୋଦ୍ ଜମିଦାର ସାଆନ୍ତଙ୍କଠାରୁ କେତେ ଦିନର ଛୁଟି ମଞ୍ଜୁର୍ କରାଇ ଗାଁକୁ ଯାଇଥିଲା ସେ, ବର୍ତ୍ତମାନ୍ ନିଜର ଚନ୍ଦ୍ରାନ୍ତକୁ କାର୍ଯ୍ୟକାରୀ କରାଇବା ପାଇଁ ସେହି ଉପାୟଟି ସୁକୁମାର

ବାବୁଙ୍କର କେତେ ଦରକାରରେ ଆସିଲା ! ମନ୍ତ୍ରୀ ଥିଲେ ସିଏ ତା ଏକ କଥା ଅଛିବ ନାହିଁ, ଏକଥା ଭଲରୂପେ ଜାଣିଥିଲେ ସେ ।

ସୁକୁମାରବାବୁ ଚିର ନିଷ୍କଳଙ୍କ ହୋଇ ରହିଲେ; କିନ୍ତୁ ସ୍କୁଲ୍‌ର ହେଡ୍‌ମିଷ୍ଟ୍ରେସଙ୍କ ଆକସ୍ମିକ ଅନ୍ତର୍ଦ୍ଧାନ ଖବର ଗୃହଁ ଗୃହଁ ଗ୍ରନ୍ଥି ହୋଇଗଲା ଗୁରଆଡ଼େ । କ୍ରମେ ଶୁଣାଗଲା ଯେ ଷ୍ଟେସନ୍ ରାସ୍ତାରେ କାଲି ରାତି ବାରଟାବେଳେ ଫେରିଲାବେଳେ ଜଣେ ଧୋବଧାଉଳିଆ ବାବୁ ସଙ୍ଗେ ମାଷ୍ଟ୍ରାଣୀଙ୍କୁ ଚାଲିକରି ଯିବା ଜଣେ ଗ୍ରାମବାସୀ ସ୍ୱଚକ୍ଷୁରେ ଦେଖିଛନ୍ତି ।

"...ମଲା ଏଇଟା କଣ ନୂଆକଥା କି ? ଗାଁର ସମସ୍ତେ ଜାଣିଛନ୍ତି—ବାହାରେ ଏତେ ଭଲପଣିଆ ଦେଖାଉଥିଲେ ବି ଭିତରେ ଭିତରେ ମାଇକିନିଆଟା ଭାରି ଖରାପ ମଣିଷଟେ ଥିଲା, ତାନହେଲେ ବ୍ରାହ୍ମଣ ପିଲାଙ୍କ ସଙ୍ଗେ ହାଡ଼ିପିଲାଙ୍କୁ ବସେଇଥାନ୍ତା..."

·· ଥରେ କୁଆଡ଼େ ରାଧିଆମା ବି ନିଜ ଆଖିରେ ଦେଖିଛି—ମାଷ୍ଟ୍ରାଣୀଟା ନଈକୂଳରେ ଜଣେ ଟୋକାର ହାତ ଧରି ସନ୍ଧ୍ୟାବେଳଟାରେ ବୁଲୁଥିଲା ! ଗୋପୀନାଥଙ୍କ ପାଖରେ ଯାତ୍ରା ଦେଖିବାକୁ ଗଲାବେଳେ ରାଧିଆମା ସେ ଟୋକାଟାକୁ ଦେଖିଥିଲା ବାଳେଶ୍ୱରଠି !!

...ହଁ' ଅକ୍ଷର ପଢ଼ିଥିଲେ କଅଣ ହେବ···ସେମାନଙ୍କର ଗୋଟାଏ ବିଚାର ଅବିଚାର ବୋଲି କିଛି ନାହିଁ..."ସତେ ଲୋ ମାଉସୀ, ସେଇ ଟୋକାଟା ହୋଇଥିବ କି କଣ, ତାକୁ ତ ବେଗ୍ ଝଣ୍ଟେ ଧରି କେତେ ଥର ଅଧରାତିରେ ଇସ୍କୁଲ ପାଖରେ ଇଆଡ଼ ସିଆଡ଼ ହେବାର ମୁଁ ଦେଖିଛି ସିନା ! ଛିଃ, ଛିଃ, ରୂପ ଏଡ଼େ ସୁନ୍ଦର ହେଲେ କଣ ହେବ, ଭିତରେ ଏତେ କଳଙ୍କ ଛିଃ....!"

ସ୍ୱଭାବିନୀ ଶୁଚିସ୍ମିତାର ଚରିତ୍ରଗତ କଳଙ୍କ ଏହିପରି ଶାଖାପଲ୍ଲବ ବିସ୍ତାର କରି ନିତି ନୂଆ ନୂଆ ପ୍ରମାଣ ଆବିଷ୍କାର କରୁ କରୁ ବିସ୍ତାରିତ ହେବାକୁ ଲାଗିଲା ଖାଲି ।

କେବଳ ଜଣକ ଆଖି ଦୁଇଟି ସଜଳ ହୋଇଯାଇଥିଲା ଏ ଘଟଣାରେ । ସେ ହେଉଛି ବାଳିକା ଗୌରୀ । ଘଟଣାର ମର୍ମ କିଛି ବୁଝିନପାରିଲେ ମଧ୍ୟ ଏତିକି କେବଳ ସେ ବୁଝିଥିଲା ଯେ ଏଡ଼େ ଭଲ ଗୁରୁମା ତାର ତାକୁ ଛାଡ଼ିଦେଇ ଯାଇଛନ୍ତି, ଆଉ ଫେରିଆସିବେ ନାହିଁ ।

ନିର୍ଦ୍ଦିଷ୍ଟ ସମୟଠାରୁ କିଛି ବିଳମ୍ବରେ ଲଫାଫାଟା ଆସି ପହଞ୍ଚିଲା; କାରଣ ପ୍ରଥମେ ସୁନ୍ଦରଗଡ଼ ଯାଇ ଫେରସ୍ତ ହୋଇଆସିଛି କଟକ । ତାଙ୍କ ପାଖକୁ ପୁଣି କିଏ ଚିଠି ଦେଲା ? ଏପଟ ସେପଟ ଓଲଟାଇ ଦେଖିଲାପରେ ଲଫାଫାଟିକୁ ଚିରି ଚିଠିଟି ପଢ଼ିଲେ ରାଜୁବାବୁ ।

ବାପାଙ୍କ ମୁହଁରେ ଅନେକ ପ୍ରକାର ପରିବର୍ତ୍ତନ ଦେଖି ନ ପଚାରି ରହିପାରିଲାନି ସତୀ । କହିଲା, "କାହା ଚିଠି ବାପା ?"

ନୀରବରେ ସତୀର ହାତକୁ ଚିଠିଟି ବଢ଼ାଇଦେଲେ ରଜନୀବାବୁ । ସତୀ ପଢ଼ିଲା—ସୁବ୍ରତ ଲେଖିଛି ଅତି ସଂକ୍ଷିପ୍ତ ଭାବରେ—ସିଏ ତାର ସନ୍ଧାନ ସେ ପାଇଛି, ବର୍ତ୍ତମାନ ସେ ଦୁର୍ବଳ ଅବସ୍ଥାରେ ଚିକିତ୍ସାଧୀନ ରହିଛି । ସୁବ୍ରତ ଆଶାକରୁଛି ପତ୍ରପାଇ ସଙ୍ଗେ ସଙ୍ଗେ ରଜନୀବାବୁ ଓ ସତୀ ଆସି ପହଞ୍ଚିବେ । ଶେଷରେ ତାର ନିବେଦନ ବ୍ୟକ୍ତ କରିଛି ସେ—ସିଏ ତାକୁ ସେ ବିବାହ କରିବ, ଅନୁଷ୍ଠାନ ପାଇଁ ରଜନୀବାବୁଙ୍କ ସାହାଯ୍ୟ ଓ ଆଶୀର୍ବାଦ ଦରକାର ।

ଚିଠି ପଢ଼ିବା ଶେଷ କରିବା ସଙ୍ଗେ ସଙ୍ଗେ ଆନନ୍ଦରେ ଉଦ୍‌ବେଳିତ ହୋଇଉଠିଲା ସତୀ । କହିଲା, 'ବାପା, ଛୁଟି ପାଇଁ ଦରଖାସ୍ତ ଦେଇଦିଅ, ଆଜ ରାତି ଗାଡ଼ିରେ ବାହାରିପଡ଼ିବା ।'

ରଜନୀବାବୁ ସତୀର କଥାର କୌଣସି ଉତ୍ତର ଦେଲେନାହିଁ ! ଦେବା ଭଳି ଅବସ୍ଥାରେ ନଥିଲେ ସେ । ମନଭିତରେ ଯେଉଁ ଝଡ ଉଠିଥିଲା ତାର ଘୂର୍ଣ୍ଣିବାୟୁରେ ପଡ଼ି କୁଆଡ଼େ ଚଳେଇ ଯାଉଥିଲେ ସେ । ସିଏ ତାର ସମ୍ବାଦ ପ୍ରାୟ ବର୍ଷକ ପରେ ମିଳିଛି । ଏ ବର୍ଷକ ଭିତରେ ଅଭାଗିନୀ କନ୍ୟାର କଥା ଭାବି କେତେ ଥର ଆଖିରୁ ଝରିଛି ଲୁହ । କିନ୍ତୁ ଏ ମୁହୂର୍ତ୍ତରେ ଅପ୍ରତ୍ୟାଶିତ ଭାବରେ ତାର ସମ୍ବାଦ ପାଇ କାହିଁ ହୃଦୟ ତାଙ୍କର ଆନନ୍ଦରେ ଅଧୀର ହୋଇଉଠିଲା ନାହିଁ ତ ? ବରଂ ମନେହେଲା ଛାତି ଉପରେ ଗୋଟାଏ ବୋଝ ଲଦିହୋଇଗଲା । ରକ୍ଷଣଶୀଳ ଧର୍ମଭୀରୁ ହୃଦୟ ତାଙ୍କର କନ୍ୟାର ଏ ଯଥେଚ୍ଛାଚାର ଦେଖି ସଙ୍କୁଚିତ ହୋଇଯାଇଛି ଗ୍ଳାନିରେ । ତାଙ୍କ ଆଖିରେ ସିଏ ତାର ଏକରକମ ମୃତ୍ୟୁ ଘଟିଛି କହିଲେ କଣ ଅତ୍ୟୁକ୍ତି ହେବ ? ଚରମ ଅଶାନ୍ତିକୁ ବାଛିନେଇ ଯେଉଁ ଦିନ ସେ ଗୃହ ତ୍ୟାଗକରିଛି ସେଇ ଦିନୁ ମରିଛି ସେ । ଆଧୁନିକ ଯୁବକ ସୁବ୍ରତର ଦୃଷ୍ଟିରେ ଏସବୁ ଦୋଷାବହ ନହୋଇପାରେ, କିନ୍ତୁ ତାଙ୍କ ଦୃଷ୍ଟିରେ ସାମାନ୍ୟ ସାଂସାରିକ ସୁଖ ପାଇଁ ଧର୍ମକୁ ଯେ ଅକ୍ଳେଶରେ ତ୍ୟାଗକରେ ତାର ଆଉ ମାନବିକ ମୂଲ୍ୟ ରହେନାହିଁ ।

ରଜନୀବାବୁଙ୍କ ମନର ଆଲୋଡ଼ନକୁ ଧକ୍କା ଦେଇ ପୁଣି କହି ଉଠିଲା ସତୀ, "ବାପା, କେବେ ବାହାରିବା ଏଠୁ ?"

ମ୍ଳାନ ହସ ହସି କହିଲେ ରଜନୀବାବୁ, "ମୁଁ ଯାଇପାରିବିନି ସତୀ..."

ବିସ୍ମୟସ୍ତବ୍ଧ ହୋଇ ପଚାରିଲା ସେ, "କାହିଁକି ବାପା ?"

ଅନ୍ୟ ଦିଗକୁ ଚାହିଁ ନୀରବ ରହିଲେ ରଜନୀବାବୁ, କୌଣସି ଉତ୍ତର ଦେଲେନାହିଁ । ବ୍ୟଥିତ ସ୍ୱରରେ ସତୀ କହିଲା, "ବାପା, ଏହା କଣ ଉଚିତ ? ପୁରୁଣା ସଂସ୍କାର ପାଇଁ ଦୁଇଟା ଜୀବନ ଅକାରଣ ହୋଇଯିବ, ତା କଣ ଠିକ୍ ହେବ ? ମୋ ମତରେ ବରଂ ଏ ବିବାହରେ ତମେ ଆଗ୍ରହୀ ହେବା ଉଚିତ । ସୁବ୍ରତବାବୁଙ୍କ ଭଳି ଏତେ ଉଚ୍ଚମନା କାହାକୁ ମୁଁ ଏ ପର୍ଯ୍ୟନ୍ତ ଦେଖିନି ସତରେ । ତାଙ୍କୁ ଆପଣାର କରି ପାଇବାଟା ଆମର ସୌଭାଗ୍ୟର କଥା ହେବ ।"

ଅବାକ୍ ହୋଇ ରଜନୀବାବୁ ଚାହିଁ ରହିଲେ ସ୍ୱଳ୍ପଭାଷୀ ସତୀର ମୁହଁକୁ । କୌଣସି ଗୁରୁତର ବିଷୟରେ ତାଙ୍କ ସଙ୍ଗେ ଆଲୋଚନା କରିବା ଧୃଷ୍ଟତା ଜୀବନରେ ଏହା ବୋଧହୁଏ ପ୍ରଥମ । ସ୍ୱାମୀ ତାର ଚାଲିଯିବା ଖବର ଶୁଣିଲାପରେ ଯେ ଅଦ୍ଭୁତ ବେଶ [illegible] ମୂର୍ତ୍ତିର [illegible] ଥିଲା, ସହିତ ତାର ବେଦନାର, ଆର୍ତ୍ତ[illegible] [illegible] [illegible] ଦେଇଥିଲା [illegible] ଛଳ ଛଳ ଆଖିଦୁଇଟାରେ, ତେବେ ବି ମୁହଁ ଫିଟାଇ [illegible] [illegible] [illegible] ନିବେଦନ ସେ । ଆଉ ଆଜି ! ଯେ ଉପଦେଶ ଦେଉଛି··· !

ହଠାତ୍ ନିଜକୁ ଅତ୍ୟନ୍ତ ଅସହାୟ ମନେହେଲା ରଜନୀବାବୁଙ୍କର । ମନେହେଲା ତାଙ୍କ ଆଗରେ ଠିଆହୋଇ ଧରଣୀ ଖାଲି ଦାବୀ କରୁନି, ଦାବୀ କରୁଛି ନୂତନ ଯୁଗ ! ପୁଣି ଗୋଟିଏ ସ୍ୱରରେ ନୁହେଁ, ଏକତ୍ରିତ ହୋଇ ସେ ଦାବୀ କରୁଛି, କହୁଛି, ତମର ପୁରୁଣା ମତକୁ ଛାଡ଼ିଦିଅ, ପୁରୁଣା ସଂସ୍କାର ଛାଡ଼, ଆମ ସହିତ ପାଦ ମିଳାଇ ଚାଲ ।

ଶୁଣିଲେ ସତୀ କହୁଛି, "ନାନୀର ଜୀବନକୁ ବ୍ୟର୍ଥ କରିଦେବାର କୌଣସି ଅଧିକାର ଆମର ନାହିଁ ବାପା ! ତମେ ଭଲରୂପେ ଭାବ, ଭଲରୂପେ ବିଚାର କରି ଦେଖ ।"

ସେହିପରି ବିସ୍ମିତ ଦୃଷ୍ଟି ମେଲି ଚାହିଁ ରହିଲେ ରଜନୀବାବୁ ପୁଅର ମୁହଁ ଆଡ଼କୁ । ତାରୁଣ୍ୟ ବିକଶିତ ହୋଇଆସୁଛି କୈଶୋରର ସୋପାନକୁ ଅତିକ୍ରମ କରି···କେତେକଥା କହିଶିଖିଛି ସେ ସ୍ୱରର ଭିତରେ !

"ବାପା, ତମେ ଅନୁମତି ଦିଅ, ହସନ୍ତ ମୁଖ ହୃଦୟରେ ଆଶୀର୍ବାଦ କର । ନାନୀକୁ ସୁଖୀ କରିବା କଣ ତମର କର୍ତ୍ତବ୍ୟ ନୁହେଁ ?"

ହେ ପୁରାତନ, ତୁମକୁ ମାନିବାକୁହିଁ ପଡ଼ିବ ନୂତନଯୁଗର ଆଦର୍ଶ । ଆଜି ନୂଆ ନୁହେଁ, ଏ ନିୟମ ଚାଲିଆସିଛି ଆବହମାନ କାଳରୁ । ତା ନହେଲେ ଯେଉଁ ମଣିଷ ଦିନେ ଜଙ୍ଗଲର ଜୀବ ଭଳି ବୁଲୁଥିଲା, ସେ ପୁଣି ଆଜି ଚନ୍ଦ୍ରପୃଷ୍ଠରେ ଯାଇ ପହଞ୍ଚିନଥାନ୍ତା ।

ଏହି କଥାଗୁଡ଼ିକ ରଜନୀବାବୁଙ୍କ ହୃଦୟରେ ପ୍ରତିଧ୍ୱନିତ ହେଲା । ମୁହଁରେ ସେ ଖାଲି ଏତିକି କହିଲେ —"ମତେ ଭାବିବାକୁ ଦୁଇ ଦିନ ସମୟ ଦେ ସତୀ ।"

"ବାପା, ତାହେଲେ ଆଜି ମୁଁ ବରଂ ଚାଲିଯାଉଛି । ନାନୀର ଦେହ ଭଲହେଲାକ୍ଷଣି ତାକୁ ଓ ସୁବ୍ରତବାବୁଙ୍କୁ ନେଇଚାଲିଆସିବ, ଏଇଠି ଜାକ୍‌ଜମକ୍‌ରେ ବାହାଘର କରିବା....।"

ସତୀ....ଉଲମୁହାଁ ସ୍ରୋତ, ସେ ବାଧା ମାନିବାକୁ ଚାହେଁନା, ଅପେକ୍ଷା କରିବାର ଧୈର୍ଯ୍ୟ ରଖେନା, ଖାଲି ଚାହେଁ ଅବାରିତ ବହିଯିବାକୁ ।

ବାଧ୍ୟହୋଇ ରଜନୀବାବୁଙ୍କୁ କହିବାକୁ ପଡ଼ିଲା ଚାକର ଓ କଲମ ଆଣିବାକୁ, ଛୁଟି ପାଇଁ ଦରଖାସ୍ତ ଲେଖିବେ ସେ ।

× × × ×

ସୁବ୍ରତ ଓ ସ୍ମିତାର ବାହାଘର ସମାପ୍ତ ହୋଇଛି [illegible] ।ଟେ[illegible]ରେ ଅତୀବ ଉତ୍ସାହ ଦେଖିଲେ ମନେହେବ ସତେ ଯେପରି ସେ [illegible] ।

ଘଟନାଟି ସମାଜରେ ଯେଆଦୌ ଆନ୍ଦୋଳନ ସୃଷ୍ଟି [illegible] , କେତେ ଜଣ ପ୍ରଶଂସା କଲେ, କେତେ ଜଣ ବା ନିନ୍ଦା କଲେ, କିନ୍ତୁ ଅସ୍ପଷ୍ଟ ଧ୍ୱନି ଗୁଞ୍ଜନ । ସଞ୍ଜୁବାବୁ ଜାଣିଲେ —ତାଙ୍କର ସମ୍ପୂର୍ଣ୍ଣ ଅଜ୍ଞାତରେ ଦୁନିଆର ଦୃଷ୍ଟିକୋଣ ଅନେକ ବଦଳିଗଲାଣି ।

ସିଙ୍ଗାପୁର୍‌ରେ ଯେଉଁ ଆନ୍ତର୍ଜାତିକ ରେଡ୍‌କ୍ରସ୍ ସମ୍ମିଳନୀ ବସିଥିଲା, ସେଥିରେ ଯୋଗଦେବାପାଇଁ ସ୍ୱାମୀଙ୍କ ସହିତ ଯାଇଥିଲେ ଜର୍ଜିଆନା । ତେଣୁ ସ୍ମିତାର ବିବାହ ସମ୍ବାଦ ଜାଣିବା କିମ୍ବା ଉତ୍ସବରେ ଯୋଗଦେବା ସମ୍ଭବ ହୋଇନଥିଲା ତାଙ୍କ ପକ୍ଷରେ ।

---